# ସୂଚୀ

# ଓଡ଼ିଶାର ଶାକ୍ତଧାରାର ତନ୍ତ୍ର ବିଜ୍ଞାନ : ଏକ ସୂକ୍ଷ୍ମ ମୂଲ୍ୟାୟନ

ଡକ୍ଟର ସୁରେନ୍ଦ୍ର କୁମାର ମିଶ୍ର

**ପ୍ରଚ୍ଛଦପଟ -**

(ଭାରତର ମୁଖ୍ୟ ଶାକ୍ତ ଭୂମିମାନଙ୍କ ମଧ୍ୟରେ ଓଡ଼ିଶା ଅନ୍ୟତମ । ଶାକ୍ତଧାରାରେ ଆମକୁ ପରିଦୃଶ୍ୟ ହେଉଥିବା ଉପାସନାର ଦିଗଗୁଡ଼ିକ ବାହ୍ୟ ଆଭାସମାତ୍ର । ଉପାସନାର ପ୍ରତ୍ୟେକ ଦିଗର ପଶ୍ଚାତଭାଗରେ ଲୁକ୍‌କାୟିତ ରହିଛି ଏକ ବିଜ୍ଞାନଭିତ୍ତିକ ରହସ୍ୟ । ଏହି ରହସ୍ୟକୁ ଆମ ପୂର୍ବସୂରୀମାନେ 'ଦାର୍ଶନିକ - ରହସ୍ୟ' ଶବ୍ଦରେ ବ୍ୟକ୍ତ କଲେ ମଧ୍ୟ ତାହା ଆମ ପାଇଁ ଏବେ ବି ଅବ୍ୟକ୍ତ ହୋଇ ରହିଛି । ଦର୍ଶନ ଶବ୍ଦର ଉଚ୍ଚାରଣରେ ସାଧାରଣ ସଚେତନ ପାଠକଟିଏ ଦେଉଳରୁ ମୁଖଶାଳା ବଳି ପଡ଼ିବାଭଳି ଏକ ମନୋବୈଜ୍ଞାନିକ ସ୍ତରକୁ ଚାଲିଯିବା ଫଳରେ ଏକ ବିଜ୍ଞାନଭିତ୍ତିକ ଉପାସନାଠାରୁ ଦୂରେଇ ଯାଏ । ଫଳରେ କିମ୍ଭୂତ-କିମାକାର ଅର୍ଥ ଅର୍ଥାନ୍ତର ହୁଏ । ଶାକ୍ତ ଉପାସନାର ବୈଜ୍ଞାନିକ ଦିଗଟି ବୌଦ୍ଧିକ ଆଲୋଚନାର ଆଢୁଆଳରେ ରହିଯାଏ । ଏହା ଯେ ଏକ ଜୀବନଭିତ୍ତିକ ଉପାସନା ତାହାର ବାସ୍ତବ ରହସ୍ୟ ଆମଠାରୁ ବହୁ ଦୂରକୁ ଚାଲିଯାଏ ।

ଓଡ଼ିଶାର ଶାକ୍ତ ଉପାସନାର ବୈଜ୍ଞାନିକ ଦିଗଟିକୁ ଆମେ ଆଲୋଚନା ପରିସରକୁ ଆଣିଛୁ । କାରଣ ଓଡ଼ିଶାର ଏହି ଉପାସନା ସର୍ବଭାରତୀୟ ଉପାସନାଠାରୁ ସାମାନ୍ୟ ସ୍ୱତନ୍ତ୍ର । ସଂପୂର୍ଣ୍ଣ ପ୍ରୟୋଗାତ୍ମକ ଓ ଶାସ୍ତ୍ରୀୟ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀଠାରୁ ଦୁର୍ଗା ଉପାସନା 'ତୋଷାଳୀ'ରୁ ହିଁ ଉଦ୍ଭବ ଓ ବିକାଶ ଲାଭ କରି ହଜାରେ ବର୍ଷ ପରେ 'ଶାବରତନ୍ତ୍ର'ର ସମ୍ମିଶ୍ରଣରେ ଏକ ନୂତନ ରୂପରେଖ ନେଇଛି । ଶାବରତନ୍ତ୍ରର ଆଦ୍ୟଭୂମି ଥିଲା ତତ୍କାଳୀନ ଓଡ୍ର ଭୂଖଣ୍ଡ । (ଦ୍ରଷ୍ଟବ୍ୟ- ଜୀବନଚରିତ, ବୁଦ୍ଧଦେବ-ଲେ-ପଣ୍ଡିତ ଚକ୍ରଧର ମହାପାତ୍ର, ପ୍ରକାଶକ- ଫ୍ରେଣ୍ଡସ୍ ପବ୍ଲିସର୍ସ, କଟକ ଏବଂ ମାଦଳାପାଞ୍ଜି - ଆର୍ତ୍ତବଲ୍ଲଭ ମହାନ୍ତି, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର)

**ଆବାହନୀ :**

ତନ୍ତ୍ର ! ଏକ ମୌନ ବିସ୍ଫୋଟ । ଯାହାର ନାମ ଶୁଣିଲେ ମନରେ ଭାବସ୍ଫୂର୍ତ୍ତି ଆସେ । କପାଳରେ ଘୃଣାର ରେଖା ଉଙ୍କିମାରେ ! ଆଖିରେ ଜୁଗୁପ୍ସାର ଭାବ ବି ଲହଡିମାରେ । ତୁଣ୍ଡରେ କୁ-ତର୍କ ଲହଡ଼ି ଭାଙ୍ଗେ । ବିପଦଗ୍ରସ୍ତ ମନରେ ଶ୍ରଦ୍ଧା ଓ ବିଶ୍ୱାସ ବି ଜନ୍ମନିଏ । ପ୍ରଶଂସା ମଧ୍ୟ ଆସେ ।



ବାସ୍ତବରେ ଏ ତନ୍ତ୍ରର ଇତିହାସ କ'ଣ ? କେବେ କେଉଁ ସମୟରେ 'ତନ୍ତ୍ର'ର ପ୍ରାଦୁର୍ଭାବ ହୋଇଥିଲା ସଠିକ୍ କରିବା ସମ୍ଭବ ହୋଇନାହିଁ । ବେଦରେ ତନ୍ତ୍ର ଶବ୍ଦର ଉଲ୍ଲେଖ ନାହିଁ ସତ୍ୟ, କିନ୍ତୁ 'ଅଥର୍ବଣ'ରେ ତାନ୍ତ୍ରିକ କର୍ମର ବିବରଣ ଅଭାବ ନାହିଁ । ଏହାର ଅର୍ଥ ଆମେ ବୁଝିବା ଯେ ତନ୍ତ୍ରଶାସ୍ତ୍ର ବା ଆଗମଶାସ୍ତ୍ର ଗୋଟିଏ ସ୍ୱତନ୍ତ୍ର ରୂପରେଖ ନେଇଛି ପରବର୍ତ୍ତୀ କାଳରେ । ପ୍ରଥମେ ଏହାର ସ୍ୱତନ୍ତ୍ର ରୂପରେଖ ନଥିଲା ସତ୍ୟ, କିନ୍ତୁ ତନ୍ତ୍ରଦର୍ଶନର ଏକ ଭିନ୍ନ ଧାରା ବହୁ ପ୍ରାଚୀନ କାଳରୁ ଆମର ସନାତନ ଧାରାରେ ରହିଆସିଛି । ଏହାର ଦୁଇଟିଯାକ ପ୍ରାୟୋଗିକ ଏବଂ ଶାସ୍ତ୍ରୀୟଧାରା ମାନବ ଚେତନାର ବିକାଶ ସହିତ ବିକଶିତ ହୋଇ ଆସିଛି ।

**ପ୍ରାଚୀନତ୍ୱ :**

ବେଦଯୁଗ ପରେ ଉପନିଷଦ ଯୁଗ । ତା'ପରେ ପୁରାଣଯୁଗର ଆରମ୍ଭ । ଏହି ଯୁଗ ନିଶ୍ଚିତ ଭାବରେ ଖ୍ରୀଷ୍ଟପୂର୍ବରୁ ତା'ର ଭିତ୍ତିଭୂମି ପକାଇ ସାରିଥିଲା । ନହେଲେ ଖ୍ରୀ:ପୂ: ୩୦୦ ବର୍ଷ ପୂର୍ବରୁ ରଚିତ 'ଆପସ୍ତମ୍ବଧର୍ମସୂତ୍ର'ରେ ଭବିଷ୍ୟ ମହାପୁରାଣର ଉଲ୍ଲେଖ ମିଳୁନଥାନ୍ତା ।

ପୁରାଣ ସାହିତ୍ୟରେ ତନ୍ତ୍ର ସାଧନାର ସିଦ୍ଧି ସମ୍ବନ୍ଧରେ ବହୁ ଉଲ୍ଲେଖ ଆମକୁ ମିଳୁଛି । ମାତ୍ର 'ତନ୍ତ୍ର-ସାଧନା'ର କ୍ରିୟା ପ୍ରତ୍ୟକ୍ଷ ଭାବରେ ମିଳୁନାହିଁ । କେବଳ କେତେକ ସଂକେତ ମାତ୍ର ମିଳୁଛି । ଶିବପୁରାଣର ଜଳନ୍ଧର ଯୁଦ୍ଧ ପ୍ରସଙ୍ଗରେ ବିଷ୍ଣୁଙ୍କର ପତିବ୍ରତା 'ବୃନ୍ଦା'ଙ୍କୁ

ଅପବିତ୍ର କରିବା, ପରାଶର ମୁନିଙ୍କର ମତ୍ସଗନ୍ଧା ସତ୍ୟବତୀଙ୍କୁ ଦିବାକାଳରେ ରତି ପ୍ରାର୍ଥନା, ତନ୍ତ୍ରୋକ୍ତ ସାଧନା ମନେହୁଏ ।

କାରଣ 'ରୁଦ୍ରଯାମଳ ତନ୍ତ୍ର'ରେ ପାଞ୍ଚୋଟି ତନ୍ତ୍ରୋକ୍ତ ଚକ୍ରର ବିବରଣୀ ମିଳେ । ଏଥିରେ ପ୍ରଥମ ଚକ୍ର ହେଉଛି ରାଜଚକ୍ର । ଏହି ଚକ୍ରରେ ପଞ୍ଚଶକ୍ତିଙ୍କର ଉପାସନା ନିର୍ଦ୍ଦିଷ୍ଟ ହୋଇଛି । ଏମାନେ ହେଲେ ଯବନୀ, ରଜକୀ, ଯୋଗିନୀ, ସ୍ୱପଚୀ (ଚାଣ୍ଡାଳ ବା ପତିତ ଜାତିର ସ୍ତ୍ରୀ) କୈବର୍ତ୍ତକୀ । ତେଣୁ ସତ୍ୟବତୀ ହେଉଛନ୍ତି ଶେଷବର୍ଗର ଶକ୍ତି । କାରଣ ସେ ବସୁରାଜ ଧୀବରଙ୍କ କନ୍ୟା ରୂପେ ଜଣାଶୁଣା । ଏଇଠି ଜନ୍ମ ନେଇଥିଲେ କୃଷ୍ଣ ଦ୍ୱୈପାୟନ ବ୍ୟାସ ।

ତେଣୁ ସମ୍ଭାବନା ହୁଏ ଯେ ପରାଶର ମୁନି କୈବର୍ତ୍ତ କନ୍ୟା ସତ୍ୟବତୀଙ୍କ ଦ୍ୱାରା ତନ୍ତ୍ର ସାଧନାର ଗୁହ୍ୟତମ ଚକ୍ର ରାଜଚକ୍ରର ଅର୍ଚ୍ଚନା କରିଥିଲେ । କାରଣ ପରାଶରଙ୍କ ପରି ଜଣେ କୁଳୀନ ମୁନି କାମୁକ ହେବା ସମ୍ଭବ ହୋଇ ନପାରେ । ଜଣେ ମୁନି ହୋଇ ରତି ପ୍ରସ୍ତାବ ଦେଇ ପାରିବେ ? ଚିନ୍ତା କରିବାର ପ୍ରସଙ୍ଗ ଇୟେ !!

ସନାତନ ଧାରାରେ ତନ୍ତ୍ର ପରମ୍ପରା ଏକ ସ୍ୱତନ୍ତ୍ର ରୂପରେଖ ନେବାକୁ ବହୁବର୍ଷ ଲାଗିଥିବ । ଏହି ବିଜ୍ଞାନଭିତ୍ତିକ ପରମ୍ପରା ମଧ କମ୍ ପରୀକ୍ଷା ନିରୀକ୍ଷା ଦେଇ ଗତି କରି ନଥିବ ! ମାନବିକ ଚେତନାର ଶୀର୍ଷ ସ୍ଥାନରେ ପହଞ୍ଚିବା ପାଇଁ ମାନବ ସମାଜକୁ କମ୍ ମୂଲ୍ୟ ଦେବାକୁ ପଡ଼ିନଥିବ !!

**ପ୍ରାୟୋଗିକ ପ୍ରଯୁକ୍ତି :**

ଭାରତବର୍ଷରେ ତନ୍ତ୍ରର ଚମତ୍କାର ପ୍ରୟୋଗ ଶାକ୍ୟବଂଶର ରାଜା ବୁଦ୍ଧଦେବଙ୍କ ବାପା ପ୍ରଥମେ ପ୍ରାଚୀନ ତୋଷାଳୀରେ କରିଥିଲେ । ପରବର୍ତ୍ତୀ କାଳରେ ନାଥ ସମ୍ପ୍ରଦାୟ ପ୍ରାୟୋଗିକ ଏବଂ ତାତ୍ତ୍ୱିକ ଦୃଷ୍ଟିକୋଣରୁ ଗ୍ରହଣ କରିଥିଲେ । ସପ୍ତମ/ଅଷ୍ଟମ ଶତାବ୍ଦୀବେଳକୁ ନାଥ ସମ୍ପ୍ରଦାୟର ମହାତ୍ମାମାନେ ଏହି ପ୍ରକ୍ରିୟାକୁ ଖୁବ୍ ଉଚ୍ଚସ୍ତରରେ ପହଞ୍ଚାଇ ଦେଇଥିବାରୁ ଏମାନଙ୍କୁ ତନ୍ତ୍ର ବିଜ୍ଞାନର ପ୍ରାୟୋଗିକ ପ୍ରଯୁକ୍ତିର ମୂଳବିଜ୍ଞାନୀ ବୋଲି କୁହାଯାଇପାରେ । ପୂର୍ବରୁ ଏହି ବିଜ୍ଞାନରେ ଥିବା ଅନେକ ମାର୍ଗର ଦ୍ୱାର ଏମାନେ ହିଁ ଉନ୍ମୁକ୍ତ କରିଥିଲେ । ପୁନରୁଦ୍ଧାର ପ୍ରକ୍ରିୟା ଏମାନଙ୍କର କାଳରୁ ହିଁ ଏକ ନୂତନ ଦିଗ୍‌ଦର୍ଶନ ଗ୍ରହଣ କରିଥିଲା । ନାଥ ସମ୍ପ୍ରଦାୟର ଆଦିଗୁରୁ ମତ୍ସ୍ୟେନ୍ଦ୍ରନାଥ କୌଳାଚାର ମାର୍ଗ, ଗୁରୁ ଗୋରକ୍ଷନାଥ ଶ୍ରୀକ୍ଷେତ୍ରରେ ରହି ଗୋରକ୍ଷନାଥ ଆଶ୍ରମ ପ୍ରତିଷ୍ଠା କରି ସେଠାରେ ହଠଯୋଗ ମାଧ୍ୟମରେ କୁଣ୍ଡଳିନୀମାର୍ଗ ଉନ୍ମୁକ୍ତ କରାଇବାରେ ସଫଳ ହୋଇଥିଲେ । ସେହିପରି ତାଙ୍କପରେ ଗୁରୁ ଜଳନ୍ଧର କଣ୍ୟପା-କାପାଳିକ ସାଧନାର ମାର୍ଗ ସରଳ କରିବାପରେ ତନ୍ତ୍ର ବିଜ୍ଞାନର ପ୍ରଯୁକ୍ତିବିଦ୍ୟା ଶୀର୍ଷ ସ୍ଥାନରେ ପହଞ୍ଚ ଥିଲା ।

ସ୍ମରଣଯୋଗ୍ୟ ଯେ ଏମାନଙ୍କ ପୂର୍ବରୁ ତନ୍ତ୍ର ତିନୋଟି ଶାଖାରେ ବିଭକ୍ତ ହୋଇସାରିଥିଲା । ଆଗମ, ଯାମଳ ଓ ତନ୍ତ୍ର । ତନ୍ତ୍ର ବିଜ୍ଞାନର ଶ୍ରେଷ୍ଠ ପ୍ରବକ୍ତା ବିଂଶ ଶତାବ୍ଦୀର ମହାମହୋପାଧ୍ୟାୟ ଗୋପୀନାଥ କବିରାଜ ଥିଲେ । ସେ ମା' ଆନନ୍ଦମୟୀଙ୍କ ସଙ୍ଗେ ଶ୍ରୀକ୍ଷେତ୍ରରେ ବହୁବର୍ଷ ଗୁପ୍ତରେ ଅବସ୍ଥାନ କଲାପରେ ଶ୍ରୀଜଗନ୍ନାଥ ଉପାସନାର ଗୂଢ଼ତତ୍ତ୍ୱକୁ ବୁଝି ସାଧାରଣ ତତ୍ତ୍ୱରେ ମାନବିକ ମୂଲ୍ୟବୋଧ ଦୃଷ୍ଟିକୋଣରୁ ଏକ ତୁଳନାତ୍ମକ ଅର୍ଥ ପ୍ରଦାନ କରିଥିଲେ ।

ତାଙ୍କପରେ ଯିଏ ତନ୍ତ୍ର ବିଜ୍ଞାନକୁ ଆହୁରି ସରଳ ଉପାୟରେ ଉପସ୍ଥାପନ କରିଛନ୍ତି ସେ ହେଲେ ଶ୍ରୀମଦ୍ ଗୋବିନ୍ଦ ଶାସ୍ତ୍ରୀ । ଯେକି 'ଦେଶିକାଚାର୍ଯ୍ୟ' ରୂପେ ପରିଚିତ । ସେ ଯେତେବେଳେ ମତ ଦେଲେ ଯେ 'ଭାରତରେ ଜ୍ଞାନର ବିକାଶ ଦୁଇଟି ପ୍ରାମାଣିକ ଧାରା ଦେଇ ଗତି କରି ଆସିଛି । ଗୋଟିଏ ବେଦ, ଅନ୍ୟଟି ତନ୍ତ୍ର । ଉଭୟେ ଶବ୍ଦମୟ । ତେଣୁ ବିଶ୍ୱାସର ଭୂମି କୁହାଯାଏ ଏମାନଙ୍କୁ । ଗୋଟିକୁ ସ୍ୱୟମ୍ଭୂ (ବେଦ) କୁହାଯାଏ, ଅନ୍ୟଟିକୁ ଆଗମ (ତନ୍ତ୍ର) କୁହାଯାଏ ।' ସେତେବେଳେ ତନ୍ତ୍ର ବିଜ୍ଞାନ ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କଲା ।

**ମାଧ୍ୟମିକ ପ୍ରଯୁକ୍ତି :**

ଆଗମର ଗୋଟିଏ ଅର୍ଥ ବହୁଳ ପ୍ରଚାରିତ । ଆ-ଶିବଙ୍କ ମୁଖ କମଳରୁ ଆସିବା । ଗ-ଗୌରୀଙ୍କ ମୁଖକୁ ଯିବା । ମ-ବାସୁଦେବଙ୍କ ସମ୍ମତ ହେବା ।

କିନ୍ତୁ ଅନ୍ୟ ଅର୍ଥଟି ହେଲା - 'ଆ ସମନ୍ତାତ୍ ଭାବେନ ଗମୟତୀତି ଆଗମଃ ।' ଯେଉଁ ବିଜ୍ଞାନ ଆମକୁ ପୂର୍ଣ୍ଣ ଭାବରେ ନେଇଯାଏ । ନେଇଯିବାର ସମ୍ଭାବନା ସେଇ ଗନ୍ତବ୍ୟ 'ବିନ୍ଦୁ'କୁ । ବିନ୍ଦୁ ସହିତ ଏକାକାର କରାଇ ଦେବାର ମାଧ୍ୟମିକ ପ୍ରଯୁକ୍ତି । ଯେଉଁଠି ସମସ୍ତ ଭେଦଭାବ ସମାପ୍ତ ହୋଇଯାଇଥାଏ । ସମସ୍ତ ଜଡ଼ତା ଅପସରି ଯାଇଥାଏ । ସେଇଥିପାଇଁ ଆଗମ ବା ତନ୍ତ୍ରକୁ ତନ୍ତ୍ର ବିଜ୍ଞାନୀମାନେ ମାଧ୍ୟମିକ ପ୍ରଯୁକ୍ତି ବୋଲି ଅଧ୍ୟାତ୍ମ ରାଜ୍ୟରେ ବିବେଚନା କରନ୍ତି ।

ଯେଉଁ ବିଜ୍ଞାନ ଆମକୁ ଲକ୍ଷ୍ୟ ବିନ୍ଦୁ ପର୍ଯ୍ୟନ୍ତ ନେଇଯାଇଥାଏ, ତାହା ସାଧାରଣରେ 'ତନ୍ତ୍ର' ଭାବରେ ପରିଚିତ । ତେବେ ତନ୍ତ୍ର କହିଲେ ଆମେ କ'ଣ ବୁଝିବା ? କର୍ମକାଣ୍ଡ ପଦ୍ଧତି ନା ସିଦ୍ଧାନ୍ତ ପଦ୍ଧତି ? ନିୟମ ପଦ୍ଧତି ନା କଳ୍ପନା ପଦ୍ଧତି ! ବିଜ୍ଞାନ ପଦ୍ଧତି ନା ଅଧ୍ୟାୟ ପଦ୍ଧତି ! ପର୍ବ ପଦ୍ଧତି ନା ପୋଷାକ ପଦ୍ଧତି ! କର୍ମ କରିବାର ସଠିକ୍ ପଦ୍ଧତି ବୋଲି ବୁଝିବା ନା ରାଜକୀୟ ନେତୃତ୍ୱର ପ୍ରାନ୍ତ, ରାଜ୍ୟ ବା ଅଧିକାର ପଦ୍ଧତି ।

ଯେ ବିଜ୍ଞାନ, ନା ଶାସନର, ନା ଶାସନଗତ ଦଣ୍ଡବିଧିର,
ନା 'ମୋହ'ର ନା ଆଭିଜାତ୍ୟ ବସ୍ତୁବାଦୀ ଦୁନିଆର !
ଯେତ ଚରମ ଆହ୍ଲାଦର ପଦ୍ଧତି ... ।
କ୍ଷଣିକ ସୁଖର ନୁହେଁ ଚିର 'ଶାନ୍ତି'ର ।

**ବ୍ୟାପକତା ଆକଳନ :**

ତନ୍ତ୍ରବିଜ୍ଞାନ ସ୍ୱୟଂ ବିରାଟ ଓ ବ୍ୟାପକ । ତାକୁ ବିଭକ୍ତ କରାଇ ଖଣ୍ଡବୋଧ କରାଇବା ନିରପେକ୍ଷ ଜ୍ଞାନ ଦୃଷ୍ଟିରୁ ନିଷିଦ୍ଧ । 'ବର୍ଗୀକରଣ'

ଶବ୍ଦ ପ୍ରୟୋଗକରି ବିଭାଜନ କରାଇବା ଏକ ସୁସ୍ଥ ପ୍ରକ୍ରିୟା ନୁହେଁ। ଅସୁସ୍ଥ ପ୍ରକ୍ରିୟା । ତେବେ ସାଧାରଣ ଜ୍ଞାନ ପିପାସୁଙ୍କ ପାଇଁ ବିଭାଜନ ମାଧ୍ୟମରେ ବ୍ୟାପକତାକୁ ଆକଳନ କରାଯାଇପାରେ । ତେଣୁ ଏହାକୁ ବିଭାଗୀକରଣ ନକହି ବ୍ୟାପକତା ଆକଳନ କହିବା ଯୁକ୍ତିଯୁକ୍ତ । ତାହା ହିଁ ଓଡ଼ିଶାର ଧାରା । ଓଡ଼ିଶାର ଶାକ୍ତ ପରମ୍ପରା ସେଥିପାଇଁ ବ୍ୟାପକ ଭାବରେ ପଲ୍ଲବିତ । ବାଲୁକାପୂଜା, ଖୁଦୁରୁକୁଣୀ ଓ ବୁଧେଇ ସୁଧେଇଠାରୁ ଶାବରତନ୍ତ୍ର ଦେଇ ଅଘୋରୀ ଉପାସନା ପର୍ଯ୍ୟନ୍ତ ସବୁକିଛି ସ୍ୱୀକୃତ । ଏଥିରେ ବିଭାଜନର ଲକ୍ଷ୍ମଣରେଖା ନାହିଁ । ଦକ୍ଷିଣ ଓଡ଼ିଶାର 'ଘଟପୂଜା' (ଠାକୁରାଣୀ ଯାତ୍ରା)ଠାରୁ କିଚକେଶ୍ୱରୀଙ୍କର ମୃଣ୍ମୟ ମୁଣ୍ଡପୂଜା ପର୍ଯ୍ୟନ୍ତ ଆମ ସଂସ୍କୃତିର ବିଭୂତି ।

**ମୁକ୍ତିର ମୋହ :**

ତନ୍ତ୍ରବିଜ୍ଞାନର ବାସ୍ତବ ଆକଳନ ପାଇଁ ସାତୋଟି ପାହାଚ ଦେଇଯିବାକୁ ହୁଏ । ସେଗୁଡ଼ିକ ଦେହଲା - ବେଦାଚାର, ବୈଷ୍ଣବାଚାର, ଶୈବାଚାର, ଦକ୍ଷିଣାଚାର, ବାମାଚାର, ସିଦ୍ଧାନ୍ତାଚାର ଓ କୌଳାଚାର ପାହାଚ । ଏହାର ସଠିକ୍ ଆଲୋଚନାକୁ ଲକ୍ଷ୍ୟ କରିବା କଥା । ଏହି 'ସାତପାହାଚ' କିପରି ଓଡ଼ିଆ ସଂସ୍କୃତିରେ ବିଧିବଦ୍ଧ ଅଙ୍ଗୀକୃତ ।

ପ୍ରଥମ ପାହାଚ ମୂଳରେ ପ୍ରଜାପତି ବ୍ରହ୍ମା ରହିଛନ୍ତି । ସୃଷ୍ଟି ସୃଜନର ଦେବତା ବ୍ରହ୍ମା ହିଁ 'ବେଦ'ର ସଂରଚକ । ବେଦ ବିହିତ ଆଚାର ହିଁ ବେଦାଚାର । ଉପାସନାର ମୂଳ ଲକ୍ଷ୍ୟ ମୁକ୍ତି ।

ଦ୍ୱିତୀୟ ପାହାଚ ବୈଷ୍ଣବାଚାର । ଯାହାର ଅଧୀଶ ପ୍ରଭୁ ଶ୍ରୀବିଷ୍ଣୁ । ଶ୍ରୀବିଷ୍ଣୁଙ୍କର କାର୍ଯ୍ୟ ସୃଷ୍ଟିର ପୋଷଣ । ପୋଷଣ ଦେହ ପର୍ଯ୍ୟନ୍ତ ନୁହେଁ । ଦେହର ଅନ୍ତଃକରଣ ଓ ସାମଗ୍ରିକତା ସହିତ ସଂପର୍କିତ । ଠିକ୍ ଶ୍ରୀଜଗନ୍ନାଥଙ୍କ ଉପାସନାର ଅନ୍ତଃସ୍ରୋତ ପରି । ବୈଷ୍ଣବାଚାରର ମୂଳ ଲକ୍ଷ୍ୟ ଯେପରି ମୋକ୍ଷ ଓ ମୁକ୍ତି ସେହି ପରି ଓଡ୍ରରାଷ୍ଟ୍ରର ଉପାସ୍ୟ ମହାପ୍ରଭୁଙ୍କ ଉପାସନାର ମୂଳ ଲକ୍ଷ୍ୟ ।

ତୃତୀୟ ପାହାଚ, ଶୈବାଚାର । ଏହାର ଅଧିପତି ହେଲେ ପ୍ରଳୟାଧିପତି ଶିବ । ବିଜ୍ଞାନ ଦୃଷ୍ଟିରୁ ସୃଷ୍ଟି-ସ୍ଥିତି-ପ୍ରଳୟ ରହିବା ସ୍ୱାଭାବିକ । ଯେ ତିନିକର୍ମର ଅଧିପତିଙ୍କ ଆଚାର ମଧ୍ୟ ବିଜ୍ଞାନଠାରୁ ପୃଥକ୍ ରହିବା ସମ୍ଭବ ନୁହେଁ । ପ୍ରଳୟ ଅଥବା ସଂହାରର ଅଧିପତିଙ୍କ ସୁ-କୃପାର ପଥ ହିଁ ଶୈବାଚାର । ଆଚାର ଓ ଅଧିପତିଙ୍କ ମଧ୍ୟରେ ସାମାନ୍ୟ ଭିନ୍ନତା ଥାଇପାରେ, ମାତ୍ର ଶୈବାଚାର ହିଁ ଶୈବମାନଙ୍କର ଉତ୍ସ ହୋଇ ବିକାଶଲାଭ କରିଛି ଏହା ଆମକୁ ସ୍ୱୀକାର କରିବାକୁ ପଡ଼େ । ଉପାସନାର ମୂଳଲକ୍ଷ୍ୟ ମୋକ୍ଷ ଓ ମୁକ୍ତି ।

**ନ୍ୟାସଠାରୁ ନାମାବଳୀ :**

ଶ୍ରୀଦକ୍ଷିଣମୂର୍ତ୍ତି ଋଷି ଉପରୋକ୍ତ ତିନୋଟି ଆଚାରର ସମନ୍ୱୟାତ୍ମକ ସ୍ୱରୂପ ପ୍ରସ୍ତୁତ କରିଥିଲେ, ଯାହାକୁ 'ଦକ୍ଷିଣାଚାର' କୁହାଯାଏ । ଏହା ଚତୁର୍ଥ ପାହାଚ । ଏହି ଆଚାର ସଂପୂର୍ଣ୍ଣ କର୍ମକାଣ୍ଡଭିତ୍ତିକ ନ୍ୟାସଠାରୁ ନାମାବଳୀ ପର୍ଯ୍ୟନ୍ତ ।

ପଞ୍ଚମ ପାହାଚ ବାମାଚାର । ତନ୍ତ୍ରବିଜ୍ଞାନର ଔଦ୍ଧତ୍ୟର ଉଦ୍‌ଘୋଷଣ । ଔଦ୍ଧତ୍ୟ କହିଲେ ସଠିକ୍ ଆକଳନରୁ ଦୂରେଇ ଯିବା ଆମେ । ତେଣୁ ବିଜ୍ଞାନର ଟାଣପଣ କହିଲେ ଠିକ୍ ହେବ । ଏହି ଆଚାରକୁ ନେଇ ତନ୍ତ୍ରବିଜ୍ଞାନର ଗର୍ହିତ ପଦାର୍ଥକୁ ନେଇ ଭ୍ରମାତ୍ମକ ଅବସ୍ଥା ସୃଷ୍ଟି ହୋଇଛି । ଏହି ପାହାଚର ଖୋଲାଦ୍ୱାର ଅନେକ ଅନାଚାରୀ କୁପାତ୍ରଙ୍କୁ ପ୍ରବେଶ ଅଧିକାର ଦେଇଛି । ସେଇମାନଙ୍କ ପାଇଁ ଯେ ପଥ କୁଖ୍ୟାତ ହୋଇପଡ଼ିଛି । ନଚେତ୍ ଏକ ଯୋଗଭିତ୍ତିକ ବିଜ୍ଞାନର ପଥ କଣ୍ଟକିତ ହୋଇନଥାନ୍ତା ।

ଯେ ପଥ ସମୃଦ୍ଧ ବି ହୋଇଛି । ଚଉରାଅଶୀ ସିଦ୍ଧ ପରମ୍ପରା ଏହାକୁ ସମୃଦ୍ଧ କରିଛି । ଏହାରର ପଞ୍ଚମକାର, ପଞ୍ଚ ପଦାର୍ଥ (ବିଷ୍ଠା, ଧାରାମୃତ, ଶୁକ୍ର, ରକ୍ତ ଓ ମଜ୍ଜା), ପଞ୍ଚଭୋଜ୍ୟ (ଗୋମାଂସ, ଗୋ-ଧୃତ, ଗୋରକ୍ତ, ଗୋକ୍ଷୀର, ଗୋଦଧି) ସାଧାରଣ ମନରେ ଜୁଗୁପ୍‌ସା ହିଁ ସୃଷ୍ଟି କରୁଥିଲା । ଯଦିଓ ଏହାର ବାସ୍ତବିକ ଅର୍ଥ ଓ ଭାବ ସଂପୂର୍ଣ୍ଣ ଭିନ୍ନ । ନ୍ୟାସଠାରୁ ଆରମ୍ଭ ହୋଇ ନାମାବଳୀରେ ଶେଷ ହୋଇଥିବା ପର ପାହାଚରେ 'ତନ୍ମୟତା' ହିଁ କାମ୍ୟ ହୁଏ । ନିଜ ସତ୍ତାକୁ ଭୁଲିଯିବା ହିଁ ଶ୍ରେୟ ହୁଏ ।

**ଜୀବନ୍ମୁକ୍ତି :**

ବାମାଚାରକୁ ସମୃଦ୍ଧ କରିଥିବା ସିଦ୍ଧାଚାର୍ଯ୍ୟମାନଙ୍କ ପରେ କେତେକ ଜୀବନଭିତ୍ତିକ ସିଦ୍ଧାନ୍ତ ଯେଥିରେ ସ୍ଥାନ ପାଇଥିଲା । ତାହା ପରବର୍ତ୍ତୀ କାଳରେ ସିଦ୍ଧାନ୍ତାଚାରର ଭାବରେ ପ୍ରସିଦ୍ଧ ହେଲା । ଯାହାକୁ ଆମେ ଷଷ୍ଠ ପାହାଚ କହିବା । ବାମାଚାରର 'ମୋକ୍ଷ' ସୁଦୂର ପରାହତ ହେବାପରେ 'ତନ୍ମୟ'କୁ ଏଥିରେ ଗ୍ରହଣ କରାଯାଇଥିଲା ।

ସପ୍ତମ ପାହାଚ ହେଉଛି କୌଳାଚାର । ତନ୍ତ୍ରବିଜ୍ଞାନର ସର୍ବୋଚ୍ଚ ମାର୍ଗ । ବାମମାର୍ଗରେ କ୍ରିୟାତ୍ମକ ସିଦ୍ଧାନ୍ତ ଏବଂ ଆନୁଷ୍ଠାନିକ ପଥ ହିଁ କୌଳାଚାର । ବାମମାର୍ଗ ଯଥେଷ୍ଟ ପରିଷ୍କୃତ ହୋଇ କୌଳମାର୍ଗରେ ଉଦ୍‌ଭାସିତ ହୋଇଥାଏ । କୌଳମାର୍ଗୀ ବାସ୍ତବରେ ସର୍ବ-ତନ୍ତ୍ର-ସ୍ୱତନ୍ତ୍ର । ପୀଠ, ଉପପୀଠ ଓ ତୀର୍ଥର ପବିତ୍ରତା ତାହାର ଅନ୍ତଃକରଣରେ ପରିସ୍ଫୁଟ ହୋଇସାରିଥାଏ । ମହାନିର୍ବାଣ ତନ୍ତ୍ରର ଚତୁର୍ଥ ଉଲ୍ଲାସ ଅନୁଯାୟୀ କୌଳାଚାର ସାଧନାରେ ବ୍ରହ୍ମଜ୍ଞାନ ଅନୁଭବ ସମ୍ଭବ । ବ୍ରହ୍ମଜ୍ଞାନ ଅନୁଭବ ହିଁ ଜୀବନ୍ମୁକ୍ତି ।

'ବ୍ରହ୍ମଜ୍ଞାନ ଯୁତୋ ମର୍ତ୍ତ୍ୟୋ ଜୀବନ୍ମୁକ୍ତୋ ନ ସଂଶୟଃ ।'

**ଜୀବନ୍ମୁକ୍ତିର କୁଳରୀତି :**

ତନ୍ତ୍ରର ଏକ ପାରିଭାଷିକ ଶବ୍ଦ ଇୟେ । ଆମ୍ନାୟ ତନ୍ତ୍ର ବିଜ୍ଞାନର ମାର୍ଗ । ଏକ ପଦ୍ଧତି । କେହି ଆମ୍ନାୟ କହିଲେ ସାଧନାର ଗୁରୁ ପରମ୍ପରା

କହିଥାନ୍ତି ତ କେହି 'କୁଳରୀତି' ମଧ କହନ୍ତି । ଦୁଇଟିଯାକ ଭାବ ସମାନ । ଗୁରୁ ପରମ୍ପରା ଯାହା କୁଳରୀତି ହିଁ ସେଇଆ । ଗୁରୁଙ୍କ କୁଳର ରୀତି । ସଦ୍‌ଗୁରୁ ବିଶ୍ୱାସମୂଳକ ଉପଦେଶ ଦେଇଥାନ୍ତି । ରାସ୍ତା ଦେଖାଇଥାନ୍ତି । ଏହି ରାସ୍ତା ମନ୍ତ୍ରର ରାସ୍ତା ହୋଇପାରେ ବା ମନ୍ତ୍ରର ଉପଦେଶ ହୋଇପାରେ । ଏହା ଆଧ୍ୟାତ୍ମିକ/ଯୌଗିକ କ୍ରିୟା ବି ହୋଇପାରେ ।

ସାଧନାମାର୍ଗରେ ଉପରକୁ ଉଠିଲେ ଗୋଟିଏ ଆମ୍ନାୟରୁ ଶ୍ରେଷ୍ଠ ଆମ୍ନାୟରେ ପ୍ରବେଶ କରିବାକୁ ପଡ଼େ । ପ୍ରତ୍ୟେକ ରାସ୍ତାରେ ହା-ଦି ମତ ଓ କା-ଦି ମତର ସାମନା କରିବାକୁ ହୋଇଥାଏ । ଏଇ ରାସ୍ତା ପାର ହେବାକୁ ହେଲେ କୁଳରୀତି ଆପଣେଇବାକୁ ପଡ଼େ । ଗୁରୁଙ୍କର ଆବଶ୍ୟକ ପଡ଼େ ।

**ଆଧ୍ୟାତ୍ମିକ ବିକଳତା :**

ପ୍ରାରବ୍ଧ ସଂସ୍କାରରୁ ଜାଗୃତିର ପ୍ରଚେଷ୍ଟା । ସାଧନାକ୍ଷେତ୍ର ପ୍ରତି ଜାଗ୍ରତ ମାନସିକତାର ଉନ୍ମୁଖତା । ଜଗତ୍ ମିଥ୍ୟାର ଅନୁଭୂତି । ମିଥ୍ୟା ଜଗତରୁ ମୁକ୍ତି ପାଇଁ ଆବଶ୍ୟକ ହୁଏ ଆଧ୍ୟାତ୍ମିକ ବିକଳତା । ସଂସାରରେ ସୁଖଦୁଃଖ, ଜୀବରଗତି ଆନ୍ଦୋଳିତ କରେ ମନକୁ । ମୁଁ କିଏ ? ଶରୀର କ'ଣ ? ମନ କ'ଣ ? ଈଶ୍ୱର କିଏ ? କେଉଁଠି ଅଛନ୍ତି ? ମୁଁ ଯେ ଜଗତକୁ କାହିଁକି ଆସିଛି ?

ଏହାକୁ କୁହାଯାଏ ଆଧ୍ୟାତ୍ମିକ ବିକଳତା । ଉତ୍ତରକୁ ଆଶା ରଖେ । କେବେ ଚାହେଁ ଶୂନ୍ୟକୁ । କେବେ ହୋଇଯାଏ ମଉନ । କେବେ ସଦ୍‌ଗୁରୁ ମାନିତ ହୋଇଥିବା ସିଦ୍ଧାଚାର୍ଯ୍ୟଙ୍କୁ ତ କେବେ ଦେବାଳୟର ସିଂହାସନୁ ଚାହିଁ ରହେ ।

ଜିଜ୍ଞାସା ଆଣିଦିଏ ତା' ପାଇଁ ନୂତନ ଜନ୍ମ । ସଦ୍‌ଗୁରୁଙ୍କର ନିର୍ମଳ ଦର୍ଶନ ହୁଏ ତା'ର । ଯାହା ଜୀବନର ସର୍ବଶ୍ରେଷ୍ଠ ଦିବ୍ୟ ଉପଲବ୍‌ଧି ।

**ଭକ୍ତିର ସାଗର :**

କୁଳରୀତିରେ ଆଧ୍ୟାତ୍ମିକ ବିକଳତା ପରେ ଆସେ ଆଉ ଏକ କୁଳରୀତି । ତାହା ଭକ୍ତି ସାଗର । ତନ୍ତ୍ରବିଜ୍ଞାନର ପରିଭାଷାରେ ଏହାକୁ କୁହାଯାଏ 'ଦକ୍ଷିଣାମ୍ନାୟ' । ଆଧ୍ୟାତ୍ମିକ ବିକଳତାର ପରବର୍ତ୍ତୀ ସୋପାନ ଇୟେ । ଏହି ସୋପାନରେ ମନ୍ତ୍ରର ଚୈତନ୍ୟ ସ୍ଫୁରଣ ହୁଏ । ଏହାଦ୍ୱାରା ଅନ୍ତଃକରଣରେ ସରସତା ଓ ଆନନ୍ଦ ଉଦ୍‌ଗମ ହୁଏ ।

ତନ୍ତ୍ରବିଜ୍ଞାନରେ ଏହି ଅବସ୍ଥାକୁ କୁହାଯାଏ ଭକ୍ତିର ସାଗର । ଭାବର ତରଙ୍ଗ ଉଠେ ଯେ ସ୍ତରରେ । ଭାବରାଜ୍ୟର ଭିତ୍ତିଭୂମି ଉପରେ ଠିଆ ହୋଇ ସାଧକଟିଏ ନିଜ ଇଷ୍ଟଙ୍କର ଦର୍ଶନ ଲାଭ କରେ । ସରଳରେ କହିଲେ ଭକ୍ତି ଓ ଭାବର ବିକଶିତ ଅବସ୍ଥାରେ ଭାବଭୂମିରେ ପ୍ରବେଶ କରିବାକୁ ହୁଏ । ସେଠି ଲକ୍ଷ୍ୟସ୍ଥଳ ହୋଇଯାଏ ଇଷ୍ଟପ୍ରାପ୍ତି । ବିଷୟବାସନା ପ୍ରତି ବିରାଗଭାବନା ଆସେ । 'ବିରହ' ଭକ୍ତିର ଅଭ୍ୟୁଦୟ ହୁଏ । ଯାହା ଶ୍ରୀରାଧାଙ୍କର ଶ୍ରୀକୃଷ୍ଣଙ୍କ ବିରହରେ ସୃଷ୍ଟି ହୋଇଥିଲା । ତନ୍ତ୍ରବିଜ୍ଞାନରେ ଭକ୍ତିଯୋଗର ଆମ୍ନାୟ ବୋଲି ଏହାକୁ କୁହାଯାଏ ।

**ଅନ୍ତରଙ୍ଗ କର୍ମଯୋଗ :**

କୁଳରୀତିରେ ତୃତୀୟ ସୋପାନ ହେଲା ଅନ୍ତରଙ୍ଗ କର୍ମଯୋଗ । ତନ୍ତ୍ରବିଜ୍ଞାନରେ ଯାକୁ 'ପଶ୍ଚିମ ଆମ୍ନାୟ' କୁହାଯାଏ । ଲକ୍ଷ୍ୟ ବିନ୍ଦୁରେ ପହଞ୍ଚିବା ପାଇଁ କର୍ମଯୋଗ ପ୍ରଧାନ ସୋପାନ । ଏହି ସୋପାନ ବାହ୍ୟକ୍ରିୟାଭିତ୍ତିକ ନୁହେଁ । ଅନ୍ତଃକରଣର ଦିବ୍ୟକ୍ରିୟାଭିତ୍ତିକ । ଏହାକୁ ଯୋଗପଥ କହିଲେ ସଠିକ୍ ହେବ । ଉତ୍କଳୀୟଧାରାରେ ପ୍ରାତଃସ୍ମରଣୀୟ ମହାପୁରୁଷ ଅଚ୍ୟୁତାନନ୍ଦ ଏହି ଦିବ୍ୟକ୍ରିୟାକୁ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱରେ ବ୍ୟକ୍ତ କରିଛନ୍ତି ।

କୁଳରୀତିର ଚତୁର୍ଥ ସୋପାନ ହେଉଛି ଆତ୍ମସିଦ୍ଧିର ଉନ୍ନତସୋପାନ । 'ଅଦ୍ୱୈତ ସାକାର'ର ପୂର୍ଣ୍ଣତା ଆସେ ଏହି ସୋପାନରେ । ଓଡ଼ିଶାରେ ଦଶନାମୀ ସମ୍ପ୍ରଦାୟର ପ୍ରଚ୍ଛନ୍ନ ଦାର୍ଶନିକ ରହସ୍ୟ ଠିକ୍ ଏୟା । ଏଇଠି ଜ୍ଞାନଯୋଗର ପ୍ରାଧାନ୍ୟ ଓ ପ୍ରାବଲ୍ୟ ପ୍ରଚୁର । ତନ୍ତ୍ର ବିଜ୍ଞାନରେ ଏହା ଉତ୍ତରାମ୍ନାୟ ପର୍ଯ୍ୟାୟଭୁକ୍ତ । କୁଳରୀତିର ପଞ୍ଚମ ସୋପାନ ହେଉଛି ବିଜ୍ଞାନଯୋଗ । ଏହି ଯୋଗରେ ତ୍ରିକାଳଦ୍ରଷ୍ଟା ହେବା ଅସମ୍ଭବ ନୁହେଁ । ଏଇ ରହସ୍ୟକୁ ବ୍ୟକ୍ତ କରାଯାଏ ତନ୍ତ୍ରବିଜ୍ଞାନର ପାରିଭାଷିକ ଶବ୍ଦ 'ଉର୍ଦ୍ଧ୍ୱାମ୍ନାୟ' ଶବ୍ଦରେ ।

ଗବେଷଣା ଅଧିକାରୀ
ଅଗ୍ରୀୟ ସଂସ୍କୃତ ଗବେଷଣା କେନ୍ଦ୍ର
ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ
ଶ୍ରୀବିହାର, ପୁରୀ-୭୫୨୦୦୩



# ଶ୍ରୀକ୍ଷେତ୍ରର ଶାକ୍ତ ତାନ୍ତ୍ରିକ ଧର୍ମଧାରା

ଅଧ୍ୟାପକ ପଣ୍ଡିତ ହରିହର ମହାପାତ୍ର

ଅତ୍ୟନ୍ତ ପୂତ ପାବନ କ୍ଷେତ୍ର ଶ୍ରୀକ୍ଷେତ୍ର । ପୂର୍ବରୁ ଏପରିକି ମହାଭାରତ ଯୁଗରୁ ଖ୍ୟାତିଲାଭ କରିଥିବା ଏହି ବିଶାଳ କ୍ଷେତ୍ର ସୀମିତ ଓ ସଂକୁଚିତ ହୋଇଥିଲେ ମଧ ଏହାର ପାବିତ୍ର୍ୟ ଅକ୍ଷୁଣ୍ଣ ରହିଅଛି । ଏବେ ମଧ ଶ୍ରୀତୀର୍ଥ, ଶ୍ରୀଧାମ, ଶ୍ରୀମନ୍ଦିର ଓ ଶ୍ରୀଦେବୀଙ୍କୁ ସ୍ୱବକ୍ଷରେ ଧାରଣ କରି ସ୍ୱକୀୟ ନାମକୁ ସାର୍ଥକ କରୁଅଛି । କ୍ଷେତ୍ରର ନାମ ଓ ଧାମରୁ ଏହା ଶାକ୍ତ କ୍ଷେତ୍ରର ପରିଚୟ ପ୍ରଦାନ କରେ ।

**ଶକ୍ତି ଓ ଶାକ୍ତ**

ଶକ୍ତିର ଉପାସକଙ୍କୁ ଶାକ୍ତ କୁହାଯାଏ । ପ୍ରକୃତି ଜଡ଼ ବୋଲି ଶାସ୍ତ୍ର କହେ । ଯେକୌଣସି ଜଡ ବସ୍ତୁରେ ଶକ୍ତିର ସଂଚାର ହେଲେ ତାହା କାର୍ଯ୍ୟକ୍ଷମ ହୁଏ । ଆଦ୍ୟା ପ୍ରକୃତିରେ ମହାଶକ୍ତିର ସଂଯୋଗ ଯୋଗୁଁ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି । ତେଣୁ ଆଦ୍ୟା ପ୍ରକୃତି ବା ମହାଶକ୍ତିଙ୍କୁ ଶାକ୍ତତନ୍ତ୍ର ମହାଲକ୍ଷ୍ମୀ ନାମରେ ଅଭିହିତ କରିଅଛି । ସତ୍ୱ, ରଜ ଓ ତମ ଭେଦରେ ତିନିଗୋଟି ଗୁଣଥିବା ବେଦ ସ୍ୱୀକାର କରେ । ଆଦ୍ୟା ମହାଲକ୍ଷ୍ମୀ ଗୁଣତ୍ରୟର ସାମ୍ୟାବସ୍ଥାରେ ଅବସ୍ଥାନ କରୁଥିଲେ ଓ ସର୍ବବ୍ୟାପିନୀ ଥିଲେ । ତେଣୁ ପ୍ରାଧାନିକ ରହସ୍ୟରେ କୁହାଯାଇଅଛି ଯେ-

ସର୍ବସ୍ୟାଦ୍ୟା ମହାଲକ୍ଷ୍ମୀ ସ୍ତ୍ରିଗୁଣା ପରମେଶ୍ୱରୀ
ଲକ୍ଷା ଲକ୍ଷ ସ୍ୱରୂପା ସା ବ୍ୟାପ୍ୟକୃସ୍ନଂ ବ୍ୟବସ୍ଥିତା ।

ସେ ଚତୁର୍ଭୁଜା ଥିଲେ ଓ ତାଙ୍କର ଭୁଜ ଚତୁଷ୍ଟୟ ବିଭିନ୍ନ ଆୟୁଧ ବିମଣ୍ଡିତ ଥିଲା । ତାହାଙ୍କର ତପ୍ତକାଞ୍ଚନ ବର୍ଣ୍ଣର ଆଭା ଓ ଆଭୂଷଣଗୁଡ଼ିକର ତେଜରେ ସେ ଶୂନ୍ୟ ଜଗତକୁ ପରିପୂର୍ଣ୍ଣ କରିଥିଲେ ।

ତପ୍ତକାଞ୍ଚନ ବର୍ଣ୍ଣାଭା ତପ୍ତ କାଞ୍ଚନ ଭୂଷଣା
ଶୂନ୍ୟଂତଦଖିଳଂ ସ୍ୱେନ ପୂରୟା ମାସ ତେଜସା ।

ସୃଷ୍ଟିକାରିଣୀ ଆଦ୍ୟା ଚତୁର୍ଭୁଜା ମହାଲକ୍ଷ୍ମୀ ସେହି ସମୟରେ ଜଗତକୁ ଶୂନ୍ୟ ଦେଖି ନିଜର ଗୁଣ ରୂପ ଉପାଧି ଭେଦରୁ ତମୋଗୁଣ, ରଜଗୁଣ ଓ ସତ୍ୱଗୁଣର ଆଧାରରେ ନିଜେ ନିଜକୁ ତିନି ଭାଗରେ ବିଭକ୍ତ କରି ତିନି ରୂପରେ ଆବିର୍ଭୂତା ହେଲେ । ତମଗୁଣରୁ ପ୍ରକଟିତା ମହାଶକ୍ତିଙ୍କୁ ମହାକାଳୀ କୁହାଗଲା । ଅଦ୍ୟା ମହାଲକ୍ଷ୍ମୀ ସ୍ୱୟଂ ରଜୋଗୁଣ-ସଂପର୍ଣ୍ଣା ହୋଇ ପୂର୍ବରୁ ସ୍ୱକୀୟ ନାମରେ (ମହାଲକ୍ଷ୍ମୀ) ନାମିତ ହେଲେ । ସତ୍ୱଗୁଣରୁ ପ୍ରକଟିତା ମହାଶକ୍ତିଙ୍କୁ ମହାସରସ୍ୱତୀ କୁହାଗଲା । ମହାଲକ୍ଷ୍ମୀ, ମହାକାଳୀ ଓ ମହାସରସ୍ୱତୀଙ୍କୁ ମିଥୁନ (ପୁରୁଷ ସ୍ତ୍ରୀ ଯୁଗଳ) ଜାତ କରିବାକୁ କହି ନିଜେ ମଧ ମିଥୁନର ସୃଷ୍ଟିକାରିଣୀ ହେଲେ । ସ୍ୱଗୁଣ ଓ କର୍ମାନୁସାରେ ମହାକାଳୀ ଶିବ ଓ ସରସ୍ୱତୀଙ୍କୁ ନିଜେ ମହାଲକ୍ଷ୍ମୀ ବ୍ରହ୍ମା ଓ ଲକ୍ଷ୍ମୀଙ୍କୁ ତଥା ମହାସରସ୍ୱତୀ ବିଷ୍ଣୁ ଓ ଗୌରୀଙ୍କୁ ଜାତ କଲେ ।



ଥୋବାଚ ମହାଲକ୍ଷ୍ମୀ-ର୍ମହାକାଳୀଂ ସରସ୍ୱତୀଂ
ଯୁବାଂ ଜନାୟତାଂ ଦେବ୍ୟୌ ମିଥୁନେ ସ୍ୱାନୁରୂପତଃ
ଇତ୍ୟୁକ୍ତା ତେ ମହାଲକ୍ଷ୍ମୀଃ ସସର୍ଜ ମିଥୁନଂ ସ୍ୱୟମ୍
ହିରଣ୍ୟ ଗର୍ଭୌ ରୁଚିରୌ ସ୍ତ୍ରୀପୁଷେଃ କମଳାସନୌ ।
(ପ୍ରାଧାନିକ ରହସ୍ୟ)

ମହାକାଳୀଙ୍କଠାରୁ ଜାତ ମିଥୁନର ନାମ ଶଙ୍କର ଓ ସରସ୍ୱତୀ, ମହାଲକ୍ଷ୍ମୀଙ୍କଠାରୁ ଜାତ ମିଥୁନ ବ୍ରହ୍ମା ଓ ଲକ୍ଷ୍ମୀ ଏବଂ ମହାସ୍ୱତୀଙ୍କଠାରୁ ଜାତ ମିଥୁନ ବିଷ୍ଣୁ ଓ ଗୌରୀ ନାମରେ ମହାଲକ୍ଷ୍ମୀଙ୍କର ନିର୍ଦ୍ଦେଶରେ ଅଭିହିତା ହେଲେ । ସେତିକିରେ ଆଦ୍ୟାଶକ୍ତିଙ୍କର କର୍ମ ଶେଷ ହୋଇନଥିଲା । ସେ ଶିବଙ୍କୁ ଗୌରୀ, ବ୍ରହ୍ମାଙ୍କୁ ସରସ୍ୱତୀ ଓ ବିଷ୍ଣୁଙ୍କୁ ଲକ୍ଷ୍ମୀ ଶକ୍ତି ବା ପତ୍ନୀ ରୂପେ ସମର୍ପଣ କଲେ ।

ତାଙ୍କରି ନିର୍ଦ୍ଦେଶରେ ବ୍ରହ୍ମା, ବିଷ୍ଣୁ ଓ ଶିବ ସ୍ୱ ସ୍ୱ ପତ୍ନୀ ବା ଶକ୍ତିଙ୍କ ସହ ମିଳିତ ହୋଇ ଯଥାକ୍ରମେ ସୃଷ୍ଟି ନିର୍ମାଣ, ପାଳନ ଓ ସଂହାର କାର୍ଯ୍ୟରେ ନିଯୁକ୍ତ ରହିଲେ ।

ଏଥିରୁ ଏହା ବୁଝାଯାଏ ଯେ ଶାକ୍ତମାନେ ତ୍ରିଗୁଣା ସର୍ବଶକ୍ତିମୟୀ ଆଦ୍ୟା ପ୍ରକୃତିଙ୍କୁ ଚତୁର୍ଭୁଜା ମହାଲକ୍ଷ୍ମୀ ଓ ତମଗୁଣା ସର୍ବଶକ୍ତିମୟୀ ପ୍ରକୃତିଙ୍କୁ ଚତୁର୍ଭୁଜା ମହାକାଳୀ ତଥା ସତ୍ତ୍ୱଗୁଣା ସର୍ବଶକ୍ତିମୟୀ ପ୍ରକୃତିଙ୍କୁ ଚତୁର୍ଭୁଜା ମହାସରସ୍ୱତୀ ରୂପେ ଆରାଧନା କରୁଥିବାବେଳେ ରଜୋମୟୀ ଶକ୍ତି ରୂପେ ସେହି ଆଦ୍ୟା ପ୍ରକୃତି ଚତୁର୍ଭୁଜା ମହାଲକ୍ଷ୍ମୀଙ୍କୁ ଆରାଧନା କରନ୍ତି ।

ଏହାକୁ ସରଳ ଭାବରେ ବୁଝାଇବାକୁ ଗଲେ ନିଜେ ଆଦ୍ୟା ଚତୁର୍ଭୁଜା ମହାଲକ୍ଷ୍ମୀ ରଜୋମୟୀ ମୂର୍ତ୍ତିରେ ସୃଷ୍ଟି ସର୍ଜନକାରିଣୀ ହେଲେ ।

ସୃଷ୍ଟିର ଉତ୍ପତ୍ତି ଓ କ୍ରମ ବିକାଶ ନିମ୍ନୋକ୍ତ ପ୍ରକାରେ ଶାକ୍ତମତେ ବର୍ଣ୍ଣିତ ଅଛି । ମହାଲକ୍ଷ୍ମୀଙ୍କଠାରୁ ଜାତ ବ୍ରହ୍ମା । ମହାକାଳୀଙ୍କଠାରୁ ସମ୍ଭୂତ କନ୍ୟା ସରସ୍ୱତୀଙ୍କ ସହ ମିଳିତ ହେବା ଫଳରେ ଅର୍ଥାତ୍ ପ୍ରକୃତି ଓ ପୁରୁଷ ସଂଯୋଗରେ ପ୍ରକୃତିର ଗର୍ଭରେ (ସରସ୍ୱତୀଙ୍କ ଗର୍ଭରେ) ଅଣ୍ଡାର ଉଦ୍‌ଭବ ହେଲା । ସେହି ଅଣ୍ଡା ମଧରେ ପ୍ରକୃତିର ପ୍ରଧାନ ତତ୍ତ୍ୱଗୁଡ଼ିକ ଯଥାକ୍ରମେ ସନ୍ନିବିଷ୍ଟ ହେଲା । ସେହି ତତ୍ତ୍ୱଗୁଡ଼ିକ ସାଂଖ୍ୟଦର୍ଶନ ମତରେ ୨୫ ପ୍ରକାର । ପ୍ରଥମେ ତତ୍ତ୍ୱ-ପୁରୁଷ ଓ ପ୍ରକୃତି ଭେଦରେ ଦୁଇ ପ୍ରକାର । ସେଥିମଧ୍ୟରୁ ପୁରୁଷ ଏକକ । ତାହାର ବିଭାଗାନ୍ତର ନାହିଁ । ପ୍ରକୃତି- ମହାନ୍, ବୁଦ୍ଧି ଓ ଅହଂକାର ଭେଦରେ ୩ ପ୍ରକାର ଅହଂକାର-ତନ୍ମାତ୍ର ଓ ଇନ୍ଦ୍ରିୟ ଭେଦରେ ଦୁଇ ପ୍ରକାର । ତନ୍ମାତ୍ର - କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ ଭେଦରେ ପାଞ୍ଚ ପ୍ରକାର ଇନ୍ଦ୍ରିୟ-ଜ୍ଞାନ, ମନ ଓ କର୍ମ ଭେଦରେ ତିନି ପ୍ରକାର-ଜ୍ଞାନ, ଜିହ୍ୱା, ନାସା, ଚକ୍ଷୁ, ଶ୍ରୋତ୍ର ଓ ତ୍ୱକ୍ ଭେଦରେ ପାଞ୍ଚ ପ୍ରକାର- ସେହିପରି କର୍ମ ମଧ - ବାକ୍, ପାଣି, ପାଦ ପାୟୁ ଓ ଉପସ୍ଥ ଭେଦରେ ପାଞ୍ଚ ପ୍ରକାର ।

ଏହି ପ୍ରାକୃତିକ ତତ୍ତ୍ୱଗୁଡ଼ିକ ସରସ୍ୱତୀଙ୍କ ଗର୍ଭସ୍ଥ ଅଣ୍ଡରେ ବିକଶିତ ହେବାପରେ ଶିବ ଗୌରୀ ସଂଯୋଗ ଏହାକୁ ଉଦ୍‌ଘାଟିତ କଲା । ସେହି ଦିନଠାରୁ ପରିଦୃଶ୍ୟମାନ ବିଶ୍ୱ ବ୍ରହ୍ମାଣ୍ଡ ଓ ଗୌରୀ ଜଗଦ୍ଧାତ୍ରୀ ରୂପେ ବିବେଚିତ ହେଲେ । ସୃଷ୍ଟ ବ୍ରହ୍ମାଣ୍ଡର ପାଳନ, ପୋଷଣ ଓ ପରିବର୍ତ୍ତନର କର୍ମଗୁଡ଼ିକ ବିଷ୍ଣୁ ଲକ୍ଷ୍ମୀ ସଂଯୋଗରୁ ସଂପନ୍ନ ହେଉଥିବା ବେଳେ ଶିବଗୌରୀ ସଂଯୋଗ ପ୍ରଳୟର କାରଣ ହେବ ।

'ସ୍ତ୍ରିୟ ସମସ୍ତାସ୍ତବଦେବୀ ଭେଦାଃ' ଶକ୍ରାଦି ସ୍ତୁତିରେ କୁହାଯାଇଛି । ତେବେ ସଂସାରର ସମସ୍ତ ନାରୀ ସେହି ଦେବୀ ଆଦ୍ୟାଶକ୍ତିଙ୍କର ଅଂଶ ଅଟନ୍ତି । ପ୍ରକୃତି ରୂପିଣୀ ନାରୀ ପୁରୁଷ ସଂଯୋଗରୁ ଗର୍ଭବତୀ ହୁଏ । ପୃଥିବୀ ଆଦି ପଞ୍ଚ ମହାଭୂତରେ ଗୁଣର ଉତ୍ପତ୍ତି ହୋଇ ସନ୍ତାନ ପ୍ରସବ କାଳ ମଧରେ (ଦଶମାସ) ପ୍ରକୃତିର ଅନ୍ୟତତ୍ତ୍ୱଗୁଡ଼ିକ (ଜ୍ଞାନ କର୍ମ ଆଦିର) ଯଥାକାଳରେ ଉତ୍ପତ୍ତି ଘଟେ । ଏହା ହିଁ ପ୍ରାକୃତିକ କ୍ରିୟା । କେବେହେଲେ ମନୁଷ୍ୟକୃତ ନୁହେଁ । ପରେ ଧାତ୍ରୀ (ଧାଇ) ମାଧ୍ୟମରେ ଜନନ କ୍ରିୟା ସମ୍ପାଦିତ ହୁଏ । ଏହାକୁ ସୃଷ୍ଟି କୁହାଯାଉଅଛି । ପୁରୁଷର ସଂଯୋଗ ବିନା ଅନ୍ୟ କୌଣସି କ୍ରିୟା ପରିଦୃଷ୍ଟ ନୁହେଁ । ପ୍ରକୃତି ଏହି ପିଣ୍ଡର (ମାନବ ଯେପରି ସୃଷ୍ଟିକାରିଣୀ ସେହିପରି ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟିକାରିଣୀ) ଆଦ୍ୟାଶକ୍ତି ଅଟନ୍ତି । ଏହି ବାଦକୁ (ମତ) ପିଣ୍ଡ ବ୍ରହ୍ମାଣ୍ଡ ବାଦ କୁହାଯାଏ । ସୃଷ୍ଟି, ସ୍ଥିତି ଓ ସଂହାର ଘଟେ ।

ଆଦ୍ୟାଶକ୍ତିଙ୍କର ପ୍ରଭାବରୁ ବ୍ରହ୍ମା ସ୍ରଷ୍ଟା, ବିଷ୍ଣୁ ପାଳକ ଓ ଶିବ ସଂହାରକାରୀ ଭାବେ ପରିଚିତ ହୁଅନ୍ତି । କିନ୍ତୁ ଶକ୍ତିର ଅଭାବରେ ଏମାନେ ଅକର୍ମା ଓ ଜଡ଼ ପଦବାଚ୍ୟ ହୋଇଥାଆନ୍ତି । ନିର୍ଜୀବ ଶରୀର ଉଜ୍ଜୀବିତ ଥିବାଯାଏ ପ୍ରାଣର ସଂଚାର ଅନୁଭୂତ ହୁଏ । ଏହି ପ୍ରାଣସଂଚାର ଶକ୍ତିର ଅଭାବରେ ତାହା ପୁଣି ଜଡ଼ ଶରୀରରେ ପରିଣତ ହୁଏ । ଶାକ୍ତତନ୍ତ୍ରରେ ମହାକାଳୀଙ୍କର ରୂପ ବର୍ଣ୍ଣିତ ଅଛି । ଯେଉଁ ରୂପ ବା ପ୍ରତିମାରେ ମହାକାଳ (ଶିବ) । ଭୂତଳଶାୟୀ ଥିବାବେଳେ ମହାକାଳୀ ତାଙ୍କ ଉପରେ ଦଣ୍ଡାୟମାନ ଅଛନ୍ତି । ତେଣୁ 'ଶିବଃ ଶକ୍ତ୍ୟାଯୁକ୍ତଃ' ବର୍ଣ୍ଣନାରେ ଶକ୍ତି ଯୁକ୍ତ ଶିବଙ୍କୁ ମଙ୍ଗଳକାରୀ କୁହାଗଲାବେଳେ ଶକ୍ତି ବିହୀନ ଶିବ ଶବ ରୂପରେ ବର୍ଣ୍ଣିତ ।

ସୃଷ୍ଟିର ବିକାଶରେ ସେହି ଆଦ୍ୟାଶକ୍ତି ବହୁନାମ ଓ ବହୁ ରୂପରେ ଆରାଧିତ ହେବାକୁ ଲାଗିଲେ ଶାକ୍ତ ମତରେ ମହାଶକ୍ତି ମହାବିଦ୍ୟା ରୂପରେ ଅଭିହିତା । ଶକ୍ତି ପୂଜାରେ ଦଶ ମହାବିଦ୍ୟା ଓ ନବଦୁର୍ଗା ପ୍ରଭୃତିଙ୍କର ଆରାଧନା ଦେଖିବାକୁ ମିଳେ ।

ଦଶ ମହାବିଦ୍ୟା - ୧. ମହାକାଳୀ, ୨. ତାରା, ୩. ଷୋଡଶୀ, ୪. ଭୁବନେଶ୍ୱରୀ, ୫. ଛିନ୍ନମସ୍ତା, ୬. ଭୈରବୀ, ୭. ବଗଳାମୁଖୀ, ୮. ମାତଙ୍ଗୀ, ୯. କମଳା, ୧୦. ଧୂମାବତୀ

ନବଦୁର୍ଗା - ୧. ଶୈଳପୁତ୍ରୀ, ୨. ବ୍ରହ୍ମଚାରିଣୀ, ୩. ଚନ୍ଦ୍ରଘଣ୍ଟା, ୪. କୁଷ୍ମାଣ୍ଡା, ୫. ସ୍କନ୍ଦମାତା, ୬. କାତ୍ୟାୟନୀ, ୭. କାଳରାତ୍ରୀ, ୮. ମହାଗୌରୀ, ୯. ସିଦ୍ଧିଦାତ୍ରୀ ।

ତିନି ଗୁଣ ପରି ସୃଷ୍ଟିର କାଳକୁ ଆଦ୍ୟ, ମଧ୍ୟ, ଅନ୍ତ ରୂପରେ ତିନି ଭାଗରେ ବିଭକ୍ତ କରାଯାଇପାରେ । ଜୀବର ଆଦ୍ୟ କାଳର ସୃଷ୍ଟି ସଂକ୍ଷିପ୍ତରେ ବର୍ଣ୍ଣିତ ହୋଇଅଛି । ତାହାର ସୃଷ୍ଟିକାରିଣୀ ଆଦ୍ୟା ପ୍ରକୃତି ମହାଶକ୍ତି ହେଲେ ମଧ ଜନସାଧାରଣ ବ୍ରହ୍ମା ସୃଷ୍ଟି କରିଅଛନ୍ତି ବୋଲି କହିଥାଆନ୍ତି । ସେହିପରି ମଧ୍ୟମ କାଳକୁ ଆରୋହ ଓ ଅବରୋହ ଅବସ୍ଥା ଭେଦରେ ଆମ୍ଭେ ଦୁଇଭାଗରେ ବିଭକ୍ତ କରୁ । ଆରୋହ ଅବସ୍ଥାରେ ଶରୀର, ମନ, ବଳ ଓ ଅଙ୍ଗ ପ୍ରତ୍ୟଙ୍ଗାଦିର ପୁଷ୍ଟି ଏବଂ ଅଭିବୃଦ୍ଧି ଘଟେ । ଏଥିନିମନ୍ତେ ପରିପୋଷକ ଖାଦ୍ୟ, ଫଳ, ମୂଳ, ବିଭିନ୍ନ ଶସ୍ୟ ଓ ଦୁଗ୍ଧାଦି ପାନୀୟର ସୃଷ୍ଟିକାରିଣୀ ଶକ୍ତି ପ୍ରକୃତି ହେଲେ ହେଁ ଲୋକ ସାଧାରଣରେ ବିଷ୍ଣୁ ପାଳକ ରୂପେ ବିବେଚିତ ହୁଅନ୍ତି । ଅବରୋହ ଅବସ୍ଥାରେ ସେହି ଶକ୍ତିର କ୍ରମଶଃ ହାନି ଯୋଗୁଁ ଶରୀର ମନ ଓ ଇନ୍ଦ୍ରିୟାଦିର ଧୀରେ ଧୀରେ ଅବକ୍ଷୟ ଘଟି ଜୀବ ମୃତ୍ୟୁର ସମ୍ମୁଖୀନ ହୁଏ । ମୃତ ଶରୀର ଜଡ଼ର ପ୍ରତୀକ । ସେହି ମୃତ୍ୟୁ ହିଁ ଅନ୍ତିମ କାଳର ସୂଚକ ।

କାଳ ଅନନ୍ତ । ତେଣୁ ଜଗତର ସୃଷ୍ଟି ସ୍ଥିତି ଓ ପ୍ରଳୟ କାଳକୁ ବାଦ ଦେଲେ ଅନ୍ୟ କାଳକୁ ଶୂନ୍ୟ କାଳ କୁହାଯାଏ । ସେହି ଶୂନ୍ୟ କାଳରେ ଜଗତର ବୀଜ ରୂପେ ଆଦ୍ୟା ପ୍ରକୃତି ବା ମହାଶକ୍ତି ନିଜର ଗୁଣତ୍ରୟକୁ ଏକତ୍ର ସନ୍ନିବିଷ୍ଟ କରି ଅବସ୍ଥାନ କରନ୍ତି । ଯାହାକୁ ଶାସ୍ତ୍ର ମହାଲକ୍ଷ୍ମୀ ରୂପେ ଅଭିହିତ କରେ ଅଥବା ଅନନ୍ତ କାଳକୁ ମହାକାଳ ଓ ତନ୍ମଧ୍ୟଗତା ଅନନ୍ତବୀର୍ଯ୍ୟା ମହାଶକ୍ତିଙ୍କୁ ମହାକାଳୀ ରୂପେ ବର୍ଣ୍ଣନା କରିଥାଏ । ଜୀବର ସୃଷ୍ଟି ସ୍ଥିତି ଓ ବିକାଶ, ପ୍ରକୃତିର ଅଂଶଭୁତା ମାତୃରୂପିଣୀ ଶକ୍ତି ଦ୍ୱାରା ସମ୍ପାଦିତା ହେଲାପରି ମହାଶକ୍ତି ବା ଆଦ୍ୟା ପ୍ରକୃତିର ଦ୍ୱାରା ଜଗତର ସୃଷ୍ଟି ସ୍ଥିତି ଓ ସଂହାର ଘଟେ । ଏହି ଆଦିମାତା ସର୍ବଶକ୍ତିମୟୀ ଦେବୀଙ୍କୁ ବିଭିନ୍ନ ଶାସ୍ତ୍ର ଓ ପୁରାଣ ବିଭିନ୍ନ ନାମରେ ନାମିତ କରି ଅଛନ୍ତି ।

ଗୌରୀ କାଳୀ ଉମା ଭଦ୍ରା ଦୁର୍ଗା କାନ୍ତିଃ ସରସ୍ୱତୀ
ମଙ୍ଗଳା ବୈଷ୍ଣବୀ ଲକ୍ଷ୍ମୀଃ ଶିବା ନାରାୟଣୀ କ୍ରମାତ୍
(ଦେବୀ ପୁରାଣ - ୭୯-୧)

କାଳୀ ତାରା ମହାବିଦ୍ୟା ଷୋଡଶୀ ଭୁବନେଶ୍ୱରୀ
ଭୈରବୀ ଛିନ୍ନମସ୍ତା ଚ ବିଦ୍ୟା ଧୂମାବତୀ ତଥା ।
ବଗଳା ସିଦ୍ଧ ବିଦ୍ୟାଚ ମାତଙ୍ଗୀ କମଳାତ୍ମିକା
ଏତାଦଶ ମହାବିଦ୍ୟାଃ ସିଦ୍ଧବିଦ୍ୟା ପ୍ରର୍କୀତିତାଃ ।
(ଚାମୁଣ୍ଡା ତନ୍ତ୍ର)

କେବଳ ଏତିକି କାହିଁକି ଶକ୍ତି ରୂପିଣୀ ବିଭିନ୍ନ ଦେବୀମାନଙ୍କର ସହସ୍ର ସହସ୍ର ନାମ ଓ ରୂପ ଶୁଣିବାକୁ ଓ ଦେଖିବାକୁ ମିଳେ ।

ଆମ୍ଭର ବର୍ଣ୍ଣିତ ଶାକ୍ତ କ୍ଷେତ୍ର ଶ୍ରୀକ୍ଷେତ୍ରସ୍ଥ ଶ୍ରୀମନ୍ଦିରର ରତ୍ନ ସିଂହାସନରେ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କର ମଧ୍ୟଗତା ଦେବୀ ଶ୍ରୀସୁଭଦ୍ରା ଆରାଧିତା ଥିଲାବେଳେ ଶ୍ରୀଭୂଦେବୀ ଓ ଶ୍ରୀଦେବୀ ମଧ୍ୟ ବିରାଜିତା ଅଛନ୍ତି । ନାଟ୍ୟଶାଳା (ନାଟମଣ୍ଡପ)ର ଭିତ୍ତିଗୃହସ୍ଥିତା ଦକ୍ଷିଣାଭିମୁଖୀ କାଳୀକା ସର୍ବଜନ ପୂଜିତା । ଶ୍ରୀମନ୍ଦିରର ଦକ୍ଷିଣ ପାର୍ଶ୍ୱସ୍ଥିତ ମନ୍ଦିରରେ (ଦକ୍ଷିଣଘର) ଶ୍ରୀଦୁର୍ଗାଦେବୀ ପ୍ରଭୃତିଙ୍କ ନିତ୍ୟାରାଧନା ଶୁଣିବାକୁ ମିଳେ । ସର୍ବୋପରି ଶ୍ରୀତାରା ଯନ୍ତ୍ର ଓ କାଳୀକା ଯନ୍ତ୍ର ଉପରେ ଯଥାକ୍ରମେ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ଅବସ୍ଥିତିର କିମ୍ବଦନ୍ତୀ ତଥା-

ଉଗ୍ରତାରା ଶୂଳପାଣିଃ ସୁଭଦ୍ରା ଭୁବନେଶ୍ୱରୀ
ନୀଳାଦ୍ରୌ ତୁ ଜଗନ୍ନାଥଃ ସାକ୍ଷାତ୍ ଦକ୍ଷିଣକାଳୀକା ।

ପ୍ରଭୃତି ତନ୍ତ୍ରୋକ୍ତି ପୀଠକୁ ଶାକ୍ତପୀଠ ରୂପେ ପ୍ରମାଣ କରେ । ତାହାଛଡ଼ା ଶ୍ରୀମନ୍ଦିର ବେଢ଼ା ମଧ୍ୟରେ ଶ୍ରୀମହାଲକ୍ଷ୍ମୀ, ଶ୍ରୀଭୁବନେଶ୍ୱରୀ, ଶ୍ରୀସରସ୍ୱତୀ, ଶ୍ରୀବିମଳା, ଶ୍ରୀମଙ୍ଗଳା, ଶ୍ରୀଉତ୍ତରାୟଣି, ଶ୍ରୀଭଦ୍ରକାଳୀ, ଶ୍ରୀମହାକାଳୀ ଓ ଶ୍ରୀଚାମୁଣ୍ଡା ପ୍ରଭୃତି ଦେବୀ ବିଗ୍ରହମାନ ଶାକ୍ତବାଦର ବହୁଳ ପ୍ରସାରରେ ସହାୟକ ହୋଇଥାଏ ।

ଶ୍ରୀମନ୍ଦିରକୁ ଛାଡ଼ି ବର୍ତ୍ତମାନର ଶ୍ରୀକ୍ଷେତ୍ର ରୂପେ ପରିଚିତ ପୁରୀ ସହରର ବିଭିନ୍ନ ସାହି, ଗଳି ଓ କନ୍ଦିମାନଙ୍କରେ ସର୍ବ ଶ୍ରୀଦୁର୍ଗା, ଦକ୍ଷିଣକାଳୀ, ଉତ୍ତରକାଳୀ, ଗଛକାଳୀ, ଶ୍ୟାମାକାଳୀ, ଶ୍ମଶାନକାଳୀ, ହରଚଣ୍ଡୀ, ରାମଚଣ୍ଡୀ, ଆଲାମଚଣ୍ଡୀ, ଅର୍ଦ୍ଧଶୋଷିଣୀ (ମାଉସୀ ମା'), କନକଦୁର୍ଗା, ଜୟଦୁର୍ଗା, ବନଦୁର୍ଗା, ଐନ୍ଦ୍ରୀ, ବାରାହୀ, ନାରସିଂହୀ, ଷୋଡଶ ପୁତ୍ରୀ (ଷୋଳପୁଅ ମାଆ) ଓ ସପ୍ତମାତୃକାଦି ତାନ୍ତ୍ରିକ ଦେବୀମାନଙ୍କର ଅବସ୍ଥିତି, ପ୍ରାଚୀନ ଗୃହସ୍ଥମାନଙ୍କର ଗୃହମାନଙ୍କରେ ତଥା ଜାଗା, ଆଖେଡ଼ା, ପୁସ୍ତକାଳୟାଦି ସାମୁହିକ ସ୍ଥାନରେ ମଧ୍ୟ ଶକ୍ତିମୟୀ ଦେବୀଙ୍କର ଆରାଧନା ଏହି କ୍ଷେତ୍ରର ଶାକ୍ତ କ୍ଷେତ୍ର ରୂପେ ପରିଚିତିକୁ ସୁଦୃଢ଼ କରୁଅଛି ।

ଶକ୍ତିମୟୀ ଦେବୀଙ୍କର ଆରାଧନା ଶୈଳୀ ପ୍ରାୟତଃ ତନ୍ତ୍ରଶାସ୍ତ୍ରରୁ ମିଳିଥାଏ । ଏହି ଦେବୀମାନଙ୍କର ସାଧକମାନଙ୍କୁ ଶାକ୍ତ ବା ତାନ୍ତ୍ରିକ କୁହାଯାଏ । ତନ୍ତ୍ରଶାସ୍ତ୍ରର ଅନ୍ୟନାମ ଆଗମ ।

**ତନ୍ତ୍ର -** ତନୁ ବିସ୍ତାରେ ଧାତୁରେ ତନ୍ ପ୍ରତ୍ୟୟ କରାଯାଇ ତନ୍ତ୍ର ଶବ୍ଦ ନିଷ୍ପନ୍ନ ହୋଇଅଛି । ତନ୍ ପ୍ରତ୍ୟୟ କର୍ତ୍ତା । କର୍ମ, କରଣ ବାଚ୍ୟରେ ହୋଇପାରେ । ଯେ ସର୍ବମଙ୍ଗଳକାରୀ ସେ ତନ୍ତ୍ର । ଯାହାକୁ ଅନୁଶୀଳନ କଲେ ନିଜର ତଥା ସର୍ବସାଧାରଣଙ୍କର ଉପକାର ହୋଇଥାଏ । ସେ ମଧ୍ୟ ତନ୍ତ୍ର । ସେହିପରି ଯାହାଦ୍ୱାରା ନିଜର ତଥା ଜନସମାଜର ଉପକାର ସାଧିତ ହୁଏ, ତାହା ମଧ୍ୟ ତନ୍ତ୍ର ।

ଆଗମ - ଯାହାର ଅଧ୍ୟୟନରେ ଓ ଆଚରଣରେ ଅଭ୍ୟୁଦୟାଦି ଉପାୟମାନ ବୁଦ୍ଧିରେ ପ୍ରବେଶ କରେ । ତାହାକୁ ଆଗମ କହନ୍ତି । ନିଗମ (ବେଦ) ପରି ଆଗମ (ତନ୍ତ୍ର)କୁ ମଧ୍ୟ ଅପୌରୁଷେୟ କୁହାଯାଏ । ବେଦ ଯେପରି ଅପୌରୁଷେୟ ବାଣୀ ସେହିପରି -

ଆଗତଂ ଶିବବକ୍ତ୍ରାତ୍ତ୍ୱାତ୍ ଗତଂ ତୁ ଗିରିଜାମୁଖେ
ମତଂ ଚ ବାସୁଦେବସ୍ୟ ତସ୍ମାଦାଗମ ଉଚ୍ୟତେ ।

ଆଦିନାଥ ଶଙ୍କରଙ୍କର ମୁଖପଦ୍ମରୁ ବାହାରି ଦେବୀ ଗିରିଜାଙ୍କ ମୁଖସ୍ଥିତ କର୍ଣ୍ଣ କୁହରରେ ପ୍ରବେଶ କରୁଥିବାରୁ ଓ ଏହି ମତ ଭଗବାନ ନାରାୟଣଙ୍କର ଅଭିମତ ଯୋଗୁଁ ଏହାକୁ ଆଗମ କୁହାଯାଏ । ତାହା ହିଁ ତନ୍ତ୍ର ଶାସ୍ତ୍ର ରୂପେ ଅଭିହିତ । ଶ୍ରୀ ସଦାଶିବଙ୍କ ଦ୍ୱାରା କଥିତ ତନ୍ତ୍ରର ଯାମଳ, କୁଳାର୍ଣ୍ଣବ, ଜ୍ଞାନାର୍ଣ୍ଣବ, ନୀଳତନ୍ତ୍ର ଓ କାଳୀତନ୍ତ୍ରାଦି ପ୍ରସିଦ୍ଧ ୬୪ ପ୍ରକାର ଭେଦ ଅଛି ।

ସିଦ୍ଧିଶ୍ୱରଂ ମହାତନ୍ତ୍ରଂ କାଳୀତନ୍ତ୍ରଂ କୁଳାର୍ଣ୍ଣବଂ
ଜ୍ଞାନାର୍ଣ୍ଣବଂ ନୀଳତନ୍ତ୍ରଂ ଫେତ୍କାରୀ ତନ୍ତ୍ରମୁତ୍ତମମ୍ ।
(ମହାସିଦ୍ଧି ସାରସ୍ୱତ)

ସେହି ତନ୍ତ୍ରମାନଙ୍କରେ ଲକ୍ଷାଧିକ ଶ୍ଳୋକ ଦେଖିବାକୁ ମିଳେ । ଏହାଛଡ଼ା କପିଳ, ବୁଦ୍ଧ, ଜୈମିନି, ବଶିଷ୍ଠ, ନାରଦ, ଗର୍ଗ, ପୁଲସ୍ତ୍ୟ,

ଭୃଗୁ, ଭାର୍ଗବ, ଯାଜ୍ଞବଲ୍କ୍ୟ, ଶୁକ୍ର, ବୃହସ୍ପତି, ପ୍ରଭୃତି ମୁନିଋଷିମାନଙ୍କ ଦ୍ୱାରା ବର୍ଣ୍ଣିତ ଉପତନ୍ତ୍ରମାନ ଅଛି । ଏଥିରୁ ତାନ୍ତ୍ରିକ ଗ୍ରନ୍ଥମାନଙ୍କର ବିପୁଳତା ଅନୁମାନ କରାଯାଇପାରେ ।

ଏଥିରେ ସୃଷ୍ଟି, ପ୍ରଳୟ, ଦେବପୂଜା, ସମସ୍ତ ପ୍ରକାର ସାଧନ, ପୁରଶ୍ଚରଣ, ଷଟ୍‌କର୍ମ ସାଧନ ଓ ଚତୁର୍ବିଧ ଧ୍ୟାନ ଯୋଗ ଏହି ସାତପ୍ରକାର ଲକ୍ଷଣର ବର୍ଣ୍ଣନା ଦେଖିବାକୁ ମିଳେ ।

ସୃଷ୍ଟିଶ୍ଚ ପ୍ରଳୟଶ୍ଚୈବ ଦେବତାନାଂ ଯଥାର୍ଚ୍ଚନମ୍ ।
ସାଧନଞ୍ଚୈବ ସର୍ବେଷାଂ ପୁରଶ୍ଚରଣ ମେବ ଚ ॥
ଷଟ୍‌କର୍ମ ସାଧନଞ୍ଚୈବ ଧ୍ୟାନ ଯୋଗଶ୍ଚତୁର୍ବିଧଃ ।
ସପ୍ତଭିର୍ଲକ୍ଷଣୈର୍ଯୁକ୍ତ ମାଗମଂତଦ୍‌ବିଦୁର୍ବୁଧାଃ ॥
(ମହାବିଶ୍ୱସାର ତନ୍ତ୍ର ଶବ୍ଦ କଳ୍ପଦ୍ରୁମରେ ଉଦ୍ଧୃତ)

ସେହିପରି ଯାମଳତନ୍ତ୍ର ମଧ୍ୟ ଆଗମ ଶାସ୍ତ୍ରକୁ ଅଷ୍ଟ ଲକ୍ଷଣଯୁକ୍ତ କହି ତହିଁରେ ପୁରାଣମାନଙ୍କ ବିଷୟ ବର୍ଣ୍ଣନା (ଆଚାର ବିଚାରାଦି ଧାର୍ମିକ) ପରି ଧାର୍ମିକ ବିବିଧ ବିଷୟର ଅବତାରଣା କରିଅଛି । (ଶବ୍ଦ କଳ୍ପଦ୍ରୁମ)

ଆଚାର ବିଚାର ଦୃଷ୍ଟିରୁ ତନ୍ତ୍ର ଦୁଇ ପ୍ରକାର - ୧. ବେଦାନୁକୂଳ, ୨. ବେଦ ପ୍ରତିକୂଳ । ସେଥିମଧ୍ୟରୁ ବେଦାନୁକୂଳ ତନ୍ତ୍ର ତିନି ପ୍ରକାର ଯଥାକ୍ରମେ - ୧. ବୈଷ୍ଣବାଗମ, ୨. ଶୈବାଗମ, ୩. ଶାକ୍ତାଗମ ରୂପେ ଅଭିହିତ ହୁଅନ୍ତି ।

ତନ୍ମଧ୍ୟରୁ ଶାକ୍ତାଗମ, ଦକ୍ଷିଣାଚାର ଓ ବାମାଚାର ଭେଦରେ ଦୁଇ ପ୍ରକାର ପ୍ରଚଳିତ ଥିଲେ ମଧ୍ୟ ବାମାଚାର ବିଧି ବେଦ ପ୍ରତିକୂଳ ହେତୁ ଏବଂ ସେଥିରେ ମାରଣ, ମୋହନ, ବଶୀକରଣ ଓ ଉଚ୍ଚାଟନାଦିର ବ୍ୟବହାର ଥିବାରୁ ଶ୍ରୀକ୍ଷେତ୍ରରେ ତାହା ପ୍ରଚଳିତ ନୁହେଁ ।

ତନ୍ତ୍ରଶାସ୍ତ୍ରର ଆଚାର ବିଧିରେ (ଶାକ୍ତ) ତାନ୍ତ୍ରିକର ଦୈନନ୍ଦିନ ଆଚରଣ ବିଧି, ଧ୍ୟାନ ବିଧି ଓ କର୍ମ ବିଧିମାନ ବର୍ଣ୍ଣିତ ହେବା ସହିତ ଶକ୍ତିମୟୀ ଦେବୀ ପୂଜନର ବିଧିଗୁଡ଼ିକ ଯଥାଯଥ ଭାବେ ବର୍ଣ୍ଣିତ ହୋଇଅଛି । ଯଥା- ସଂକଳ୍ପ, ଦେବୀ ଗାୟତ୍ରୀ, ସାମାନ୍ୟାର୍ଘ ସଂସ୍କାର, ଆସନଶୁଦ୍ଧି, ପ୍ରଣବନ୍ୟାସ, ଭୂତଶୁଦ୍ଧି, ପ୍ରାଣ ପ୍ରତିଷ୍ଠା, ମାତୃକାନ୍ୟାସ, ବହିର୍ମାତୃକାନ୍ୟାସ, ଶ୍ରୀକଣ୍ଠାଦିନ୍ୟାସ, କଳାନ୍ୟାସ, ଷୋଢ଼ାନ୍ୟାସ, ସପ୍ତପଦନ୍ୟାସ, ଅକ୍ଷରନ୍ୟାସ, ବର୍ଣ୍ଣନ୍ୟାସ, ତତ୍ତ୍ୱନ୍ୟାସ, ବୀଜନ୍ୟାସ, ବ୍ୟାପକନ୍ୟାସ, ପୀଠନ୍ୟାସ, ଘଟସ୍ଥାପନ ବିଧି, ମହାକାଳୀ ପୂଜାରେ - କୃଷ୍ଣଶାପବିମୋଚନ ବିଧି, ପଞ୍ଚରତ୍ନ ପୂଜା, ଆନନ୍ଦ ଭୈରବ ପୂଜା, ଅକଥାଦିନ୍ୟାସ, ସ୍ୱପ୍ନାବତୀ ପୂଜା, ଗାୟତ୍ରୀ ପୂଜା, ପାତ୍ର ସ୍ଥାପନ ବିଧି, ଷୋଡଶକଳା ପୂଜା, ବ୍ରହ୍ମା ପୂଜା, ବିଷ୍ଣୁ ପୂଜା, ଲକ୍ଷ୍ମୀ ପୂଜା, ତ୍ର୍ୟମ୍ବକ ପୂଜା, ଅମ୍ବିକା ପୂଜା, ଶକ୍ତି ସଂସ୍କାର, ନ୍ୟାସ ଜାଲ, ବଟୁକ ସଂସ୍କାର, ପୂର୍ଣ୍ଣାସଂସ୍କାର, ତର୍ପଣ, ବିନ୍ଦୁ ସ୍ୱୀକାର । ବଳି ବିଧାନ, ଉପଚାର ପ୍ରଦାନ, ଆବରଣ ପୂଜା, ମହାକାଳୀଙ୍କୁ ବଳିଦାନ ଓ ଶକ୍ତି ପୂଜାଦିର ସମସ୍ତ ବିଧିବିଧାନଗୁଡ଼ିକ ପ୍ରାଞ୍ଜଳ ଭାବେ ବର୍ଣ୍ଣନା କରାଯାଇଅଛି ।

ଧର୍ମ, ଅର୍ଥ, କାମ ଓ ମୋକ୍ଷକୁ ଚତୁର୍ବର୍ଗ କୁହାଯାଏ । ଏହି ଚତୁର୍ବର୍ଗର ଫଳପ୍ରାପ୍ତି ନିମନ୍ତେ ତନ୍ତ୍ରଶାସ୍ତ୍ର ମୁଖ୍ୟ ସହାୟକ ଅଟେ । ଧର୍ମ ହିଁ ମୁକ୍ତିର ପ୍ରଥମ ଆଧାର । ଆଚାର, ବିଚାର, ସଭ୍ୟତା ଓ ସଂସ୍କୃତିକୁ ଆମ୍ଭେମାନେ ସାଧାରଣତଃ ଧର୍ମ ବୋଲି ବିଚାର କରୁ । 'ଆଚାର ପ୍ରଭବୋ ଧର୍ମଃ' ବୋଲି ଶାସ୍ତ୍ର କହେ - ସତ୍ୟ, ଦୟା, କ୍ଷମା, ତିତିକ୍ଷା, ଆସ୍ତିକ୍ୟାଦିକୁ ଧର୍ମର ସ୍ୱରୂପ ବୋଲି କହନ୍ତି । ଶାକ୍ତତନ୍ତ୍ରରେ ଏହିଗୁଡ଼ିକ ହିଁ ଅନ୍ତର୍ନିହିତ ଅଟେ । ଲୋକ ସଦାଚାରୀ ହେଉ, ସତ୍ୟ କହୁ, ପରର ଉପକାରରେ ମନପ୍ରାଣ ଦେଉ, ମନରେ ସର୍ବଦା ଆସ୍ତିକ୍ୟ ଭାବର ଉଦ୍ରେକ ହେଉ, ସର୍ବଦା ଗ୍ରହିତା ନହୋଇ ତ୍ୟାଗରେ ଆଶା ପୋଷଣ କରୁ ଓ ଭଗବତୀଙ୍କଠାରେ ଶ୍ରଦ୍ଧା ଓ ଭକ୍ତି ରହୁ । ଏପରି ଆଚାର ଓ ବିଚାରଶୀଳ ବ୍ୟକ୍ତିର କେବେହେଲେ କୌଣସି ଅଭାବ ରହେ ନାହିଁ । ତାହାର ସତ୍‌କର୍ମ ସାଧନର ଇଚ୍ଛା ଅନାୟାସରେ ପୂରଣ ହୁଏ ଓ ଶେଷରେ ଦେବୀ ଚରଣାବିନ୍ଦରେ ମନପ୍ରାଣ ଢାଳି ପୁନର୍ଜନ୍ମରୁ ମୁକ୍ତି ପାଇଥାଏ ।

ଏହାକୁ ଶ୍ରୀକ୍ଷେତ୍ରର ଶାକ୍ତ ଓ ତାନ୍ତ୍ରିକ ଧର୍ମଧାରା ବିଚାର କରାଯିବା ଉଚିତ୍ ।

ଶ୍ରୀମନ୍ଦିର ପୁରୋହିତ
ପ୍ରତିହାରୀ ଲେନ୍, ମାର୍କଣ୍ଡେଶ୍ୱର ସାହି, ପୁରୀ



# ଶକ୍ତି ଉପାସନା ଓ ନୀଳାଚଳ କ୍ଷେତ୍ର, ପୁରୀ

ଜଗବନ୍ଧୁ ପାଢ଼ୀ

**ପୁ**ଣ୍ୟଭୂମି ଭାରତବର୍ଷରେ ଶକ୍ତି ଉପାସନା ବହୁ ପ୍ରାଚୀନ, ଏପରିକି ବୈଦିକ ଯୁଗ ସମୟର । ଋଗ୍‌ବେଦର ବାକ୍‌ସୂକ୍ତ ଏହାର ପ୍ରମାଣ (୧) । ଏହି ସୂକ୍ତରେ ଅମ୍ଭୃଶ ଋଷିଙ୍କ କନ୍ୟା ବାକ୍ ଯେଉଁ ଆତ୍ମସ୍ତୁତି କରିଛନ୍ତି, ତହିଁରେ ସେ ପ୍ରକାଶ କରିଛନ୍ତି ଯେ, ସେ ବସୁମାନଙ୍କ ସହିତ, ରୁଦ୍ରମାନଙ୍କ ସହିତ, ଆଦିତ୍ୟମାନଙ୍କ ସହିତ, ବିଶ୍ୱେ ଦେବୀମାନଙ୍କ ସହିତ ବିଚରଣ କରୁଛନ୍ତି । ଏହି ଚାରିପ୍ରକାର ଦେବତା ଗଣଦେବତା ରୂପରେ ବେଦରେ ପ୍ରସିଦ୍ଧ । ତାହା ସହିତ ବାକ୍‌ଦେବୀ ମିତ୍ରାବରୁଣ, ଇନ୍ଦ୍ରାଗ୍ନି, ଦୁଇ ଅଶ୍ୱିଦେବଙ୍କ ସହିତ ମଧ୍ୟ ବିଚରଣ କରୁଥିବାର ସେ ସ୍ଥଳରେ ପ୍ରକାଶ କରିଛନ୍ତି । ଏଠାରେ ସ୍ମରଣ ରଖିବାକୁ ହେବ ଯେ ବେଦରେ ଯେଉଁ ତ୍ରିଲୋକଗାମିନୀ ବାକ୍‌ଦେବୀଙ୍କର ବର୍ଣ୍ଣନା ଅଛି, ଏହି ବାକ୍ ତାଙ୍କଠାରୁ ପୃଥକ୍ । ଏ ହେଉଛନ୍ତି ମହାଶକ୍ତି । ଶକ୍ତିମାନ ପୁରୁଷଙ୍କଠାରେ ଏ ଅଭିନ୍ନ ରୂପରେ ରହିଥାନ୍ତି । ସେଇଥିପାଇଁ ଉପଲକ୍ଷଣ ରୂପରେ ସେ ବିଭିନ୍ନ ବିଶିଷ୍ଟ ଦେବତାଙ୍କ ସହିତ ବିଚରଣ କରୁଥିବାର ବେଦରେ ବର୍ଣ୍ଣନା କରାଯାଇଛି । ଋଗ୍ ବେଦର ଏହି ବାକ୍‌ସୂକ୍ତରେ ପ୍ରଥମ ମନ୍ତ୍ରଟି ଏହିପରି -



ଅହଂ ରୁଦ୍ରେଭିର୍ବସୁଭିଶ୍ଚରାମ୍ୟହମାଦିତ୍ୟୈରୁତ ବିଶ୍ୱଦେବୈଃ ।
ଅହଂ ମିତ୍ରା ବରୁଣୋଭା ବିଭର୍ମ୍ୟହମିନ୍ଦ୍ରାଗ୍ନୀ ଅହମଶ୍ୱିନୋଭା ॥

ଏହି ସୂକ୍ତରେ ଥିବା ଆଠଟି ମନ୍ତ୍ରରେ ଏହି ମହାଶକ୍ତିଙ୍କର ଆହୁରି ଅନେକ ମହିମା ଓ ଗୁଣର ବର୍ଣ୍ଣନା ଅଛି । ଡଃ ଜିତେନ୍ଦ୍ରନାଥ ବନ୍ଦୋପାଧ୍ୟାୟ ସଂପୂର୍ଣ୍ଣ ସୂକ୍ତଟିକୁ ଉଦ୍ଧାର କରି ତାହାର ବଙ୍ଗାନୁବାଦ ଦେଇ ସ୍ୱୀକାର କରିଛନ୍ତି ଯେ, ଏହି ଆଠମନ୍ତ୍ରଯୁକ୍ତ ସୂକ୍ତଟିରେ ବିଶ୍ୱ ନିୟନ୍ତ୍ରିକା ଶକ୍ତିଙ୍କର ଯେଉଁ ପ୍ରକୃତ ରୂପ ବର୍ଣ୍ଣିତ ହୋଇଅଛି, ଏତେ ଅଳ୍ପ ପରିସରରେ ଏହା ଅପେକ୍ଷା ଉନ୍ନତତର ଉପାୟରେ ଏହାର ବର୍ଣ୍ଣନା ଦିଆଯାଇ ପାରେ ନାହିଁ ।(୨)

ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଏହି ଶକ୍ତିଙ୍କର ମହିମା ଉପଲବ୍ଧି କରି ସ୍ୱକୃତ ସୌନ୍ଦର୍ଯ୍ୟ ଲହରୀର ଆରମ୍ଭରୁ ଉଲ୍ଲେଖ କରିଛନ୍ତି -

ଶିବଃ ଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁଂ ।
ନ ଚେଦେବଂ ଦେବୋ ନ ଖଳୁ କୁଶଳଃ ସ୍ପନ୍ଦିତୁମପି ।
ଅତସ୍ତ୍ୱାମାରାଧ୍ୟାଂ ହରିହର ବିରଞ୍ଚ୍ୟାଦିଭିରପି ।
ପ୍ରଣୋତୁଂ ସ୍ତୋତୁଂ ବା କଥମକୃତପୁଣ୍ୟଃ ପ୍ରଭବତି ॥ (୩)

ଏଥିରେ ଶ୍ରୀ ଶଙ୍କରାଚାର୍ଯ୍ୟ ସ୍ପଷ୍ଟ ରୂପରେ କହିଛନ୍ତି ଯେ ଏହି ଶକ୍ତି ବିଷ୍ଣୁ, ଶିବ ଓ ବ୍ରହ୍ମା ପ୍ରଭୃତି ସମସ୍ତ ଦେବତାଙ୍କର ଆରାଧ୍ୟ । ଶକ୍ତି ବ୍ୟତୀତ ଶିବ (ଶକ୍ତିମାନ ପୁରୁଷ) ତିଳେମାତ୍ର ସ୍ପନ୍ଦନ କରିପାରିବେ ନାହିଁ । କିନ୍ତୁ ସେ ଶକ୍ତି ଯୁକ୍ତ ହେଲେ ହିଁ ନିଜର ପ୍ରଭାବ ପ୍ରଦର୍ଶନ କରିପାରନ୍ତି । ସେହି କାରଣରୁ ଗୋଟିଏ ଆଖ୍ୟାନ ଛଳରେ କଥିତ ହୁଏ ଯେ ଶଙ୍କରାଚାର୍ଯ୍ୟ ସ୍ୱୟଂ ଶକ୍ତି ଉପାସନା ପ୍ରତି ବିମୁଖ ହୋଇ ସର୍ବଶକ୍ତିମାନ ବ୍ରହ୍ମଙ୍କର ଅଦ୍ୱୈତତ୍ତ୍ୱ ଉପରେ ସଂପୂର୍ଣ୍ଣ ଆସ୍ଥାବାନ ହେବାରେ ଏକଦା ଶକ୍ତିହୀନ ହୋଇ ଗଙ୍ଗାତଟରେ ପଡ଼ି ରହିଥିଲେ । ସ୍ୱୟଂ ମହାଶକ୍ତି ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ତାଙ୍କୁ ଶକ୍ତି ଉପାସନା କରିବା ନିମନ୍ତେ ଉପଦେଶ ଦେଇଥିଲେ ।

ବେଦର ବ୍ରାହ୍ମଣ ଭାଗରେ ମହାଶକ୍ତି ସ୍ୱରୂପିଣୀ ଦୁର୍ଗାଙ୍କ ବର୍ଣ୍ଣନା ପ୍ରାପ୍ତ ହୁଏ । ତହିଁରେ ଉଲ୍ଲେଖ ଅଛି - ତାମଗ୍ନିବର୍ଣ୍ଣାଂ ତପସା ଜ୍ୱଳନ୍ତାଂ ବୈରୋଚନୀଂ କର୍ମଫଳଷ୍ଟେ ଦୁଷ୍ଟାମ୍ । ଦୁର୍ଗାଂ ଦେବୀଂ ଶରଣମହଂ ପ୍ରପଦ୍ୟେ ସୁରେସି ତରସେ ନମଃ ।(୪) ତାହା ବ୍ୟତୀତ ଏହି ଗ୍ରନ୍ଥରେ ଦୁର୍ଗା ଗାୟତ୍ରୀର ଅବତାରଣା ହୋଇଅଛି, ଯଥା- କାତ୍ୟାୟନାୟ ବିଦ୍ମହେ । କନ୍ୟାକୁମାରୀ ଧୀମହି । ତନ୍ନୋ ଦୁର୍ଗିଃ ପ୍ରଚୋଦୟାତ୍ ।(୫) ତୈତ୍ତିରୀୟ ଆରଣ୍ୟକରୁ ଉଦ୍ଧୃତ ପ୍ରଥମ ବାକ୍ୟରେ ତାଙ୍କୁ ତପସ୍ୟା

ଦ୍ୱାରା ଜ୍ୱଳମାନା ଅଗ୍ନିବର୍ଣ୍ଣା କୁହାଯିବାର ତାତ୍ପର୍ଯ୍ୟ ପରବର୍ତ୍ତୀ ପୌରାଣିକ ସାହିତ୍ୟମାନଙ୍କରେ ଉପଲବ୍ଧ ହୁଏ । ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ 'ଦୁର୍ଗାସପ୍ତଶତୀ'ରେ ଦୁର୍ଗାଙ୍କର ଉତ୍ପତ୍ତି ବିଷୟରେ କଥିତ ହୋଇଛି ଯେ ମହିଷାସୁରର ଅତ୍ୟାଚାରରେ ପୀଡ଼ିତ ଓ ଜର୍ଜରିତ ଦେବତାମାନେ ପିତାମହ ବ୍ରହ୍ମାଙ୍କ ନେତୃତ୍ୱରେ ଭଗବାନ ବିଷ୍ଣୁ ଓ ଶିବ ଏକତ୍ର ଅବସ୍ଥାନ କରୁଥିବା ସ୍ଥାନକୁ ଗମନ କରି ସେ ଦୁହିଁଙ୍କୁ ସେହି ଅସୁରର ଯାବତୀୟ ଦୁଷ୍କର୍ମ ବର୍ଣ୍ଣନା କରିବା ବେଳେ ଉଭୟ ଦେବତା କୋପ କଲେ । ପରେ ପରେ ବ୍ରହ୍ମା ଓ ଅନ୍ୟ ଦେବତାମାନେ ମଧ କୋପ କଲେ । ସେହି କୋପଜନିତ ତେଜଃପୁଞ୍ଜକ୍ରମେ ଏକ ମହାନ୍ ଅଗ୍ନିପଣ୍ଡ ରୂପ ଧାରଣ କରି କ୍ରମଶଃ ବୃଦ୍ଧି ପ୍ରାପ୍ତ ହେଲା ଓ ସମଗ୍ର ଗଗନ ମଣ୍ଡଳରେ ପରିବ୍ୟାପ୍ତ ହେଲା । କ୍ରମେ ତାହା ଏକ ନାରୀରୂପ ଧାରଣ କଲା, ଯଥା-

ଅତୁଳଂ ତତ୍ର ତତ୍ତେଜଃ ସର୍ବଦେବଶରୀରଜମ୍ ।
ଏକସ୍ଥଂ ତଦଭୂୟାରୀ ବ୍ୟାପ୍ତ ଲୋକତ୍ରୟଂତ୍ୱିଷା । (୬)

ବାମନ ପୁରାଣରେ କଥିତ ହୋଇଛି ଯେ ଏହି ତେଜକୁ କାତ୍ୟାୟନ ନାମକ ଋଷି ପ୍ରତିପାଳନ କରିଥିଲେ । ଦୁର୍ଗାଙ୍କର ସମସ୍ତ ଦେବତାଙ୍କ ତେଜରୁ ଉତ୍ପତ୍ତି ଲାଭ କରିବାର କଥା ତହିଁରେ ବର୍ଣ୍ଣନା କରାଯିବାବେଳେ ଏହିପରି କୁହାଯାଇଛି, ଯଥା-

ତଚ୍ଚୈକତାଂ ପର୍ବତକୂଟ ସନ୍ନିଭଂ ଜଗାମ ତେଜଃ ପ୍ରକରାଶ୍ରମେ ମୁନେ
କାତ୍ୟାୟନସ୍ୟାପ୍ରତିମସ୍ୟ ତବେ ମହର୍ଷିଣା ତେଜ ଉପାକୃତଂ ଚ ।
ତେଜର୍ଷିସୃଷ୍ଟେନ ଚ ତେଜସା ବୃତଂ ଜ୍ୱଳତ୍ ପ୍ରକାଶାର୍କସହସ୍ରତୁଲ୍ୟମ୍ ।
ତସ୍ମାଜ୍ ଜାତା ତରଳାୟତାଳୀ କାତ୍ୟାୟନୀ ଯୋଗ ବିଶୁଦ୍ଧଦେହା ।(୭)

ତେଣୁ ସମସ୍ତ ଦେବତାଙ୍କ ତେଜରୁ ଜାତ ଅଯୋନିସମ୍ଭୂତା ମହାଶକ୍ତି ଦୁର୍ଗାଙ୍କର ମୌଳିକ ନାମ ଥିଲା କାତ୍ୟାୟନୀ ଓ ସେ ସେହି ନାମରେ ହିଁ ଜଗତରେ ପ୍ରସିଦ୍ଧି ଲାଭ କରିଥିଲେ ।

ତଥର୍ଷି ତେଜୋଭମମ୍ଭୁଭମଂ ମହନାମ୍ନା ପୃଥିବ୍ୟାମଭବତ୍ ପ୍ରସିଦ୍ଧମ୍ ।
କାତ୍ୟାୟନୀତ୍ୟେବ ତଦା ବଭୌସା ନାମ୍ନାଚ ତେନୈବ ଜଗତ୍ ପ୍ରସିଦ୍ଧା ।(୮)

ଦୁର୍ଗା ସପ୍ତମଶତୀ (ଚଣ୍ଡୀ)ରେ ଦେବତାମାନେ ଏହି ମହାଶକ୍ତିଙ୍କୁ ପ୍ରାର୍ଥନା ଓ ସ୍ତୁତି କରିବା ବେଳେ କହିଛନ୍ତି -

ଏତେଭ ବଦନଂ ସୌମ୍ୟଂ ଲୋଚନତ୍ରୟଭୂଷିତମ୍ ।
ପାତୁ ନଃ ସର୍ବଭୀତିଭ୍ୟଃ କାତ୍ୟାୟନି ନମୋସ୍ତୁତେ ।(୯)

ଏହି ଅବସ୍ଥାରେ କାତ୍ୟାୟନୀ ହେଉଛନ୍ତି ସୌମ୍ୟରୂପା ଓ ସକଳ ଭୟନାଶିନୀ । ବାମନ ପୁରାଣରେ ବର୍ଣ୍ଣନା ଅନୁସାରେ ଯେତେବେଳେ ବିଭିନ୍ନ ଦେବତାଙ୍କଠାରୁ ଦେବୀଙ୍କର ବିଭିନ୍ନ ଅଙ୍ଗର ଉତ୍ପତ୍ତି ହେଲା, ଦେବୀ ପୂର୍ଣ୍ଣାବୟବା ନାରୀ ରୂପରେ ପ୍ରକଟିତା ହେଲେ ଓ ଅସ୍ତ୍ରଶସ୍ତ୍ର ଆଦି ଧାରଣ କରି ନଥିଲେ, ସେହି ସମୟରୁ ଦେବୀଙ୍କର କାତ୍ୟାୟନୀ ରୂପ ପ୍ରକଟିତ ହୋଇଥିଲା । ସେ ବିଭିନ୍ନ ଆୟୁଧ ଓ ଅଳଙ୍କାର ଧାରଣ କରି ବିନ୍ଧ୍ୟ ପୃଷ୍ଠକୁ ଯାଇ ଦେବତାମାନଙ୍କ ଦ୍ୱାରା ସ୍ତୁତି କରାଯାଉଥିବା ବେଳେ ମଧ ତାଙ୍କୁ କାତ୍ୟାୟନୀ ବୋଲି ହିଁ ପୁରାଣରେ ସୂଚିତ କରାଯାଇଛି ।(୧୦) ଏହି କାତ୍ୟାୟନୀ ହିଁ ମହିଷାସୁରକୁ ବଧ କରିଥିବାର ତହିଁରେ ଉଲ୍ଲେଖ ଅଛି ।

କାଳିକା ପୁରାଣରେ ଭାରତରେ ଚାରି ଦିଗରେ ଥିବା ଚାରି ମୁଖ୍ୟ ଶକ୍ତିପୀଠ ମଧ୍ୟରୁ ଉଡ୍ରଦେଶ ଅନ୍ୟତମ ଓ ଏଠାରେ କାତ୍ୟାୟନୀଙ୍କର ହିଁ ପୂଜା କରାଯାଏ ବୋଲି ସ୍ପଷ୍ଟ ଉଲ୍ଲେଖ ରହିଛି । ଯଥା-

ଓଡ୍ରପୀଠଂ ପଶ୍ଚିମେ ତୁ ତଥୈବୋଡ୍ରେଶ୍ୱରୀ ଶିବାମ୍
କାତ୍ୟାୟନୀଂ ଜଗନ୍ନାଥମୋଡ୍ରେଶଂ ଚ ପ୍ରପୂଜୟେତ୍ ।(୧୧)

ମହାଶକ୍ତିଙ୍କର ମୂଳପୀଠର ପଶ୍ଚିମ ଦିଗରେ ରହିଛି ଓଡ୍ରପୀଠ ଓ ଏଠାରେ ଯେଉଁ ଓଡ୍ରେଶ୍ୱରୀ ଶିବା ଅଛନ୍ତି, ତାଙ୍କର ନାମ କାତ୍ୟାୟନୀ । ଏହିପୀଠର ଅଧୀଶ୍ୱର ହେଉଛନ୍ତି ଜଗନ୍ନାଥ । ଏହା ହିଁ ଉପଯୁକ୍ତ ପୁରାଣ କାବ୍ୟର ସରଳ ଓ ସମ୍ମତ ଅର୍ଥ । ନୀଳାଚଳ କ୍ଷେତ୍ରର ମହାପ୍ରଭୁ ଜଗନ୍ନାଥ ଯେ ପ୍ରାଚୀନ କାଳରୁ ପୁରୁଷୋତ୍ତମ ନାମରେ ଜଗନ୍ନାଥ ସ୍ୱରୂପରେ ବିରାଜମାନ ଏହା ଇତିହାସରୁ ପ୍ରମାଣିତ । ହୁଏ ତ ପରବର୍ତ୍ତୀ କାଳରେ ପୁରୁଷୋତ୍ତମ ଦେବତାଙ୍କର ନାମ ପ୍ରଶାସନିକ ପତ୍ରାବଳିରେ ଜଗନ୍ନାଥ ହୋଇଥିଲା, କିନ୍ତୁ ମୌଳିକ ଭାବରେ ପୁରୁଷୋତ୍ତମ ଏହି କ୍ଷେତ୍ରର ଅଧିଷ୍ଠାତା ଦେବ ରୂପରେ ପ୍ରତିଷ୍ଠିତ ହେବା ସମୟରୁ ହିଁ ଜଗନ୍ନାଥ ରୂପରେ ପରିଚିତ ଥିଲେ । ସେ ଜଗତର ନାଥ ହେବା କାରଣରୁ ଜଗନ୍ନାଥ ଓ ଓଡ୍ରଦେଶର ପରମାରାଧ୍ୟ ହେବାରୁ ଓଡ୍ରେଶ ବୋଲି ପରିଚିତ ଥିଲେ । ଏହି କ୍ଷେତ୍ରର ପାଳୟିତ୍ରୀ ଦେବୀ ଓଡ୍ରେଶ୍ୱରୀ କାତ୍ୟାୟନୀ ହିଁ ଥିଲେ । କାଳିକା ପୁରାଣରେ ଏହାକୁ ପ୍ରଥମ ପୀଠ ବୋଲି କୁହାଯାଇଛି -

ଓଡ୍ରାଖ୍ୟଂ ପ୍ରଥମଂ ପୀଠଂ ଦ୍ୱିତୀୟଂ ଜାଳଶୈଳକମ୍ ।
ତୃତୀୟଂ ପୂର୍ଣ୍ଣପୀଠନ୍ତୁ କାମରୂପଂ ଚତୁର୍ଥକମ୍ ।(୧୨)

ଏହି ଓଡ୍ରେଶ୍ୱରୀ କାତ୍ୟାୟନୀଙ୍କର ଓଡ୍ର ଦେଶରେ ଉପାସନାର ଇତିହାସକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ଏହି ଦେବୀ ଓଡ଼ିଶାରେ ଭୌମଙ୍କର ରାଜାରାଣୀମାନଙ୍କ ରାଜତ୍ୱ ସମୟରେ ନିଶ୍ଚୟ ବିରାଜମାନ ଥିଲେ । ଭୌମରାଣୀ ତ୍ରିଭୁବନ ମହାଦେବୀଙ୍କୁ କାତ୍ୟାୟନୀଙ୍କ ସହିତ ତୁଳନା କରାଯାଇ ଗୋଟିଏ ତାମ୍ରଶାସନରେ ଉଲ୍ଲେଖ କରାଯାଇଛି - କାତ୍ୟାୟନୀଙ୍କ ସିଂହାସନମାରୂଢ଼ା ।(୧୩) ଢେଙ୍କାନାଳ ଜିଲ୍ଲାର ଭୀମନଗରୀ ଗ୍ରାମରୁ ପ୍ରାପ୍ତ ଏହି ତାମ୍ରଶାସନରେ ରାଣୀ ତ୍ରିଭୁବନ ମହାଦେବୀ ନିଜକୁ ପରମବୈଷ୍ଣବୀ ବୋଲାଇଛନ୍ତି । ସେ ଯେଉଁ କାତ୍ୟାୟନୀଙ୍କ ସହିତ ନିଜକୁ ତୁଳନା କରିଛନ୍ତି, ସେ ଆଉ କେହି ନୁହନ୍ତି, ତାଙ୍କ ନିଜ ରାଜଧାନୀ ଗୁହେଶ୍ୱରପାଟକ ବା ବିରଜା କ୍ଷେତ୍ରର

ଅଧିଷ୍ଠାତ୍ରୀ ଦେବୀ । ସ୍ମରଣ ରହେ ଯେ, ଅଧୁନା ଯାଜପୁର ଅଧିଷ୍ଠିତା ଦେବୀ, ବିରଜା ମହିଷମର୍ଦ୍ଦିନୀ ମୂର୍ତ୍ତି ଓ ସିଂହାସନରେ ଆରୂଢ଼ା ।(୧୩କ) ଏ ସ୍ଥଳରେ ଆହୁରି ମଧ୍ୟ ଉଲ୍ଲେଖଯୋଗ୍ୟ ଏହି ଯେ ଭୌମଙ୍କର ବଂଶୀୟ ରାଜାମାନେ ପ୍ରଥମାବସ୍ଥାରେ ବୌଦ୍ଧଧର୍ମାବଲମ୍ବୀ ଥାଇ ପରେ ପରମ ମାହେଶ୍ୱର ବା ଶୈବ ଧର୍ମାନୁଗତ ହୋଇଥିଲେ, କେବଳ ରାଣୀ ତ୍ରିଭୁବନ ମହାଦେବୀ ବୈଷ୍ଣବ ଧର୍ମ ଆଚରଣ କରିଥିଲେ । ବିରଜାଦେବୀ ଭୌମରାଜ୍ୟ ତୋଷାଳୀର ରାଷ୍ଟ୍ରଦେବୀ ହୋଇଥିଲେ ମଧ୍ୟ ଏହି ବଂଶର କୌଣସି ରାଜା ବା ରାଣୀ ଏହି ଦେବୀଙ୍କର ନାମ ଗ୍ରହଣ ସୁଦ୍ଧା କରି ନାହାନ୍ତି । ତ୍ରିଭୁବନ ମହାଦେବୀ ନିଜକୁ କାତ୍ୟାୟନୀଙ୍କ ସହିତ ତୁଳନା କରିଥିବାରୁ ଅନ୍ତତଃ ଏତିକି ଅନୁମାନ କରାଯାଇପାରେ ଯେ ପ୍ରାଚୀନ କାଳ, ଅର୍ଥାତ୍ ମହାଭାରତ ଯୁଗରୁ ସର୍ବପାପମୋଚନୀ ବୈତରଣୀ ନଦୀ ତୀରରେ ଥିବା ବିରଜା ତୀର୍ଥ ଏକ ପବିତ୍ର କ୍ଷେତ୍ର ରୂପରେ ପ୍ରସିଦ୍ଧି ଅର୍ଜନ କରିଥିଲା ଓ ପରେ ଗୁପ୍ତଯୁଗରେ ଏଠାରେ 'କାତ୍ୟାୟନୀ' ନାମରେ ମହାଶକ୍ତି ଦେବୀ ମହିଷାସୁର ସ୍ୱରୂପରେ ଅଧିଷ୍ଠିତା ହୋଇଥିଲେ । ଶ୍ରୀଯୁକ୍ତ ରମାପ୍ରସାଦ ନନ୍ଦ ତାଙ୍କର ବିବରଣୀରେ ବିରଜାଙ୍କର ମୂର୍ତ୍ତିକୁ ପ୍ରାକ୍-ଗୁପ୍ତଯୁଗୀୟ ବୋଲି ପ୍ରକାଶ କରିଥିବାରେ (୧୪) ଓ ଅଦ୍ୟାବଧି ସମସ୍ତ ଐତିହାସିକ ତାଙ୍କ ମତକୁ ଯଥାର୍ଥ ବୋଲି ଗ୍ରହଣ କରି ନେଇଥିବାରେ ଓଡ଼ିଶାରେ ଗୁପ୍ତରାଜତ୍ୱ ସମୟରୁ, ଅର୍ଥାତ୍ ଖ୍ରୀଷ୍ଟୀୟ ୪ର୍ଥ ଶତକରୁ ଏଠାରେ ଶକ୍ତିପୂଜାର ଉଦ୍ଭବ ହୋଇ କ୍ରମଶଃ ବିକାଶ ଲାଭ କରିଥିବା ଓ ଏହି ପୂଜା ବିରଜା କ୍ଷେତ୍ରରେ କାତ୍ୟାୟନୀଙ୍କ ଉପାସନାରୁ ଆରମ୍ଭ ହୋଇଥିବା ବିଶ୍ୱାସ କରାଯାଇପାରେ । ପରବର୍ତ୍ତୀ କାଳରେ ମହିଷମର୍ଦ୍ଦିନୀ ବା କାତ୍ୟାୟନୀ ରୂପରେ ମହାଶକ୍ତିଙ୍କ ଉପାସନା ବ୍ୟାପକ ହେବାରୁ ଓ ଓଡ଼ିଶାରେ ବହୁସ୍ଥଳରେ ମହିଷମର୍ଦ୍ଦିନୀ ଦୁର୍ଗାଙ୍କୁ ବିଭିନ୍ନ ନାମରେ ପ୍ରତିଷ୍ଠା କରାଯାଇ ତାଙ୍କର ଉପାସନା ପ୍ରବର୍ତ୍ତିତ ହେବାରୁ ବିରଜା କ୍ଷେତ୍ରର ଦେବୀ କାତ୍ୟାୟନୀ ସ୍ଥାନ ନାମାନୁସାରେ 'ବିରଜା' ବୋଲାଇଛନ୍ତି । ବ୍ରହ୍ମପୁରାଣର ରଚନା ବେଳକୁ ସେ ଅନ୍ତତଃ 'ବିରଜା' ନାମ ଧାରିଣୀ ହୋଇ ସାରିଛନ୍ତି ।(୧୫)

ଐତିହାସିକମାନେ ପ୍ରକାଶ କରନ୍ତି ଯେ ଓଡ଼ିଶାରେ ଭୌମଙ୍କର ରାଜତ୍ୱ ସମୟରେ ତନ୍ତ୍ରବିଦ୍ୟାର ବହୁ ଉତ୍କର୍ଷ ସାଧିତ ହୋଇଥିଲା । ପ୍ରଥମ କେତେଜଣ ଭୌମରାଜା ବୌଦ୍ଧଧର୍ମର ପୃଷ୍ଠପୋଷକତା କରିବା ବେଳେ ମହାଯାନ ବୌଦ୍ଧ ସଂପ୍ରଦାୟରେ ତନ୍ତ୍ରବିଦ୍ୟାର ଅନୁପ୍ରବେଶକୁ ପ୍ରଶୟ ଦେଇଥିଲେ ଓ ଏହା ଫଳରେ ବୌଦ୍ଧ ଉପାସନା ପଦ୍ଧତିରେ ତନ୍ତ୍ରଯାନ ନାମରେ ଏକ ଉପାସନା ଧାରାର ପ୍ରବର୍ତ୍ତନ ହୋଇଥିଲା । ଏହାର କୌଣସି ସଂକେତ ଭୌମ ରାଜାରାଣୀଙ୍କ ଅଭିଲେଖମାନଙ୍କରେ ଉପଲବ୍ଧ ହେଉ ନଥିଲେ ମଧ୍ୟ ସାହିତ୍ୟ ଓ ପ୍ରତ୍ନତତ୍ତ୍ୱର ପ୍ରମାଣ ଆଧାରରେ ଏପରି ସିଦ୍ଧାନ୍ତ କରାଯାଇଛି । ଭୌମରାଜାମାନେ ଭାରତର ପ୍ରସିଦ୍ଧ ତନ୍ତ୍ରପୀଠ କାମ ରୂପରୁ ଆସିଥିଲେ ବୋଲି ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ନାନା ପ୍ରମାଣ ବଳରେ ଯାହା ସିଦ୍ଧ କରିଛନ୍ତି ।(୧୬) ତାହା ଅନେକ ଐତିହାସିକଙ୍କୁ ଭଲ ନ ଲାଗିଲେ ମଧ୍ୟ ଏହାର ଯଥାର୍ଥତା ରହିଛି । କାମରୂପର ଅଧିଷ୍ଠାତ୍ରୀ ଦେବୀ କାମାକ୍ଷା ଦେବୀଙ୍କ ଆସ୍ଥାନ ନୀଳପର୍ବତ ବା ନୀଳଗିରିର ନାମାନୁସାରେ ତତ୍କାଳୀନ ମାଧବ କ୍ଷେତ୍ର ପୁରୀର ନାମ ନୀଳାଚଳ ଦିଆଯାଇଥିବା ଡଃ ପାଣିଗ୍ରାହୀ ଅନୁମାନ କରିଛନ୍ତି (୧୬କ) ଓ ପୁରୀଠାରେ ସଂପ୍ରତି କୌଣସି ପର୍ବତର ଚିହ୍ନବର୍ଣ୍ଣ ନଥିବା ବେଳେ ଏହି ସ୍ଥଳଟି କିପରି ପର୍ବତ ଆଖ୍ୟା ପାଇଲା, ଏ ବିଷୟରେ କୌଣସି ଅନୁସନ୍ଧାନ ହୋଇନାହିଁ । ଏହି ନୀଳାଚଳରେ ଅଧିଷ୍ଠିତ ପୁରୁଷୋତ୍ତମ ଜଗନ୍ନାଥ ଅଧୁନା ଏହି କ୍ଷେତ୍ରର ପ୍ରମୁଖ ଦେବତା ହୋଇ ବିଶ୍ୱପ୍ରସିଦ୍ଧ ହୋଇଥିଲେ ମଧ୍ୟ ଏହି କ୍ଷେତ୍ରର ଅଧୀଶ୍ୱରୀ ରୂପେ ପୁରୁଷୋତ୍ତମ ମନ୍ଦିରର ଏକ ପାର୍ଶ୍ୱଦେବୀ ରୂପରେ ରହିଥିବା ବିମଳାଙ୍କୁ କାହିଁକି ମାନ୍ୟତା ଦିଆଯାଏ । ସେ ବିଷୟରେ କୌଣସି ଆଲୋଚକ ମୁଣ୍ଡ ଖେଳାଇ ନାହାନ୍ତି । ବିଶ୍ୱାସ କରାଯାଇପାରେ ଯେ ଭୌମଙ୍କର ରାଜତ୍ୱ ସମୟରେ ଓଡ଼ିଶାରେ ଶାକ୍ତ ଧର୍ମର ବିକାଶ ସାଧିତ ହୋଇଥିବା ସହିତ ବିଭିନ୍ନ ସ୍ଥଳରେ ଶାକ୍ତପୀଠଗୁଡ଼ିକର ଉଦ୍ଭବ ହୋଇଥିଲା । ବିରଜା କ୍ଷେତ୍ରରେ ପୂର୍ବରୁ ଅଧିଷ୍ଠିତା କାତ୍ୟାୟନୀ ଦେବୀଙ୍କ କଥା ପୂର୍ବରୁ ହିଁ ଅବତାରଣା କରାଯାଇଛି । ଭୌମ ଅଭିଲେଖମାନଙ୍କରେ ଏହି ଶାକ୍ତଦେବୀଙ୍କ ପ୍ରତି ଭକ୍ତିର କୌଣସି ସଂକେତ ରହି ନଥିଲେ ମଧ୍ୟ କବି ଡିଣ୍ଡିମ ଜୀବଦେବଙ୍କର ଗୋଟିଏ ଉକ୍ତି ପ୍ରଣିଧାନଯୋଗ୍ୟ । ତାହା ଏହିପରି -

ଭୋଜେଷୁ ତେଷ୍ୱ ବିନୟାଦିବ ରାଜପୀଠାତ୍
ଭ୍ରଷ୍ଟେଷୁ କେଶରିକୁଳଂ ତଦଳଂ ଚକାର ।(୧୭)

ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ଭକ୍ତି ଭାଗବତ ଗ୍ରନ୍ଥ ଆଧାରରେ ଲେଖିଛନ୍ତି ଯେ ଓଡ଼ିଶାର ତାଙ୍କ ପୂର୍ବବର୍ତ୍ତୀ ରାଜାମାନଙ୍କ ମଧ୍ୟରେ ଭୋଜବଂଶ ପ୍ରଥମ ଓ କେଶରିକୁଳ ଦ୍ୱିତୀୟ । ଭୋଜବଂଶର ରାଜାମାନେ ବିରଜା ଦେବୀଙ୍କର ପରମ ଭକ୍ତ ଥିଲେ ।(୧୮) କିନ୍ତୁ ସେମାନେ ସେହି ଦେବୀଙ୍କ ପ୍ରତି ଅବିନୟ ବା ଅବଜ୍ଞା ପ୍ରଦର୍ଶନ କରିବାରୁ ରାଜପୀଠରୁ ଭ୍ରଷ୍ଟ ହୋଇଥିଲେ ଓ କେଶରୀ ବଂଶର ରାଜା ଉଦ୍ୟୋତକେଶରୀ ଉତ୍କଳ ରାଜ୍ୟ ଅଧିକାର କରିଥିଲେ । ଭକ୍ତି ଭାଗବତରେ ଉଲ୍ଲିଖିତ ଭୋଜବଂଶ ଯେ ଅଧୁନା ବହୁ ଅନୁସନ୍ଧାନରୁ ଉପଲବ୍ଧ ଭୌମକର ବଂଶ ଏଥିରେ ସନ୍ଦେହ ନାହିଁ । ସେମାନେ ବିରଜା କ୍ଷେତ୍ରର ନିକଟସ୍ଥ ଗୁହେଶ୍ୱର ପାଟକ କିମ୍ବା ଗୁହଦେବ ପାଟକଠାରେ ରାଜଧାନୀ ସ୍ଥାପନ କରି ରାଜ୍ୟ ଶାସନ କରୁଥିଲେ । ନିର୍ଦ୍ଦିଷ୍ଟ ଭାବରେ ଏହି ଗୁହେଶ୍ୱର ବା ଗୁହଦେବ ପାଟକକୁ କେହି ଚିହ୍ନିତ କରିପାରି ନାହାନ୍ତି । କିନ୍ତୁ ସବୁ ଐତିହାସିକ ଏହାକୁ ବିରଜାକ୍ଷେତ୍ର ନିକଟବର୍ତ୍ତୀ ବୋଲି ସ୍ୱୀକାର କରିଛନ୍ତି । ଅନୁସନ୍ଧାନ ଚାଲିଛି । ଏ ସ୍ଥାନ ଭଦ୍ରକ ଜିଲ୍ଲାର ଗୋହିରା ଟିକିରି ହେବା ବିଷୟରେ ସର୍ବସମ୍ମତି ପ୍ରକାଶ ପାଇ ନାହିଁ ।

ସେ ଯାହା ହେଉ, ଐତିହାସିକମାନେ ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିକୋଣରୁ ସ୍ୱୀକାର କରିଛନ୍ତି ଯେ ଭୌମଙ୍କର ବଂଶୀୟ ରାଜାରାଣୀମାନଙ୍କ ରାଜତ୍ୱ କାଳରେ ଉତ୍କଳରେ ବହୁ ଶକ୍ତିପୀଠର ସୃଷ୍ଟି ହୋଇ ବିକାଶ ଲାଭ କରିଥିଲା । ଏକାମ୍ରକ୍ଷେତ୍ରର କପାଳିନୀ ମନ୍ଦିର (ଯାହାକୁ ବୈତାଳ ମନ୍ଦିର ବୋଲି କୁହାଯାଉଛି) ଓ ପ୍ରାଚୀ କ୍ଷେତ୍ରର ଚଉରାଶୀ ଗ୍ରାମର ବରାହୀ ମନ୍ଦିର ଭୌମଙ୍କର ବଂଶୀୟ ରାଜତ୍ୱ କାଳର କୀର୍ତ୍ତି ବୋଲି ସ୍ୱୀକାର କରାଯାଏ । ସେହିପରି ଏକାମ୍ରକ୍ଷେତ୍ରର ମୋହିନୀ ମନ୍ଦିର ଓ ଗୌରୀ ମନ୍ଦିର ମଧ୍ୟ ଭୌମରାଣୀମାନଙ୍କ ଦ୍ୱାରା ନିର୍ମିତ ହୋଇ ସେଠାରେ ଶକ୍ତି ଉପାସନାର ପ୍ରଚଳନ ହୋଇଥିବା ଐତିହାସିକ କେଦାରନାଥ ମହାପାତ୍ର ପ୍ରକାଶ କରିଛନ୍ତି ।(୧୯) ଏପରି ସ୍ଥଳେ ନୀଳାଚଳ କ୍ଷେତ୍ରରେ ମଧ୍ୟ ଶକ୍ତି ଉପାସନାର ଭିତ୍ତିସ୍ଥାପନ ସେହି ଭୌମ ରାଜତ୍ୱ ସମୟରେ ବିମଳା ଦେବୀଙ୍କର ଉପାସନାର ପ୍ରବର୍ତ୍ତନ ମାଧ୍ୟମରେ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବୈଷ୍ଣବ ଗ୍ରନ୍ଥ ସ୍କନ୍ଦ ପୁରାଣର ଉତ୍କଳଖଣ୍ଡ ଲେଖା ହେବା ବେଳକୁ ଯେ ନୀଳାଚଳ କ୍ଷେତ୍ରରେ ନୀଳାଚଳ କ୍ଷେତ୍ରାଧୀଶ୍ୱରୀ ମହାଶକ୍ତି କାମାକ୍ଷାଙ୍କର ପ୍ରତିରୂପିଣୀ ବିମଳା ଦେବୀଙ୍କର ଉପାସନା ପୂର୍ଣ୍ଣ ଗୌରବ ସହକାରେ ପ୍ରଚଳିତ ଥିଲା, ଏହା ଅସ୍ୱୀକାର କରି ହେଉ ନାହିଁ । କିନ୍ତୁ ତହିଁରେ ମହର୍ଷି ନାରଦଙ୍କ ସହିତ ମାଳବ ରାଜ ଇନ୍ଦ୍ରଦ୍ୟୁମ୍ନ ନୀଳାଚଳ ଆରୋହଣ ଅବସରରେ ବିମଳା ଦେବୀଙ୍କୁ କିପରି ଦେଖିପାରିଲେ ନାହିଁ, ଅଥଚ ଅଗୁରୁ ବୃକ୍ଷମୂଳରେ ବିରାଜିତ ନୃସିଂହଙ୍କୁ ଦର୍ଶନ କରିବାକୁ ସମର୍ଥ ହେଲେ ।(୨୦) ତାହା ଯେତିକି ବିସ୍ମୟ ସୃଷ୍ଟି କରିଛି, ସେତିକି ଭ୍ରାନ୍ତି ମଧ୍ୟ ପ୍ରତିଷ୍ଠିତ କରିଛି । ଏହି ନୀଳାଚଳ କ୍ଷେତ୍ରର ତୃତୀୟ ଆୟତନରେ ହିଁ ବିମଳା ଅଧିଷ୍ଠିତା, କ୍ଷେତ୍ରରକ୍ଷା ପାଇଁ ଅଷ୍ଟଚଣ୍ଡୀ ଅବସ୍ଥିତା ଇତ୍ୟାଦି ସ୍ୱୀକାର କରି ମଧ୍ୟ (୨୧) ପୁରାଣକାର ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ସମୟକୁ ଶ୍ରୀ ଶ୍ରୀ ବିମଳାପୀଠର ଅବସ୍ଥିତି ସଂପର୍କରେ ନୀରବ ରହିବା ସାଂପ୍ରଦାୟିକ ମନୋବୃତ୍ତିର ସୂଚକ ହୋଇପାରେ । ତେଣୁ ଏହାଦ୍ୱାରା ସତ୍ୟ ସଂଶୋଧିତ ହୋଇପାରେନା ।

ତନ୍ତ୍ର ଚୂଡ଼ାମଣି ପୀଠ ନିର୍ଣ୍ଣୟ ଗ୍ରନ୍ଥରେ ଉତ୍କଳ କ୍ଷେତ୍ରରେ ବିମଳା ଦେବୀଙ୍କର ଅଧିଷ୍ଠାନ ସ୍ୱୀକୃତ । ସଂପୃକ୍ତ ଶ୍ଳୋକଟି ହେଉଛି -

ଉତ୍କଳେ ନାଭିଦେଶଶ୍ଚ ବିରଜା କ୍ଷେତ୍ରମୁଚ୍ୟତେ ।
ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବଃ ।(୨୨)

ଏଥିରୁ ପ୍ରତୀତ ହୁଏ ଯେ ସତୀଙ୍କର ନାଭିଦେଶ ଯେଉଁ ସ୍ଥାନରେ ପଡ଼ିଥିଲା, ତାହା ଏକ ନିର୍ଦ୍ଦିଷ୍ଟ ସ୍ଥାନ ନଥିଲା, ତାହା ସମଗ୍ର ଉତ୍କଳରେ ପତିତ ହୋଇଥିଲା । ତେଣୁ ତାହାକୁ, ଅର୍ଥାତ୍ ସମଗ୍ର ଉତ୍କଳକୁ ବିରଜାକ୍ଷେତ୍ର କୁହାଯାଉଥିଲା । ସେହି କ୍ଷେତ୍ରରେ ଭୈରବୀ ରୂପରେ ରହିଥିଲେ ବିମଳା ଓ ଭୈରବ ରୂପରେ ଜଗନ୍ନାଥ । ଐତିହାସିକମାନେ ଏହି ଜଗନ୍ନାଥଙ୍କୁ ଚିହ୍ନି ନପାରି ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀରେ ଶ୍ରୀନୀଳାଚଳ କ୍ଷେତ୍ରର ମହାପ୍ରଭୁ ପୁରୁଷୋତ୍ତମଙ୍କୁ ଜଗନ୍ନାଥ ନାମ ପ୍ରଦାନ କରାଯାଇଥିବା ସୂଚକ କେତେକ ଗଙ୍ଗବଂଶୀ ରାଜାଙ୍କ ଅଭିଲେଖର ଆଧାରରେ ଶ୍ରୀପୁରୁଷୋତ୍ତମଙ୍କୁ ହିଁ ଗ୍ରହଣ କରିଛନ୍ତି । ପରବର୍ତ୍ତୀ କାଳରେ ଶ୍ରୀପୁରୁଷୋତ୍ତମ ମହାପ୍ରଭୁ ଶ୍ରୀଜଗନ୍ନାଥ ନାମରେ ଖ୍ୟାତିଲାଭ କରି ଏବେ ମଧ୍ୟ ସେହି ନାମରେ ବିଶ୍ୱରେ ପରିଚିତ ହେବା ଯୋଗୁଁ ଏପରି ଅନୁମାନ କରିଛନ୍ତି । ପୂର୍ବୋଦ୍ଧୃତ କାଳିକା ପୁରାଣର ଜଗନ୍ନାଥ ଶବ୍ଦର କ୍ଷେତ୍ରରେ ମଧ୍ୟ ଏହି କାରଣ ରହିଛି । ପୁରାଣ ବର୍ଣ୍ଣନା ଅନୁସାରେ ଭଗବାନ ଶଙ୍କର ମହାରୌଦ୍ର ରୂପ ଧାରଣ କରି ପ୍ରିୟପତ୍ନୀ ସତୀ ଦେବୀଙ୍କ ଶବକୁ ସ୍କନ୍ଧରେ ବହନ କରି ପୃଥିବୀ ଭ୍ରମଣ କରୁଥିବାବେଳେ ଭଗବାନ ବିଷ୍ଣୁଙ୍କ ଦ୍ୱାରା ଚକ୍ରରେ ଛିନ୍ନ ହୋଇ ତାଙ୍କର ବିଭିନ୍ନ ଅଙ୍ଗ ଯେଉଁ ଯେଉଁ ସ୍ଥାନମାନଙ୍କରେ ପତିତ ହେଲା, ସେହି ସ୍ଥାନମାନଙ୍କରେ ସ୍ୱୟଂ ମହାଶକ୍ତି ଗୋଟିଏ ଗୋଟିଏ ଭୈରବୀ ରୂପରେ ଅବସ୍ଥାନ କଲେ ଓ ତାଙ୍କୁ ରକ୍ଷା କରିବା ପାଇଁ ମହାଦେବ ଭୈରବ ହେଲେ । ଏପରି ସ୍ଥଳେ ବିଷ୍ଣୁ ସ୍ୱରୂପୀ ପୁରୁଷୋତ୍ତମ କିପରି ଭୈରବ ସ୍ୱରୂପ ହେବେ । ମତ୍ସ୍ୟ ପୁରାଣ, ଦେବୀ ଭଗବାତ, ସ୍କନ୍ଦ ପୁରାଣ- ରେବା ଖଣ୍ଡ ପ୍ରଭୃତିରେ ୧୦୮ ସିଦ୍ଧପୀଠ ମଧ୍ୟରେ ବିମଳା ପୁରୁଷୋତ୍ତମେ ବୋଲି ସ୍ପଷ୍ଟ ଉଲ୍ଲେଖ ଅଛି ।(୨୩) ଏସବୁ ପୁରାଣ ସ୍ଥଳରେ ପୁରୁଷୋତ୍ତମ ଶବ୍ଦଟି ଏହି କ୍ଷେତ୍ରକୁ ହିଁ ଅଭିହିତ କରୁଥିବା ନିଶ୍ଚିତ । ଏହି କ୍ଷେତ୍ରର ଭୈରବ ଜଗନ୍ନାଥ ନିଶ୍ଚୟ କୌଣସି ଶିବ ସ୍ୱରୂପ । ଅଦ୍ୟାବଧି ଯାହାଙ୍କ ଅନୁସନ୍ଧାନ କରାଯାଇ ପାରିନାହିଁ । ତନ୍ତ୍ରଶାସ୍ତ୍ରରେ ଭଗବାନ ଶିବଙ୍କୁ 'ଜଗନ୍ନାଥ' ନାମରେ ସୂଚିତ କରାଯାଇଥିବା ବହୁସ୍ଥଳରେ ଦୃଶ୍ୟ ହୁଏ । ଉଦାହରଣ ସ୍ୱରୂପ ମୁଣ୍ଡମାଳା ତନ୍ତ୍ରରେ ଦେବୀ କହିଛନ୍ତି -

ଦେବ ଦେବ ମହଦେବ ସୃଷ୍ଟିସ୍ଥିତ୍ୟନ୍ତ କାରକ
ନୀଳକଣ୍ଠ ଜଗନ୍ନାଥ ପ୍ରଭୋ ଶଙ୍କର ଭୋ ହର
ନମସ୍ତୁଭ୍ୟଂ ଜଗନ୍ନାଥ ମମ ନାଥାମରପ୍ରଭୋ
ଶରଣାଗତ ଦୀନାର୍ତ୍ତପରିତ୍ରାଣ ପରାୟଣ । (୨୪)

ଏହି ମୁଣ୍ଡମାଳା ତନ୍ତ୍ରଟି ବାମାଚାର-ପ୍ରତିପାଦକ ଶିବ-ପାର୍ବତୀ ସଂବାଦାତ୍ମକ ଗ୍ରନ୍ଥ ଅଟେ । ଏଥିରେ ଦୁର୍ଗା ହିଁ ଏକମାତ୍ର ଜ୍ଞାନର ସାଧନ ରୂପରେ ବର୍ଣ୍ଣିତା । ତେଣୁ ଏହି ଦୁର୍ଗାଙ୍କର ପ୍ରାଣବଲ୍ଲଭ ମହାଦେବ ସ୍ୱରୂପୀ ଜଗନ୍ନାଥ ଏହି କ୍ଷେତ୍ରର କୌଣସି ପ୍ରାଚୀନ ଶିବ ହିଁ ହୋଇପାରନ୍ତି ।

ମାଦଳା ପାଞ୍ଜିରେ ଯଯାତିକେଶରୀ ବିମଳାକ୍ଷୀ ଦେବୀଙ୍କ ମନ୍ଦିର ନିର୍ମାଣ କରାଇଥିବା ବର୍ଣ୍ଣିତ ଅଛି ।(୨୫) ଉପଲବ୍ଧ ମାଦଳାପାଞ୍ଜି ଅବଶ୍ୟ ପରବର୍ତ୍ତୀ କାଳର ରଚନା ଓ ଏଥିରେ ଐତିହାସିକତାର ମାତ୍ରା ଅଦ୍ୟାବଧି ବିବଦାସ୍ପଦ ଅବସ୍ଥାରେ ଅଛି । ହେଲେ, ନୀଳାଚର ବିମଳା ଦେବୀ ଯେ ଅତି ପ୍ରାଚୀନ ଦେବୀ, ଏଥିରେ ସନ୍ଦେହ ନାହିଁ ଓ ତାହାକୁ ଭୌମଯୁଗର କୀର୍ତ୍ତି କହିଲେ ସତ୍ୟର ଅପଳାପ ହେବ ନାହିଁ । ମାଦଳାପାଞ୍ଜିରେ ବିମଳାଙ୍କର ମୌଳିକ ନାମ ବିମଳାକ୍ଷୀ ବୋଲି ସଂକେତ ମିଳୁଛି । ଏହା ସୌମ୍ୟମୂର୍ତ୍ତି, ତାନ୍ତ୍ରିକ ଦେବୀଙ୍କ ପରି ଉଗ୍ରମୂର୍ତ୍ତି

ନୁହେଁ । ବିରଜା କିନ୍ତୁ ଉଗ୍ରମୂର୍ତ୍ତି । ସେ ମହିଷାସୁରମର୍ଦ୍ଦିନୀ । ଦୁଇ ଭୁଜରେ ଯଥାକ୍ରମେ ମହିଷାସୁରର ପୁଚ୍ଛ ଓ ତ୍ରିଶୂଳ ଧରି, ମହିଷାସୁରର ପୃଷ୍ଠ ଉପରେ ଆରୋହଣ କରି ତାକୁ ଶୂଳବିଦ୍ଧ କରୁଛନ୍ତି । ଟି.ଏ. ଗୋପୀନାଥ ରାଓ ତାଙ୍କ ସୁପ୍ରସିଦ୍ଧ ମୂର୍ତ୍ତିତାତ୍ତ୍ୱିକ ଗ୍ରନ୍ଥରେ କାତ୍ୟାୟନୀ ଦେବୀଙ୍କର ଯେଉଁ ରୂପ ବର୍ଣ୍ଣନା କରିଛନ୍ତି (୨୬), ସେ ତାହା ଦ୍ୱାରା ମହିଷମର୍ଦ୍ଦିନୀ ରୂପ ଧାରଣ କରିଥିବା ହିଁ ଦ୍ୟୋତିତ ହେଉଚି । ଅନ୍ୟପକ୍ଷରେ ବିମଳା ଯେଉଁ ସବୁ ଆୟୁଧ ଧାରଣ କରି ସ୍ଥାନକ (ଛିଡ଼ା ହୋଇଥିବା) ଭଙ୍ଗୀରେ ଅଛନ୍ତି, ତାହା ମଧ୍ୟରେ କୌଣସି ଯୁଦ୍ଧାସ୍ତ୍ର ନାହିଁ । ତେଣୁ ତାଙ୍କୁ ବିମଳାକ୍ଷୀ, ସୌମ୍ୟରୂପା କୁହାଯିବା ଯଥାର୍ଥ ।

ଏଣୁ ଖ୍ରୀଷ୍ଟୀୟ ଅଷ୍ଟମଶତାବ୍ଦୀଠାରୁ ଦଶମ ଶତାବ୍ଦୀ ମଧ୍ୟରେ ଉତ୍କଳ ବା ଉଡ୍ର ଦେଶରେ ଭୌମରାଜତ୍ୱ କାଳରେ ତାନ୍ତ୍ରିକ ଧାରାରେ ଦେବୋପାସନା ସହିତ ମହାଶକ୍ତି ଦୁର୍ଗାଙ୍କର ଉପାସନା ଅଧିକ ପ୍ରଭାବଯୁକ୍ତ ହୋଇଥିବା କାଳରେ ବିରଜାକ୍ଷେତ୍ର ଯାଜପୁରଠାରେ କାତ୍ୟାୟନୀ ବିରଜାଙ୍କର ଉପାସନାଧାରା ବଳବତ୍ତର ହେବା ସହିତ ନୀଳାଚଳ କ୍ଷେତ୍ର ମଧ୍ୟ ଏକ ଶାକ୍ତକ୍ଷେତ୍ରରେ ପରିଣତ ହୋଇଥିବା ନିଶ୍ଚିତ । ବିରଜା କ୍ଷେତ୍ରରେ ଦୁର୍ଗା ରୌଦ୍ରରୂପା ଥିବାବେଳେ ନୀଳାଚଳ କ୍ଷେତ୍ରରେ ସୌମ୍ୟରୂପା ବିମଳାକ୍ଷୀ ବୋଲାଇଥିବା ଅନୁମେୟ । ଏକାମ୍ରର କାପାଳିନୀ-ଚାମୁଣ୍ଡା, ଚୌରାଶୀର ବାରାହୀଙ୍କ ସମେତ ଆଉ ବହୁ ସ୍ଥଳରେ ମଧ୍ୟ ଶକ୍ତି ଉପାସନା ପ୍ରଚଳିତ ହୋଇ ସମଗ୍ର ଓଡ଼ିଶା ପୂର୍ବ ଭାରତରେ ଏକ ମହାନ୍ ଶକ୍ତିକ୍ଷେତ୍ରରେ ପରିଣତ ହୋଇଥିଲା, ଏହାକୁ ଉଡ୍ଡୀୟାନ ପୀଠ ମଧ୍ୟ କୁହାଯାଇଥିଲା ଓ ଏହି ରାଜ୍ୟର ବିଭିନ୍ନ ସ୍ଥଳରେ ବହୁ ଶକ୍ତିପୀଠର ଉତ୍ପତ୍ତି ଘଟିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ନୀଳାଚଳ କ୍ଷେତ୍ର ପୁରୀରେ ମଧ୍ୟ ବିମଳା ପୀଠ ସହିତ ଦକ୍ଷିଣକାଳୀ ସମେତ ଆଉ ବହୁ ଶକ୍ତିପୀଠର ଉତ୍ପତ୍ତି ସେହି ସମୟରେ ହୋଇଥିବା ବିଶ୍ୱାସଯୋଗ୍ୟ ।

ପଦଟୀକା :


୧. ଋଗ୍‌ବେଦ ସଂହିତା - ୧୦ମ ମଣ୍ଡଳ, ୧୨୫ ସୂକ୍ତ
୨. ପଞ୍ଚୋପାସନା - ଡଃ ଜିତେନ୍ଦ୍ରନାଥ ବନ୍ଦୋପାଧ୍ୟାୟ, କଲିକତା - ୧୯୬୦, ପୃ.୨୨୩
୩. ସୌନ୍ଦର୍ଯ୍ୟଲହରୀ - ଶଙ୍କରାଚାର୍ଯ୍ୟ କୃତ - ପ୍ରଥମ ଶ୍ଳୋକ
୪. ତୈତ୍ତିରୀୟ ଆରଣ୍ୟକ - ୧୦ମ ପ୍ରପାଠକ - ୨ୟ ବର୍ତ୍ତିକା
୫. ତୈତ୍ତିରୀୟ ଆରଣ୍ୟକ - ୧୦ମ ପ୍ରପାଠକ - ୧ମ ବର୍ତ୍ତିକା
୬. ଚଣ୍ଡୀ (ଦୁର୍ଗା ସପ୍ତଶତୀ) - ୨.୧୩ ମନ୍ତ୍ର
୭. ବାମନପୁରାଣ - ୧୮ ଅଧ୍ୟାୟ, ୭-୮ ଶ୍ଳୋକ-ଗୀତା ପ୍ରେସ ସଂସ୍କରଣ
୮. ବାମନ, ୧୮.୧୩ ଶ୍ଳୋକ
୯. ଚଣ୍ଡୀ (ଦୁର୍ଗା ସପ୍ତଶତୀ) ୧୧.୨୫ ମନ୍ତ୍ର
୧୦. ବାମନ, ୧୮.୩୭, ୧୯.୧ ପ୍ରଭୃତି
୧୧. କାଳିକା ପୁରାଣ - ୬୪ ଅଧ୍ୟାୟ- ୪୪ ଶ୍ଳୋକ, ନବଭାରତ ସଂସ୍କରଣ
୧୨. କାଳିକା - ୬୪.୪୩ ଶ୍ଳୋକ
୧୩. Inscriptions of Orissa - Vol.II- Snigdha Tripathy, New Delhi, 1999, P.169
୧୩.କ. ବିରଜାଙ୍କର ଧ୍ୟାନ ହେଉଛି - ଶ୍ୟାମାଙ୍ଗୀ ସିଂହମାରୂଢାଂ ଦ୍ୱିଭୁଜାଂ ଶୂଳଧାରିଣୀବ୍ । ବିଭ୍ରନ୍ତୀଂ ବାମହସ୍ତେନ ମହିଷାସୁରପୁଚ୍ଛକମ୍ । ସୁରାସୁରୈର୍ବନ୍ଦ୍ୟମାନାଂ ତ୍ରିନେତ୍ରାମିନ୍ଦୁ ଶେଖରାମ୍ । ସର୍ବାଭରଣସମ୍ପନ୍ନାଂ ଭକ୍ତାନୁଗ୍ରହକାରିଣୀମ୍ । ବନ୍ଦେ ଶ୍ରୀବିରଜାଦେବୀଂ ଭୁକ୍ତିମୁକ୍ତି ପ୍ରଦାୟିନୀମ୍ । ବିରଜା ବକ୍ତୃତାମାଳା- ୭ (୧୯୮୦)ରେ ଉଦ୍ଧୃତ ।
୧୪. Memoirs of Archaeological Survey of India, No.44 Exploration in Orissa, 1930-Reprint 1998, P-4
୧୫. ବ୍ରହ୍ମପୁରାଣ - ୪୦.୧ ଶ୍ଳୋକ - ଭେଙ୍କଟେଶ୍ୱର ସଂସ୍କରଣ
୧୬. History of Orissa - K.C. Panigrahi, Cuttack, 1981, P.68
୧୬.କ. Ibid-P.338-339
୧୭. ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ - ପରମାନନ୍ଦ ଆଚାର୍ଯ୍ୟ, ଭୁବନେଶ୍ୱର, ୧୯୬୯, ପ୍ରଥମ ଭାଗ- ପୃ.୨୫୯-୨୬୦
୧୮. ତତ୍ରୈବ - ପୃ.୨୫୯
୧୯. Temples of Bhubaneswar - K.N. Mohapatra - Side lights on History and Culture of Orissa, Cuttack, 1977, p.543, 545
୨୦. ସ୍କନ୍ଦପୁରାଣ-ଉତ୍କଳଖଣ୍ଡ-୧୫୪ଶ ଅଧ୍ୟାୟ-ବଙ୍ଗବାସୀ ସଂସ୍କରଣ
୨୧. ତତ୍ରୈବ - ୪ର୍ଥ ଅଧ୍ୟାୟ - ୧୩ ଶ୍ଳୋକ
୨୨. ଉଦ୍ଧୃତି - The Sakta Pithas, D.C. Sircar, Delhi - Reprint, 1998 ପୀଠ ନିର୍ଣ୍ଣୟ (ମହାପୀଠ ନିରୂପଣମ୍) ପୃ.୪୫
୨୩. ମତ୍ସ୍ୟପୁରାଣ - ୧୩.୩୫ ଶ୍ଳୋକ, ଦେବୀ ଭାଗବତ - ୭ମ ସ୍କନ୍ଧ, ୩୦ ଅଧ୍ୟାୟ, ୬୪ ଶ୍ଳୋକ ପ୍ରଭୃତି
୨୪. ମୁଣ୍ଡମାଳା ତନ୍ତ୍ର ଅଧ୍ୟାୟ ୧ ଶ୍ଳୋକ ୨-୩
୨୫. ମାଦଳାପାଞ୍ଜି - ଦ୍ୱିତୀୟ ସଂସ୍କରଣ ଭୁବନେଶ୍ୱର ୧୯୬୯, ପୃ.୬
୨୬. Elements of Hindu Iconography, T.A. Gopinath Rao, Vol.I-pt-II- Reprint-Delhi, 1968. Appendix ପ୍ରତିମାଲକ୍ଷଣାନି


ବଳଭଦ୍ର ଗଳି
ପୁରୀ

# ଶାକ୍ତ ସଂସ୍କୃତିରେ ସମନ୍ୱୟର ସ୍ୱର

ଡଃ ନୀଳକଣ୍ଠ ମିଶ୍ର

ଦୁର୍ଗାପୂଜା ସମାଗତ । ଏହି ମହାଶକ୍ତିଙ୍କର ଆବାହନ ଓ ଆରାଧନା ଲାଗି ପୁର, ଜନପଦ ଆଜି ଉତ୍ସବ ମୁଖର ।

ଏହା ଦେବୀଙ୍କର ଅକାଳବୋଧିନୀ ପୂଜା । ଭଗବାନ ରାମଚନ୍ଦ୍ର ଲଙ୍କପତି ରାବଣକୁ ନିଧନ କରିବା ପାଇଁ ଦେବୀଙ୍କର ପୂଜା ସହିତ 'ଆଦିତ୍ୟ ହୃଦୟ' ସ୍ତୋତ୍ର ପାଠ କରିଥିବା ପୁରାଣରୁ ଜଣାଯାଏ । ଚୈତ୍ର ମାସରେ ଦେବୀଙ୍କର ମୂଳପୂଜା 'ବାସନ୍ତିକ' ଦୁର୍ଗାପୂଜା ଅନୁଷ୍ଠିତ ହୋଇଥାଏ ।



ଓଡ଼ିଆ ସଂସ୍କୃତିରେ ଏହି ଦୁଇ ପୂଜାର ପ୍ରଚଳନ ଥିଲେ ମଧ୍ୟ ଶାରଦୀୟ ଦୁର୍ଗାପୂଜାର ଆକର୍ଷଣ ଅନନ୍ୟ ।

ଶରତର ନିର୍ମଳ ଜ୍ୟୋତ୍ସ୍ନାଭିଜା ଶ୍ୟାମଳ ବ୍ୟାପକ ଆକାଶ, ସମଶୀତୋଷ୍ଣ ବାୟୁମଣ୍ଡଳ, କାକର ବତୁରା ସକାଳରେ ଦେବୀ ଅବତୀର୍ଣ୍ଣ ହୁଅନ୍ତି ଏହି ପୃଥିବୀରେ କାଶତଣ୍ଡୀର ହସ ଖେଳାଇ ଦେଇ ମଣିଷର ମନ ଆଉ ଓଠରେ । ଏଥିପାଇଁ ଏହି ଉତ୍ସବକୁ ପକ୍ଷ ମାସ ଧରି ମଣିଷ ଅପେକ୍ଷା କରି ରହିଥାଏ ଉଦ୍‌ଗ୍ରୀବ, ଉନ୍ମୁଖ ହୋଇ ।

କୃଷି ପ୍ରଧାନ ଓଡ଼ିଶାରେ ଏହି ସମୟରେ କ୍ଷେତ ଶସ୍ୟ ସଂପଦରେ ପରିପୂର୍ଣ୍ଣ ଗ୍ରାମ ପ୍ରାନ୍ତର ଶ୍ରୀବୃଦ୍ଧି ସାଧନ କରିଥାଏ । ଜୀବିକା ଏଠି ପରିଣତ ହୋଇଯାଏ ଜୀବନରେ । ତେଣୁ କୃତଜ୍ଞତା ଜଣାଇବାକୁ ସାଧାରଣ ମଣିଷଟି ଶସ୍ୟ ଲକ୍ଷ୍ମୀଙ୍କର ଉପାସନା କରିବାକୁ 'ନବପତ୍ରିକା' ପୂଜାର ଆୟୋଜନ କରେ । ନଅଗୋଟି ନିର୍ଦ୍ଦିଷ୍ଟ ପତ୍ର ନେଇ ତାହାକୁ ଜୀବନ (ଜଳ-ରସ) ପୂର୍ଣ୍ଣ କଳସୀ ଉପରେ ସମାସୀନ କରି କୃତାଞ୍ଜଳିପୁଟରେ ଧରିତ୍ରୀ ଓ ଐଶୀ ଶକ୍ତିକୁ ସେ ଅର୍ଚ୍ଚନା କରେ । ପ୍ରାଚୁର୍ଯ୍ୟର ଏହି ପର୍ବ ପ୍ରାୟ 'ନୂଆଖାଇ'ଠାରୁ ଆରମ୍ଭ ହୋଇଯାଇଥାଏ ।

ଦେବୀ ଉପାସନାର ମାନବିକ ଦିଗ ବ୍ୟତୀତ ପାରଲୌକିକ ତତ୍ତ୍ୱଟି ଆହୁରି ମହତ୍ୱପୂର୍ଣ୍ଣ । ହୋମାଗ୍ନିର ପବିତ୍ର ଅଗ୍ନିଶିଖା ଓ ସୁଗନ୍ଧ ଭିତରେ, ମାନ୍ତ୍ରିକ ବ୍ରାହ୍ମଣର ଉଦାତ୍ତ ମନ୍ତ୍ର ଉଚ୍ଚାରଣରେ, ଧୂପ ସୁଗନ୍ଧର ସୁରଭି ତଥା ବର୍ଣ୍ଣାଢ଼୍ୟ ଆଲୋକର ବର୍ଣ୍ଣୋତ୍ସବ ମଧ୍ୟରେ କରୁଣାର ମହାପ୍ଳାବନ ସୃଷ୍ଟି କରି ଓହ୍ଲାଇ ଆସନ୍ତି ବରଦା ମମତାମୟୀ ମହାଶକ୍ତି ଦୁର୍ଗା ।

ନାମୀ ଅପେକ୍ଷା ନାମର ମହତ୍ୱ ଅଧିକ । ଏହି ତତ୍ତ୍ୱ ସମସ୍ତ ଧର୍ମ ଓ ସଂପ୍ରଦାୟ ବିଶ୍ୱାସ କରିଥାଏ । ଏହି ତତ୍ତ୍ୱ ଅନୁସାରେ 'ଦୁର୍ଗା' ନାମର ମହତ୍ୱ ବହୁ ଅଧିକ ।

ସେ ହେଉଛନ୍ତି, 'ସର୍ବବାଧା ପ୍ରଶମନଂ ତ୍ରୈଲୋକ୍ୟସ୍ୟା଼ଖିଳେଶ୍ୱରୀ' ଆଶ୍ରିତ ଜନର ସମସ୍ତ ବାଧା ପ୍ରତିହତ କାରିଣୀ, କାତ୍ୟାୟନ ଋଷିଙ୍କ କନ୍ୟା ଉମା ବା ଜନ୍ମାନ୍ତରେ 'ହିମବନ୍ତ ପର୍ବତଙ୍କ ଦୁଲଣୀ' ପାର୍ବତୀ ସମୟକ୍ରମେ ମହିଷାସୁର ନିଧନ ନିମନ୍ତେ ଦୁର୍ଗା ରୂପେ ଜନମାନସରେ ପୂଜିତା ହେଲେ ।

ଗବେଷକମାନେ କହନ୍ତି, 'ଉମା' ଶବ୍ଦରୁ କାଳକ୍ରମେ 'ଦୁର୍ଗା' ଶବ୍ଦ ନିଷ୍ପନ୍ନ ହୋଇଛି । ବଙ୍ଗ ଭାଷାରେ ରଚିତ ଭରତଚନ୍ଦ୍ରଙ୍କ 'ଅନ୍ନଦାମଙ୍ଗଳ' କାବ୍ୟ ଅନୁସାରେ 'ଉ' ଶବ୍ଦ ହେଉଛି ଶିବ ଓ 'ମା' ଶବ୍ଦ ତାଙ୍କର ସୌନ୍ଦର୍ଯ୍ୟବୋଧକ ।

'ଉ' ଶବ୍ଦେ ବୁଝାଇ ଶିବ 'ମା' ଶବ୍ଦେ ଶ୍ରୀ ତାର ବୁଝିଆ ମେନକା 'ଉମା ନାମ କୈୟସାର ।

ଆଉ କେତେକଙ୍କ ମତରେ ଭଗବାନ 'ଶଙ୍କର'ଙ୍କୁ ପତି ରୂପେ ପାଇବାକୁ ସେ କଠୋର ତପସ୍ୟା କରିବା ଯୋଗୁଁ ଦେଖୁଥିବା ଲୋକ ଭବ ମା' (ତବ କେତେ କଠୋର ତପସ୍ୟା) ଏହି ଭାବ ପ୍ରକାଶ କରୁଥିବାରୁ ତାଙ୍କର ନାମ ଉମା ହେଲା ।

'ଦୁର୍ଗା' ନାମର ପୃଷ୍ଠଭୂମି ବିଶ୍ଳେଷଣ କରି ପଣ୍ଡିତମାନେ ମତ ଦେଇଥାଆନ୍ତି ଦୁର୍ଗ ରକ୍ଷା କରିବା ଲାଗି ଅତୀତରେ ସେ ଚଣ୍ଡୀ ଭାବେ

ଦୁର୍ଗମାନଙ୍କରେ ଉପାସିତ ହେଉଥିଲେ । ତେଣୁ ଦୁର୍ଗର ଅଧିଷ୍ଠାତ୍ରୀ ଥିବାରୁ ସେ ଦୁର୍ଗା ନାମରେ ନାମିତ ହୋଇଥିଲେ । ଦେବୀ ପୁରାଣ ଅନୁସାରେ

'ତ୍ୱଂହି ଦୁର୍ଗେ ମହାବୀର୍ଯ୍ୟେ ଦୁର୍ଗେ ଦୁର୍ଗ ପରାକ୍ରମେ
ସକଳ ନିଷ୍କଳ ଦେବୀ କାଳାତୀତ ନମସ୍ତୁତେ
ଯୋଗାଧିପ ଯୋଗଗମ୍ୟ ଯୋଗାମ୍ନା ଯୋଗ ସମ୍ଭବଃ
ରମଣେ ଦେବୀ ଦୁର୍ଗେଷୁ ଦୁର୍ଗେଶ୍ୱରୀ ନମସ୍ତୁତେ ।'

ସମୟକ୍ରମେ ସମସ୍ତ ପ୍ରତୀତ ଜନଙ୍କର ସମସ୍ତ ବାଧା ଅପହରଣ କରୁଥିବାରୁ ସେ 'ଦୁର୍ଗା' ନାମରେ ନାମିତ ହେଲେ ବୋଲି ମତ ପ୍ରକାଶ ପାଇଲା । ପ୍ରଭାତରୁ ତାଙ୍କ ନାମ ଉଚ୍ଚାରଣ କଲେ ସମସ୍ତ ବାଧା ସୂର୍ଯ୍ୟଙ୍କ ଉଦୟରେ ଅନ୍ଧକାର ବିନାଶ ହେଲା ଭଳି ବିନାଶ ହୁଏ ବୋଲି ଶାସ୍ତ୍ର ବାକ୍ୟ ଉଦ୍‌ଭବ ହେଲା । ତାଙ୍କର ନାମ ଉଚ୍ଚାରଣରେ ସମସ୍ତ ପ୍ରକାର ବାଧା ଦୂରୀଭୂତ ହୁଏ ବୋଲି 'ଶବ୍ଦ କଳ୍ପଦ୍ରୁମ' ଶାସ୍ତ୍ର ସିଦ୍ଧାନ୍ତ ନେଲେ । ଶାସ୍ତ୍ର ବର୍ଣ୍ଣନା ଅନୁସାରେ-

ଦୁର୍ଗୋ ଦୈତ୍ୟେ ମହାବିଘ୍ନୋ ଭବ ବନ୍ଧେ କୁକର୍ମଣି
ଶୋକେ ଦୁଃଖେ ଚ ନରକେ ଯମଦଣ୍ଡେଚଜନ୍ମନି
ମହାଭୟେତି ରୋଗେ ଚାପ୍ୟା ଶବନୌହନ୍ତୁବାଚକଃ
ଏତାନ ହତନ୍ତ୍ୟବ ଯା ଦେବୀ ସା ଦୁର୍ଗା ପରୀକୀର୍ତ୍ତିତା ।

ଶ୍ରୀ ଅରବିନ୍ଦ ଦର୍ଶନର ସାଧକମାନେ ଉମା, ପାର୍ବତୀ, ଗୌରୀ, ଦୁର୍ଗା ପ୍ରଭୃତି ଏତେ ନାମ ସ୍ମରଣ, ଜପ କରିବା ଅପେକ୍ଷା କେବଳ 'ମା' ନାମ ଜପ କରିବା ଶ୍ରେୟସ୍କର ବୋଲି ମତ ଦେଇଥାନ୍ତି । ସେମାନଙ୍କ ମତରେ 'ମ' ଶବ୍ଦ ଆନନ୍ଦ ପ୍ରବର୍ଦ୍ଧକ ଓ ଏଥିରେ ସମ୍ପୃକ୍ତ 'ା' (ଆ ଫଳା) ସମସ୍ତ ବାଧା ପ୍ରତିହତକାରିଣୀ ।

ପୌରାଣିକ ଉପାଖ୍ୟାନ ଅନୁସାରେ ମହିଷାସୁରର ନିଧନ ପାଇଁ ସମସ୍ତ ଦୈବୀ ତତ୍ତ୍ୱ ଓ ଶକ୍ତିର ସମନ୍ୱୟରେ ଅଗ୍ନିଶତ ସ୍ୱରୂପା ମା' ଦୁର୍ଗାଙ୍କର ଆବିର୍ଭାବ ହୋଇଥିଲା । ଏହି ତତ୍ତ୍ୱ ଓଡ଼ିଶାରେ ପ୍ରଚଳିତ ବିଭିନ୍ନ ଧର୍ମ ଧାରଣାକୁ ବହୁ ପରିମାଣରେ ସମନ୍ୱିତ କରିପାରିଛି ।

ଓଡ଼ିଶାର ରାଷ୍ଟ୍ର ଦେବତା ଓ ଇଷ୍ଟ ଦେବତା ହେଉଛନ୍ତି ଅବତାରୀ ମହାବିଷ୍ଣୁ ଶ୍ରୀଜଗନ୍ନାଥ । ଶାକ୍ତ ଉପାସନାର ସମନ୍ୱିତ ସ୍ୱର ଶ୍ରୀଜଗନ୍ନାଥଙ୍କ ଉପାସନାରେ ବାରମ୍ବାର ଅନୁରଣିତ ହୋଇ ଉଠିଛି । ଏହାଛଡ଼ା ଶୈବ ଶାକ୍ତ ଉପାସନା ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ମହାଶକ୍ତି ଓ ମହାବିଷ୍ଣୁଙ୍କର ନାମ କର୍ମ ଓ ଗୁଣ ଦିଗରୁ ଏହି ସମନ୍ୱୟ ଅନ୍ତଃସଲୀଳା ସରସ୍ୱତୀ ଭଳି ପ୍ରବାହିତ ।

ରାମକୃଷ୍ଣ ପରମହଂସଙ୍କ ମତରେ ଯୁଗ ଅନୁସାରେ ଶ୍ୟାମ ଶ୍ୟାମା ରୂପରେ ଅବତୀର୍ଣ୍ଣ ହୋଇଥାନ୍ତି । ଯେ ଶ୍ୟାମା ସେହି ଶ୍ୟାମ ଅନ୍ତର୍ଦୃଷ୍ଟିହୀନ ଅବୋଧ ମାନବ ବିଷୟାନ୍ଧ ଜୀବ ଉଭୟଙ୍କୁ ଭିନ୍ନ ଭିନ୍ନ ମନେ କରେ । ଗୀତା (୧୧ଶ ଅଧ୍ୟାୟ) ବର୍ଣ୍ଣନା ଅନୁସାରେ ଶ୍ରୀକୃଷ୍ଣ ହେଉଛନ୍ତି କାଳର କାଳ ମହାକାଳ । ସେ ତାଙ୍କର ଜଗନମୋହିନୀ ମହାମାୟା ଶକ୍ତିଙ୍କ ବଳରେ ସୃଷ୍ଟି, ସ୍ଥିତି ଓ ଲୟ କରନ୍ତି । ତେଣୁ ମହାକାଳ ମହାକାଳୀଙ୍କ ମଧ୍ୟରେ ସମନ୍ୱୟ ବ୍ୟତୀତ ସୃଷ୍ଟି ସର୍ଜନା ଅସମ୍ଭବ ।

ଶ୍ରୀକୃଷ୍ଣ ହେଉଛନ୍ତି ଯୋଗେଶ୍ୱର (ଯତ୍ର ଯୋଗେଶ୍ୱର କୃଷ୍ଣ ଯତ୍ର ପାର୍ଥ ଧନୁର୍ଦ୍ଧର ଗୀତା ଅଷ୍ଟାଦଶ ଅଧ୍ୟାୟ ଶେଷ ଶ୍ଳୋକ) । ଅପରପକ୍ଷରେ ମହାଶକ୍ତି ହେଉଛନ୍ତି 'ଯୋଗାଧିୟ, ଯୋଗାମ୍ନା, ଯୋଗସମ୍ଭବ' (ଦେବୀ ପୁରାଣ) ଉଭୟେ ସର୍ବନାମ । ତେଣୁ ଭକ୍ତ କେଉଁ ନାମରେ ତାଙ୍କୁ ଉପାସନା କରିବ ତାହା ଭକ୍ତର ଇଚ୍ଛାଧୀନ । ସେମାନଙ୍କ ନାମ ବିଷୟରେ ତଥା ବୀଜ ମନ୍ତ୍ର ବିଷୟରେ (କ୍ଲୀଂ ଶବ୍ଦ) ଏଭଳି ଅଜସ୍ର ଉଦାହରଣ ନିଆଯାଇପାରେ ।

ଗୁଣ ଦିଗରୁ ଉଭୟଙ୍କ ମଧ୍ୟରେ ଅଭେଦତ୍ୱ ସତତ ବିଦ୍ୟମାନ । ଉଭୟ ଗୁଣାତ୍ମକ ଦିଗରୁ ଭକ୍ତ ପ୍ରିୟ । ଭଗବତୀ (ବନଦୁର୍ଗା)ଙ୍କ ଧ୍ୟାନରେ ସେ 'ସର୍ବକାମପ୍ରଦାଂ ଦୁର୍ଗାଂ ବରଦାଂ ଭକ୍ତ ବତ୍ସଳାଂ' । ଅନୁରୂପ ଗୁଣ ବିଶେଷ ସହସ୍ର ନାମ ମହାବିଷ୍ଣୁଙ୍କ ଉଦ୍ଦେଶ୍ୟରେ ମଧ୍ୟ ପ୍ରକଟିତ ହୋଇଛି । ସେ ମାଧବୋ ଭକ୍ତ ବତ୍ସଳଃ (ଶ୍ଳୋକ) । ବନଦୁର୍ଗାଙ୍କ ଧ୍ୟାନରେ ଶାକ୍ତ ସଂସ୍କୃତିରେ ବୈଷ୍ଣବୀୟ ଆୟୁଧ (ଚତୁର୍ଭୁଜାଂ ଶଙ୍ଖ ଚକ୍ରଂ ଧରାଂ ବାନାସ୍ୱରୂପିଣୀ) ସହିତ ଶିବଙ୍କ ସ୍ୱରୂପ (ତ୍ରିନେତ୍ରାଂ, ଅର୍ଦ୍ଧେନ୍ଦୁ କୃତ ଶେଖରା) ଓ ଶିବ ଆୟୁଧ (ଉଦ୍ୟତ ତ୍ରିଶୂଳ)ଙ୍କ ଆୟୁଧର ଆଭାସ ଶାକ୍ତ ସଂସ୍କୃତିକୁ ଅଧିକ ସମନ୍ୱୟ ପନ୍ଥୀ କରିଛି । ତେବେ କେତେକ ସମାଲୋଚକ ଭଗବତୀଙ୍କର ମହିଷାସୁର, ଚଣ୍ଡମୁଣ୍ଡ ପ୍ରଭୃତିଙ୍କର ବଧ ଉପାଖ୍ୟାନକୁ ଭିତ୍ତିକରି ମହାଶକ୍ତି ଭକ୍ତ ବତ୍ସଳା ନୁହନ୍ତି ବୋଲି ମତ ଦେଇଥାନ୍ତି । ବିଭିନ୍ନ ଅସୁର ସେମାନଙ୍କର ପ୍ରଗାଢ଼ ଭକ୍ତି ନିଷ୍ଠାଯୁକ୍ତ ତପସ୍ୟା ଫଳରେ ବିଭିନ୍ନ ଦେବତାଙ୍କୁ ପ୍ରୀତ କରି ବର ପ୍ରାପ୍ତ ହୋଇଥିଲେ । ବ୍ରହ୍ମା, ଶିବ ପ୍ରଭୃତି ଏହି ମହାଶକ୍ତିଙ୍କର ଅଂଶ ବିଶେଷ । ଯଦି ମହାଶକ୍ତି ଭକ୍ତ ବତ୍ସଳା ତେବେ ସେ ଅସୁରମାନଙ୍କୁ ନିଧନ କଲେ କିଭଳି ?

ଏହାର ଉତ୍ତରରେ କୁହାଯାଇପାରେ ବିଶ୍ୱଜନନୀ ସର୍ବଦା ବିଶ୍ୱର କଲ୍ୟାଣ କାମନା କରିଥାନ୍ତି । ହେଲେ ତାଙ୍କର କୌଣସି ସନ୍ତାନ ଏହି କଲ୍ୟାଣ ପଥରେ କଣ୍ଟକ ହେଲେ ସେ ତାକୁ ବଜ୍ର କଠୋର ହସ୍ତରେ ଦମନ କରିଥାନ୍ତି । ତେଣୁ ଅବାଧ୍ୟ ସନ୍ତାନଙ୍କ ସହିତ ଯୁଦ୍ଧ କଲାବେଳେ ଚଣ୍ଡୀର ବର୍ଣ୍ଣନା ଅନୁସାରେ

'ଚିତ୍ତେ କୃପା ସମରେ ନିଷ୍ଠୁରତା' ଏହି ଭାବ ମାତା ପ୍ରଦର୍ଶନ କରିଥିଲେ । ଅନୁରୂପ ଭାବେ ଭଗବାନ ଶ୍ରୀକୃଷ୍ଣ ପୁତନା, ବକା, ଅଘା, କଂସ ପ୍ରଭୃତି ଯାହାକୁ ମାରିଛନ୍ତି ତାଙ୍କୁ ମୁକ୍ତି ପ୍ରଦାନ କରିଛନ୍ତି ।

ଦୁଷ୍ଟମାନଙ୍କୁ ବିନାଶ, ସନ୍ଥମାନଙ୍କୁ ସଂସ୍ଥାନ ତଥା ପୁନଃ ଧର୍ମର ସ୍ଥାପନ ପାଇଁ ମହାଶକ୍ତି ଦୁର୍ଗା ତଥା ମହାବିଷ୍ଣୁ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କର ଏହି ପୃଥିବୀରେ ଆବିର୍ଭାବ । ଶ୍ରୀମଦ୍‌ଭଗବତ

ଗୀତାରେ ଶ୍ରୀକୃଷ୍ଣ ଏହି ସତ୍ୟକୁ 'ଯଦା ଯଦାହି ଧର୍ମସ୍ୟ ...' ଶ୍ଳୋକରେ ପ୍ରକାଶ କଲାଭଳି ସପ୍ତଶତୀ ଚଣ୍ଡୀରେ ମଧ ଏହି ସତ୍ୟ ସ୍ୱମୁଖରେ ମହାଶକ୍ତି ପ୍ରକାଶ କରିଛନ୍ତି -

'ଇତ୍ଥଂ ଯଦା ଯଦା ବଧ ଦାନବାମ୍ରା ଭବିଷ୍ୟତି
ତଦା ତଦାବ୍ତୀର୍ଯ୍ୟାହଂ କରିଷ୍ୟାମ୍ୟରି ସଂକ୍ଷୟମ ।'

ମହାଶକ୍ତି ଓ ମହାବିଷ୍ଣୁଙ୍କର ଏହି ପୃଥିବୀକୁ ଆଗମନ ଲୋକଶିକ୍ଷା ଓ ଲୋକ ସଂଗ୍ରହ ଉଦ୍ଦେଶ୍ୟରେ । ଭାଗବତରେ ବର୍ଣ୍ଣିତ ଉପାଖ୍ୟାନ ଅନୁସାରେ ଭଗବାନ ଦୁଷ୍ଟ ଶକ୍ତିଙ୍କର ବିନାଶ ପାଇଁ ବଳରାମଙ୍କୁ ରୋହିଣୀଙ୍କ ଗର୍ଭରେ ସ୍ଥାପନ ତଥା ନିଜକୁ ଗୋପପୁରରେ ପହଞ୍ଚାଇ ବିଜୁଳି କନ୍ୟାକୁ ଆଣିବାର ଉପାଖ୍ୟାନ ପ୍ରଭୃତି ସୃଷ୍ଟି କଲ୍ୟାଣ ପାଇଁ ଉଭୟଙ୍କର ସମ୍ମିଳିତ ଚେଷ୍ଟାର ସୂଚନା ଦେଇଥାଏ ।

ଏକଦା ପୃଥିବୀରେ ଭୀଷଣ ଶସ୍ୟ ଅନଟନ ପଡ଼ିଥିବା ବେଳେ ଦେବୀ ଦୁର୍ଗା କେବଳ ଶାଗ ଭକ୍ଷଣ କରି ଜୀବନ ଧାରଣ କରିଥିବାରୁ ତାଙ୍କ ନାମ ଶାକମ୍ବରୀ ହୋଇଥିଲା । ଏହି ଘଟଣା ଲୋକ ଶିକ୍ଷା ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ।

ଏହି ବିଶ୍ଳେଷଣରୁ ଜଣାପଡ଼େ ଉଭୟ ମହାଶକ୍ତି ପରସ୍ପରର ଅନୁପୂରକ ପରିପୂରକ । ଆଉ କେତେକ ଏହା ଏକ ଶକ୍ତିଙ୍କର ଭିନ୍ନ ଭିନ୍ନ ରୂପ ତଥା ପରିପ୍ରକାଶ ବୋଲି ମତ ଦେଇଥାନ୍ତି । ତେଣୁ କୁହାଯାଇଛି,

ଏକୈକା ଶକ୍ତି ପରମେଶ୍ୱରସ୍ୟ, ଭିନ୍ନ ଚତୁର୍ଦ୍ଧା ବିନିଯୋଗ କାଳେ ଭୋଗେ ଭବାନୀ, ପୁରୁଷେଷୁ ବିଷ୍ଣୁ, କୋପେଚ କାଳୀ ସମରେତୁ ଦୁର୍ଗା ।

ଅନୁଭବ, ସିଦ୍ଧିର ବୈଷମ୍ୟ, ଭୌଗଳିକ ପରିବେଶ ଓ ଜୀବନ ଶୈଳୀର ବିଭିନ୍ନତା ନେଇ ସମୟକ୍ରମେ ହିନ୍ଦୁଧର୍ମର ପରିବ୍ୟାପ୍ତ ବିଶାଳତା ମଧ୍ୟରେ ବିଭିନ୍ନ ଦର୍ଶନଭିତ୍ତିକ ସମ୍ପ୍ରଦାୟର ଉଦ୍‌ଭବ ଓ ସେମାନଙ୍କ ଭିନ୍ନ ଭିନ୍ନ ଅର୍ଚ୍ଚନା ଶୈଳୀର ବିକାଶ ଘଟିଥିଲା । ତେବେ ଏ ସମସ୍ତ ଅର୍ଚ୍ଚନା ପଦ୍ଧତି ମଧ୍ୟରେ ଏକ ଅଦୃଶ୍ୟ ତତ୍ତ୍ୱ ଓ ଭାବାବେଗର ସ୍ନାୟୁ ସୂତ୍ର ରହିଛି ଏହା ଅନୁଧ୍ୟାନ କଲେ ଜଣାପଡ଼େ । ଏହି ସ୍ନାୟୁସୂତ୍ରର ନାଭିସ୍ନାୟୁ ହେଉଛନ୍ତି ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ଏହାର ପ୍ରୟୋଗ ଶାଳା ଓ ପରୀକ୍ଷାଶାଳା ହେଉଛି ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିର ।

ଶାକ୍ତ ଉପାସନା ଶ୍ରୀଜଗନ୍ନାଥଙ୍କ ଉପାସନା ସହିତ ଘନିଷ୍ଠ ଭାବେ ଜଡ଼ିତ 'ବାମଦେବ ସଂହିତା'ର ବର୍ଣ୍ଣନା ଅନୁସାରେ ମନ୍ଦିର ନିର୍ମାଣ ପରେ ବିଗ୍ରହମାନଙ୍କର ପ୍ରତିଷ୍ଠା ପାଇଁ ବ୍ରହ୍ମା ପହଞ୍ଚିବା ପରେ (ଏବେ ମଧ ଏହାର ସ୍ମାରକୀ ରୂପେ ବ୍ରହ୍ମାଙ୍କର ପାଦଚିହ୍ନ ବିମଳା ମନ୍ଦିର ଆଗ ସାମନା ରୋହିଣୀକୁଣ୍ଡ ନିକଟରେ ଅର୍ଚ୍ଚିତ) ସିଂହାସନ ଦାୟିତ୍ୱରେ ଥିବା କେରଣ୍ଡ (ଠିଆ ଠିଆ ହୋଇଥିବା ମୁଣ୍ଡର ବାଳ) କେଶ, ସ୍ୱର୍ଗ ବିଭୂଷିତ, କଜ୍ଜ କଜ୍ଜାନ୍ତ ଦହନକ୍ଷମ କ୍ଷେତ୍ରପାଳ ଭୈରବଙ୍କର ଅନୁମତି ଭିକ୍ଷା କରିଥିଲେ । ଏଥିରୁ ଜଣାଯାଏ ଶ୍ରୀକ୍ଷେତ୍ର, ଶ୍ରୀମନ୍ଦିର ତଥା ରତ୍ନସିଂହାସନ ରକ୍ଷଣ ଦାୟିତ୍ୱ ଭୈରବଙ୍କ ଉପରେ ନ୍ୟସ୍ତ ଥିଲା । ଶ୍ରୀମନ୍ଦିର ଗର୍ଭ ଗୃହସ୍ଥ ସିଂହାସନ ପାର୍ଶ୍ୱରେ ଅଷ୍ଟାଦଶ ଶତାବ୍ଦୀ ଯାଏ ଭୈରବ ଉପାସିତ ହେଉଥିଲେ ଏହା ଇତିହାସରୁ ଜଣାଯାଏ । ବୈଷ୍ଣବମାନଙ୍କ ପ୍ରଭାବ ବୃଦ୍ଧି ପାଇବା ଫଳରେ ଅଷ୍ଟାଦଶ ଶତାବ୍ଦୀରେ ଏହି ଭୈରବ ବିଗ୍ରହ ବୈଷ୍ଣବମାନେ ଭାଙ୍ଗି ଦେଇଥିଲେ ଓ ଏଥିପାଇଁ ବହୁଦିନ ଧରି ମରହଟ୍ଟା ଦରବାରରେ ମୋକଦ୍ଦମା ଚାଲିଥିଲା ଏହା ଇତିହାସ ସମର୍ଥିତ ଘଟଣା ।

ତନ୍ତ୍ର ଓ ଶାକ୍ତ ଧର୍ମରେ ଭୈରବଙ୍କୁ ବହୁମାନ୍ୟତା ଦିଆଯାଇଥାଏ । ଶ୍ରୀମନ୍ଦିର ସୂର୍ଯ୍ୟ ପିଣ୍ଡି (ମୁକ୍ତି ମଣ୍ଡପ) ସନ୍ନିକଟ ଏକ କ୍ଷୁଦ୍ର ଗୃହରେ ବର୍ତ୍ତମାନ ଭୈରବ ଉପାସିତ ହେଉଛନ୍ତି । ଏହାଛଡ଼ା ମୁକ୍ତିମଣ୍ଡପ ପୃଷ୍ଠଭାଗ ଦକ୍ଷିଣ ଦିଗରେ 'କ୍ଷେତ୍ରପାଳ ଶିବ'ଙ୍କର ମନ୍ଦିର ରହିଛି । ଏହି ମନ୍ଦିରରେ ଶିବ ଶକ୍ତି ମୁକ୍ତ ଲିଙ୍ଗ ଉପାସିତ ହେଉଛନ୍ତି । ମାତ୍ର ଏହି ମନ୍ଦିରର ପୃଷ୍ଠଦେଶ କାନ୍ଥରେ ଯେଉଁ ଚିତ୍ର ଅଙ୍କିତ ହୋଇଛି ତାହା ଶିବଙ୍କର ଭୈରବ ସ୍ୱରୂପୀ ଭୟ ଉଦ୍ରେକକାରୀ ଚିତ୍ର ।

ନବମ/ଦଶମ ଶତାବ୍ଦୀ ବେଳକୁ ତନ୍ତ୍ର ଲାଗି ସାରା ଭାରତରେ ପ୍ରସିଦ୍ଧି ଲାଭ କରିଥିବା ଉଡ୍ଡୀୟାନ (ବର୍ତ୍ତମାନର ଓଡ଼ିଶା) ପୀଠରେ ଶ୍ରୀଜଗନ୍ନାଥ ଓ ବିମଳା ଯଥାକ୍ରମେ ଭୈରବ ଓ ଭୈରବୀ ରୂପେ ଉପାସିତ ହୋଇ ଉଭୟଙ୍କ ମଧ୍ୟରେ ଥିବା ମୂଳକୁ ପ୍ରତିଷ୍ଠା କରି ସାରିଥିଲେ । ମାତ୍ର ମହାନିର୍ବାଣ ମନ୍ତ୍ର ରଚନା ସମୟକୁ ଶ୍ରୀଜଗନ୍ନାଥ ସ୍ୱୟଂ ଦକ୍ଷିଣ କାଳିକା ବଳଭଦ୍ର ଉଗ୍ରତାରା ଏବଂ ସୁଭଦ୍ରା ଭୁବନେଶ୍ୱରୀ ଭାବେ ସ୍ୱୀକୃତ ହେଲେଣି । ମହାନିର୍ବାଣ ତନ୍ତ୍ରର ବର୍ଣ୍ଣନା ଅନୁସାରେ-

'ଉଗ୍ରତାରା ଶୂଳପାଣି ସୁଭଦ୍ରା ଭୁବନେଶ୍ୱରୀ
ନୀଳାଦ୍ରୌ ତୁ ଜଗନ୍ନାଥଃ ସାକ୍ଷାତ ଦକ୍ଷିଣକାଳିକା ।'

ଶ୍ଳୋକଟିର ଦ୍ୱିତୀୟ ପାଦରେ ଥିବା 'ତୁ' ପ୍ରୟୋଗରୁ ଏହା ନିର୍ଦ୍ଦିଷ୍ଟ ଭାବେ ନୀଳାଦ୍ରିରେ ଥିବା ଜଗନ୍ନାଥ ଯେ ଦକ୍ଷିଣ କାଳିକା ଏହି ସତ୍ୟକୁ ପ୍ରତିଷ୍ଠା କରୁଅଛି ।

ଏହି ତତ୍ତ୍ୱର ପୃଷ୍ଠଭୂମି ବିଶ୍ଳେଷଣ କରି ପଣ୍ଡିତମାନେ କହନ୍ତି ଶ୍ରୀମନ୍ଦିର, ଶ୍ରୀକ୍ଷେତ୍ରବାସୀ ତଥା ସେବାୟତମାନଙ୍କ ପାଇଁ ଏବେ ମଧ ଦକ୍ଷିଣ କାଳିକା ପରମ ଆରାଧ୍ୟା ଦେବୀ । ଏହି ଦେବୀଙ୍କର ଶ୍ରୀଜଗନ୍ନାଥଙ୍କ ସହିତ ସଂପର୍କ ଅଭିନ୍ନ । ଶ୍ରୀମନ୍ଦିର ଜଗମୋହନରେ ଥିବା ଗରୁଡ଼ସ୍ତମ୍ଭର ଦକ୍ଷିଣ ପାର୍ଶ୍ୱରେ ଥିବା ସ୍ତମ୍ଭରେ ଏକ କ୍ଷୁଦ୍ର ମନ୍ଦିର (ଠଣା)ରେ ଅଳ୍ପଦିନ ତଳେ ଦକ୍ଷିଣକାଳୀଙ୍କର ଏକ ଦକ୍ଷିଣାଭିମୁଖୀ କ୍ଷୁଦ୍ର ବିଗ୍ରହ ସ୍ଥାପିତ ହୋଇଛି । ଏହା ଶ୍ରୀକ୍ଷେତ୍ରବାସୀଙ୍କର ଦେବୀଙ୍କ ପ୍ରତି ଥିବା ନିଷ୍ଠାର ପ୍ରକାଶକ ।

କେତେକ ବର୍ତ୍ତମାନ ଶ୍ରୀମନ୍ଦିର ପରିସର ଭିତରେ ଥିବା ଭଣ୍ଡାରଘର (ଅମୁହାଁ ଦେଉଳ, ନାହିକଟା ମଣ୍ଡପ ନିକଟସ୍ଥ) ଦ୍ୱିତୀୟା-ତୃତୀୟା ଶତକରେ ନିର୍ମିତ ଏକ ମନ୍ଦିରର ମୂଳଦୁଆ ଉପରେ ପରେ ନିର୍ମିତ ହୋଇଛି ବୋଲି ମତ ଦେଇଥାନ୍ତି । ଏହି ବିଧ୍ୱସ୍ତ ମନ୍ଦିରର ବର୍ତ୍ତମାନ ଥିବା ମୂଳଦୁଆକୁ ଅନୁଧ୍ୟାନ କଲେ ଏହା ଏକ ଉନ୍ନତ ମନ୍ଦିର ଥିବାର ଅନୁମିତ ହୁଏ ।

ଏହି ମନ୍ଦିରରେ ଦକ୍ଷିଣକାଳୀ ଉପାସିତ ହେଉଥିଲେ ବୋଲି ବରିଷ୍ଠ ପଣ୍ଡିତମାନେ ମତ ଦେଇଥାନ୍ତି । ସମୟକ୍ରମେ ମନ୍ଦିର ଭାଙ୍ଗି ଯିବାରୁ ବା ଅନ୍ୟାନ୍ୟ କାରଣରୁ ଅର୍ଚ୍ଚିତ ବିଗ୍ରହ ବର୍ତ୍ତମାନର କାଳୀକା ଦେବୀ ସାହିସ୍ଥିତ ମନ୍ଦିରକୁ ସ୍ଥାନାନ୍ତରିତ ହୋଇଥିଲେ । ଶ୍ରୀମନ୍ଦିର ଭିତରର ଏହି ମନ୍ଦିର ଦକ୍ଷିଣାଭିମୁଖୀ ଥିବାର ପ୍ରମାଣ ଏବେ ମଧ୍ୟ ବିଦ୍ୟମାନ । ଅତୀତରେ ଥିବା ମନ୍ଦିରର ବର୍ହିଦ୍ୱାର ଦୁଇପଟରେ ମନ୍ଦିର ଉଚ୍ଚତାକୁ ବିଚାର କରି ମଧ୍ୟମ ଉଚ୍ଚତାର ଦୁଇଟି ସିଂହ ଦୁଇପଟେ ଥିଲେ । ଏହି ସିଂହଦ୍ୱୟ ଏବେ ମାଜଣା ମଣ୍ଡପର କିଞ୍ଚିତ ପଶ୍ଚିମରେ ଓ ଦକ୍ଷିଣଘର (ବିଜେ ପ୍ରତିମା ଅର୍ଚ୍ଚିତ ଗୃହର) କିଞ୍ଚିତ ପୂର୍ବ ଭାଗରେ ଶୋଭା ପାଉଛନ୍ତି । ଏହି ମନ୍ଦିରର ଅବସ୍ଥିତି ବର୍ତ୍ତମାନର ମୁକ୍ତିମଣ୍ଡପ ସମ୍ମୁଖସ୍ଥ ଭଣ୍ଡାର (ଗୁପ୍ତ) ଘର ମଧ୍ୟରେ ଥିବାର ଅନୁମିତ ହୁଏ ।

ଦ୍ୱିତୀୟ ଶତାବ୍ଦୀ ବେଳକୁ ବାଇଶି ପାହାଚ ନିର୍ମିତ ହୋଇ ନଥିଲା । ଏହି ସମୟରେ ବର୍ତ୍ତମାନର ଆନନ୍ଦ ବଜାର ଶେଷରେ ଥିବା ଦକ୍ଷିଣାଭିମୁଖୀ (ବର୍ତ୍ତମାନର ବିଜେ) ଦ୍ୱାର ଯିବା ଆସିବାର ପ୍ରମୁଖ ପଥ ଥିଲା । ଏହି ଦ୍ୱାର ଦେଇ ରାଜା ଓ ଆଚାର୍ଯ୍ୟମାନେ ଯିବା ଆସିବା କରୁଥିଲେ । ଏହି ଦକ୍ଷିଣ ପଥ ଦେଇ ଦେବତାମାନେ ମଧ୍ୟ ବାହାରକୁ ବିଜେ କରୁଥିଲେ, ଯେଉଁ ପ୍ରଥା ଏବେ ମଧ୍ୟ ପ୍ରଚଳିତ ରହିଛି । ଏହି ବର୍ହି ଦ୍ୱାର ଦୁଇ ପଟେ ଦୁଇଗୋଟି ବିରାଟକାୟ ସିଂହ (ସିଂହଦ୍ୱାରସ୍ଥ ସିଂହ ଅନୁରୂପ) ଏବେ ମଧ୍ୟ ସାଧାରଣ ଦର୍ଶକଙ୍କର ଦୃଷ୍ଟି ଅନ୍ତରାଳରେ ବିଦ୍ୟମାନ । ସେହି ସମୟରେ ଭୋଗ ବ୍ୟବସ୍ଥାକୁ ଅନୁଶୀଳନ କଲେ ବର୍ତ୍ତମାନ ଭଳି ରୋଷଘରର ଆବଶ୍ୟକତା ନଥିଲା । ତେଣୁ ନିର୍ମିତ ହୋଇନଥିଲା । ଏହା ବାହାରକୁ ଯିବାର ପ୍ରଧାନ ପଥ ଥିବାରୁ ସମୟକ୍ରମେ ଉଦ୍‌ଭବ ହେଲା -

'ଐଶାନ୍ୟ ମାର୍ଗଂ ଯାତ୍ରାୟାଂ ସର୍ବଦା ସୁଖ ଦାୟକଃ ।'

ମନ୍ଦିର ସ୍ଥାପତ୍ୟ ବ୍ୟତୀତ ଦକ୍ଷିଣକାଳୀକାଙ୍କର ନିତ୍ୟ ଓ ନୈମିତ୍ତିକ ନୀତିରେ ଶ୍ରୀମନ୍ଦିର ତଥା ଶ୍ରୀଜଗନ୍ନାଥଙ୍କର ଅନନ୍ୟ ପ୍ରଭାବ ପରିଲକ୍ଷିତ ହୁଏ । ବିଭିନ୍ନ ବେଶ ମଇଲମ ପରେ ଶ୍ରୀଅଙ୍ଗରୁ ବାହାରୁଥିବା ମାଳ ଫୁଲ ପ୍ରଥମେ ଦକ୍ଷିଣକାଳୀଙ୍କର ପ୍ରାପ୍ୟ । ଦକ୍ଷିଣ କାଳୀଙ୍କର ଭୋଗ ଖଞ୍ଜା ପ୍ରତ୍ୟହ ଶ୍ରୀମନ୍ଦିରରୁ ଯାଇଥାଏ । ବାସନ୍ତିକ ତଥା ଶାରଦୀୟ ଦୁର୍ଗାପୂଜା, ସପ୍ତପୁରୀ ଅମାବାସ୍ୟା ତଥା ଅନ୍ୟାନ୍ୟ କେତେକ ପର୍ବରେ ଶ୍ରୀମନ୍ଦିର ନୀତି ପରମ୍ପରାରେ ଦକ୍ଷିଣ କାଳୀଙ୍କର ପ୍ରାଧାନ୍ୟ ସ୍ପଷ୍ଟ ଜଣାପଡ଼େ ।

ତେଣୁ ମହାପ୍ରଭୁ ଶ୍ରୀପୁରୁଷୋତ୍ତମ ଜଗନ୍ନାଥ ବୈଷ୍ଣବୀୟ ସ୍ୱରରେ ଆପ୍ଲୁତ ହେବା ପୂର୍ବରୁ ଦ୍ୱିତୀୟ ତୃତୀୟ ଶତାବ୍ଦୀରେ ନିର୍ମିତ ମନ୍ଦିରରେ ଶାକ୍ତ (ଦକ୍ଷିଣ କାଳିକା) ଦେବୀ ଭାବେ ଉପାସିତ ହେଉଥିଲେ । ମାତ୍ର ଦ୍ୱାଦଶ ଶତାବ୍ଦୀ ବେଳକୁ ବୈଷ୍ଣବୀୟ ପ୍ରଭାବରେ ଏହି ଶାକ୍ତ ଦେବୀଙ୍କୁ ମହାବିଷ୍ଣୁଙ୍କ ସହିତ ଅଭେଦ ସମ୍ବନ୍ଧାନ୍ୱିତ କରାଗଲା ।

ସମ୍ଭବତଃ ଅଷ୍ଟମ ଶତାବ୍ଦୀ ପୂର୍ବରୁ ଏହି ଶାକ୍ତ ଦେବୀଙ୍କୁ ସ୍ଥାନାନ୍ତରିତ କରାଯାଇଥିଲା । କାରଣ ସପ୍ତମ ଶତାବ୍ଦୀ ବେଳକୁ ସାରା ପୂର୍ବ ଭାରତରେ ମାଧବ ଉପାସନାର ପ୍ରାବଲ୍ୟ ଦେଖାଯାଇଥିଲା ।

ବୈଷ୍ଣବଙ୍କ ପ୍ରଭାବରେ ଦକ୍ଷିଣକାଳିକାଙ୍କୁ ସ୍ଥାନାନ୍ତର କରାଗଲେ ମଧ୍ୟ ଜନମାନସରୁ ତାଙ୍କ ପ୍ରାଧାନ୍ୟ ହ୍ରାସ ପାଇ ନଥିଲା । ତେଣୁ ସମୟକ୍ରମେ ପ୍ରାଚୀନ ଓ ନବନିର୍ମିତ ମନ୍ଦିର (ବର୍ତ୍ତମାନର ଦୃଶ୍ୟମାନ ଶ୍ରୀମନ୍ଦିର) ଉପାସନା ପୀଠ (ରତ୍ନସିଂହାସନ)ର ମଧ୍ୟସ୍ଥଳୀରେ ଦକ୍ଷିଣ କାଳିକାଙ୍କ ଭଳି ଉଗ୍ରତତ୍ତ୍ୱକୁ ସ୍ଥାପନ ନ କରି ସୁଭଦ୍ରାଙ୍କୁ ସ୍ଥାପନା କରାଗଲା । ଅପ୍ରତିହତ ଶାକ୍ତ ଓ ବୈଷ୍ଣବୀୟ ପ୍ରଭାବର ସଂଘର୍ଷ ଯୋଗୁଁ ସେ ନିରାମିଷାଶୀ (ସମୟକ୍ରମେ ବିଧବା) ଭୁବନେଶ୍ୱରୀ ଭାବେ ଗୃହୀତ ହେଲେ ଓ ସେହି ମନ୍ତ୍ରରେ ଉପାସିତ ହେଲେ ଯେଉଁ ପ୍ରଥା ଏବେ ମଧ୍ୟ ପ୍ରଚଳିତ ରହିଛି ।

ଏସବୁ ସତ୍ତ୍ୱେ ମଧ୍ୟ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ସୁଭଦ୍ରାଙ୍କ ଉପାସନାରେ ଉଗ୍ର ତାନ୍ତ୍ରିକ ପ୍ରଭାବ 'ଭଗ୍ନୀ ସ୍ତ୍ରୀ ପ୍ରବର୍ତ୍ତିକା' ତତ୍ତ୍ୱ ପ୍ରଚ୍ଛନ୍ନ ଭାବରେ ବିଦ୍ୟମାନ ଥିବାର ଜଣାଯାଏ ।

ତେଣୁ ଶ୍ରୀଜଗନ୍ନାଥଙ୍କ ଉପାସନା ଭିତରେ ଶାକ୍ତ ଉପାସନାର ସମନ୍ୱିତ ସ୍ୱର ଅନୁରଣିତ ହୋଇଥାଏ ।

ଏହି ସଂହତି ଓ ସହନଶୀଳତାର ଅନ୍ୟତମ ପରିପ୍ରକାଶ ହେଉଛି ଶ୍ରୀମନ୍ଦିର ଦୁର୍ଗାମାଧବ ଉପାସନା ଯାହା ଓଡ଼ିଆ ସଂସ୍କୃତିର ସର୍ବଭାରତୀୟ ସଂସ୍କୃତିକୁ ଏକ ମହାନ ଅବଦାନ । ଏଠାରେ ଯେ କୃଷ୍ଣ ସେ ହିଁ କାଳି, ଯେ ଶ୍ୟାମା ସେ ହିଁ ଶ୍ୟାମ । ଗୁପ୍ତ ବା ଶାକ୍ତ ଗୁଣ୍ଡିଚା ଅବସରରେ ପ୍ରଥମ ଆଠଦିନ ଏକା ପ୍ରଭାତର ରୁଣ୍ଡା ହୋଇ ଦୁର୍ଗା ଓ ମାଧବ ବିମଳା ମନ୍ଦିର ଜଗମୋହନରେ ବିଜେ କରିଥାନ୍ତି । ଶେଷ ଆଠଦିନ ସେହିଭଳି ଅବସ୍ଥାନ କରି ନାରାୟଣୀ ମଣ୍ଡପରେ ଶୋଭା ପାଇଥାନ୍ତି । ଦୋଳମଣ୍ଡପ ସାହିର ଏହି ମଣ୍ଡପର ନାମ ନାରାୟଣୀ ମଣ୍ଡପ । ଦୁର୍ଗା ଏଠାରେ ନାରାୟଣୀ ବା ନାରାୟଣଙ୍କର ଶକ୍ତି ସ୍ୱରୂପିଣୀ । ଦଶହରା ଦିନ ଜଗନ୍ନାଥ ବଲ୍ଲଭ ମଠର ବିଜୟ ପଡ଼ିଆରେ ଠାକୁରଙ୍କର ବିଜେ ହେବା ଶାକ୍ତ ବୈଷ୍ଣବ ତତ୍ତ୍ୱ ସମନ୍ୱୟର ଅନ୍ୟତମ ନିଦର୍ଶନ ।

ଉପାଖ୍ୟାନରୁ ଜଣାଯାଏ କାଞ୍ଚି ଅଭିଯାନ ବେଳେ ଗଜପତି ପୁରୁଷୋତ୍ତମ ଦେବ ଶ୍ରୀମନ୍ଦିର ବାହାରବେଢ଼ା (ମେଘନାଦ ପାଚେରୀ) ପଶ୍ଚିମ-ଦକ୍ଷିଣ କୋଣରେ ଥିବା ଦୁର୍ଗାମାଧବଙ୍କର ଉପାସନା କରି ଯୁଦ୍ଧଯାତ୍ରା କରିଥିବାରୁ ବିଜୟଶ୍ରୀ ମଣ୍ଡିତ ହୋଇଥିଲେ ।

ତେଣୁ ସମନ୍ୱୟ ଓ ସଂଯୋଗ ହିଁ ଜୀବନରେ 'ଚରୈବତି' ମନ୍ତ୍ରର ଆବାହନ ସୃଷ୍ଟି କରେ । ସଂହତିର ଅଭାବରେ ଆଜି ରାଷ୍ଟ୍ର ସମାଜ ଦ୍ୱିଧାଗ୍ରସ୍ତ, ବିଭକ୍ତ । ଦୁଷ୍ଟ ଦାନବ ମହିଷାସୁରର ନିଧନ ପାଇଁ ସମସ୍ତ ଦେବଶକ୍ତିର ପୁଞ୍ଜିଭୂତ ସ୍ୱରୂପ ହେଉଛନ୍ତି ମା' ଦୁର୍ଗା । ଏହି ସମନ୍ୱୟର ସ୍ୱର ଶକ୍ତି ଉପାସନାରେ ପ୍ରତ୍ୟକ୍ଷ ଭାବରେ ଉପଲବ୍ଧ ହୋଇଯାଏ । କୁହାଯାଇଛି 'କଳୌ ସଂଘ' ଅର୍ଥାତ୍ କଳିଯୁଗରେ ସଂଘ (ସମ୍ମିଳିତ) ଶକ୍ତି ସବୁଠାରୁ ଫଳପ୍ରସୂ ।

ଆଜି ଶକ୍ତି ଉପାସନାର ଏହି ପ୍ରୀତି ପାର୍ବଣ ଲଗ୍ନରେ ଅସଂହତି ଅସମନ୍ୱୟର ଚଣ୍ଡମୁଣ୍ଡକୁ ପରାହତ କରିବା ଯଥାର୍ଥ ଶକ୍ତି ଉପାସନର ସ୍ୱରୂପ ହେବ । ସମାଜରେ ମୌଳବାଦୀ ଧର୍ମ ଧାରଣାର ଅସଯତ୍ନ ଆଧିପତ୍ୟ ମଣିଷକୁ ଅଧିକ କୁସଂସ୍କାର ଗ୍ରସ୍ତ କରୁଛି ।

ନାରୀ ସଶକ୍ତିକରଣ ନାମରେ ନାରୀର ସ୍ୱର୍ଦ୍ଧାଜନିତ ସ୍ୱକୀୟ ଅହଙ୍କାର ପରିବାର ଓ ସମାଜ ଭିତରେ ମତାନୈକ ସୃଷ୍ଟି କରୁଛି । ଗୁଣାତ୍ମକ ଓ ଋଣାତ୍ମକ ସୂତ୍ରର ସଂଯୋଗରେ ସୃଷ୍ଟି ହୁଏ ଏକ ସମୃଦ୍ଧ ସଂସ୍କୃତି । ତେବେ ନିଜ ଅହଂକାରର ଦସ୍ତାବିଜ ଲେଖିଲା ବେଳେ ଜଣେ ସଚେତନ ହେବା ଉଚିତ ଯେ ସେ ଯେଭଳି ଅନ୍ୟଜଣଙ୍କର ସ୍ୱାଭିମାନର ସଂଜ ସଳିତାଟିକୁ ଲିଭାଇ ନଦିଏ ।

ତେଣୁ ଆଜିର ମଣିଷ ସମନ୍ୱୟ ଓ ସହନଶୀଳତାର ଯଜ୍ଞବେଦୀରେ ମୈତ୍ରୀ ଦେବ ଶ୍ରୀଜଗନ୍ନାଥ ଓ ଶକ୍ତିସ୍ୱରୂପା ମହାମାୟାଙ୍କୁ ନିଜକୁ ଭଲ ପାଇବା ସହିତ ଅନ୍ୟକୁ ଭଲ ପାଇବାର ପୁଷ୍ପାଞ୍ଜଳି ଦେବା ଉଚିତ ଏଇ ମୁହୂର୍ତ୍ତରୁ । ବୋଧହୁଏ ଏହା ହିଁ ଜନ୍ମ ଦେବ ଏକ ସମୃଦ୍ଧ, ସଂସ୍କୃତ ସମାଜକୁ ଯାହା ବର୍ତ୍ତମାନର ଏକାନ୍ତ ଆବଶ୍ୟକତା ।

ଶ୍ରୀସିଦ୍ଧ ତପୋବନ
ଟିକରପଡ଼ା ସାହି
ଶ୍ରୀକ୍ଷେତ୍ର-୨

---

# ଶୁଭଦାୟିନୀ ମା'

ଡଃ ସୁଜାତା ଆଚାର୍ଯ୍ୟ

ଚାତକ ପରାଏ ଅନାଇ ବସିଛୁ
ତୁମ ଆଗମନ ପାଇଁ
ଅବତରି ଆସ ଏ ଧରାଧାମକୁ
ଅଭିମାନ କର ନାହିଁ ।
ଦିନୁ ଦିନ ପାପ ବଢୁଛି ଜଗତେ
ଶାଖା ମେଲଇ ଅନୀତି
ହିତାହିତ ଜ୍ଞାନ ଭୁଲୁଛି ମଣିଷ
ସୁଖ ପଛେ ଧାଏଁ ନୀତି ।
ମାଆ ଆଗେ ପିଲା କରିଥାଏ ଦୋଷ
ଥରେ ନୁହେଁ, ବାରବାର
ସୁଧାରି ଦିଅ ମା' ଅଧମକୁ ବାରେ
ଅପରାଧ କ୍ଷମା କର ।

ଦିଅ ମା' ଆଶିଷ ଭକତିର ଭାବ
ତୁମ ନାମ ଜପୁଥିବୁ
ସେ ନାମ ଅମୃତ ପାନ କରି ଆମେ
ସଂସାରରୁ ତରିଯିବୁ ।
ବରଷକେ ଥରେ ଆସ ଗୋ ଏମିତି
ଦରଶନ ମିଳୁଥାଉ
ଘଣ୍ଟ ଘୋଡ଼ାଇ ରଖ ଗୋ ସର୍ବିଙ୍କୁ
ତୁମ ଇଚ୍ଛା ପୂର୍ଣ୍ଣ ହେଉ ।

ପ୍ରାଧ୍ୟାପିକା
ଆଭିଲା କଲେଜ ଅଫ୍ ଏଜୁକେସନ୍
କୋଚିନ୍-୬, କେରଳ

----



# ଓଡ଼ିଶାରେ ଶକ୍ତି ପୂଜାର ପରମ୍ପରା

ଡକ୍ଟର ତ୍ରିନାଥ ପଟ୍ଟନାୟକ

**ଶ**କ୍ତି ଆବାହନ ଓ ଆରାଧନା ଦେଶ ତଥା ଜାତିର ମୂଳଲକ୍ଷ୍ୟ ଓ ପରାକାଷ୍ଠା ହେବା ଉଚିତ । ଶକ୍ତି = ଶକ୍+ତି । ଶକ୍ ଧାତୁରୁ 'କ୍ତିନ୍' ପ୍ରତ୍ୟୟ ଯୋଗେ ଏହା ନିଷ୍ପନ୍ନ ହୋଇଥାଏ । ଶକ୍ ଧାତୁ ସମର୍ଥ ସୂଚକ ଅର୍ଥରେ ବ୍ୟବହୃତ ହୁଏ । ପୁନଶ୍ଚ 'ଶକ୍' ଶବ୍ଦ ଐଶ୍ୱର୍ଯ୍ୟ ଏବଂ 'ତି' ପରାକ୍ରମ ଅର୍ଥ ସୂଚକ । ଅତଏବ ଜଗତର ସକଳ କାର୍ଯ୍ୟ ସାଧନାରେ ସମର୍ଥ ତଥା ପରାକ୍ରମ ଥିବା ବସ୍ତୁର ନାମ ଯଥାର୍ଥରେ ଶକ୍ତି ।

ଶକ୍ତି ଉପାସନାର ପରମ୍ପରା ଆମ ଦେଶରେ ସ୍ମରଣାତୀତ କାଳରୁ ଚଳି ଆସୁଛି । ଆମ ସଭ୍ୟତା ଯେତିକି ପୁରୁଣା, ଶକ୍ତି ଉପାସନା ମଧ୍ୟ ସେତିକି ପ୍ରାଚୀନ । ଏହାର ନିର୍ଦ୍ଦିଷ୍ଟ ସମୟ ନିରୂପଣ କରିବା ଅତୀବ କଠିନ । ପ୍ରକାଶ୍ୟମାନ ଜୀବ ଓ ଜଡ଼ଜଗତର ପ୍ରତ୍ୟକ୍ଷ ଓ ପରୋକ୍ଷ ବିକାଶର ମୂଳ ଉତ୍ସ ହେଉଛି ଶକ୍ତି । 'ଶକ୍ତି'ର ପ୍ରକାଶ୍ୟମାନ ଅବସ୍ଥା ହିଁ ସୃଷ୍ଟି ।

ଭାରତର ୫୧ଟି ଶକ୍ତି ପୀଠ ମଧ୍ୟରେ ଉତ୍କଳ ଅନ୍ୟତମ ଶକ୍ତି ପୀଠ । ପୁରାଣ ମତରେ ଦକ୍ଷ ପ୍ରଜାପତିଙ୍କ ଅନୁଷ୍ଠିତ ଯଜ୍ଞ ସ୍ଥଳରେ ଦେବୀ ସତୀ ଅପମାନିତା ହୋଇ ଦେହ ତ୍ୟାଗ କରିଥିଲେ । ରୁଦ୍ର କ୍ରୋଧିତ ହୋଇ ଦେବୀଙ୍କ ଶବକୁ ସ୍କନ୍ଧ ଦେଶରେ ବହନ କରି ସର୍ବତ୍ର ଭ୍ରମଣ କରିବାକୁ ଲାଗିଲେ । ଫଳରେ ସୃଷ୍ଟି ଅସ୍ଥିର ହେବାକୁ ଲାଗିଲା । ବିଶ୍ୱଶାନ୍ତି ପାଇଁ ବିଷ୍ଣୁ ଚକ୍ର ଦ୍ୱାରା ଦେବୀଙ୍କ ଶବକୁ ୫୧ ଖଣ୍ଡରେ ବିଭକ୍ତ କରି ବିଭିନ୍ନ ସ୍ଥାନରେ ନିକ୍ଷେପ କରିଥିଲେ । ଦେବୀଙ୍କ ଦେହାଂଶରୁ ଗୋଟିଏ ଗୋଟିଏ ଶକ୍ତି ପୀଠ ଉତ୍ପନ୍ନ ହୋଇଥିଲା । ଦେବୀଙ୍କ ନାଭି ଦେଶ ଉତ୍କଳ କ୍ଷେତ୍ରରେ ପଡ଼ିଥିଲା । ଦେବୀ ବିମଳା ହେଉଛନ୍ତି ଭୈରବୀ ଓ ଶ୍ରୀଜଗନ୍ନାଥ ହେଉଛନ୍ତି ଭୈରବ ।

ମହାଭାରତରେ ବର୍ଣ୍ଣିତ ଅଛି ପାଣ୍ଡବମାନେ ଲୋମଶ ଋଷିଙ୍କ ସହିତ ଉତ୍କଳକୁ ଆସି ପ୍ରାଚୀନ ଶକ୍ତିପୀଠ ଯାଜପୁରଠାରେ ପହଞ୍ଚିଥିଲେ । ଏହା ବ୍ୟତୀତ ଓଡ଼ିଶାରେ ଆଦିବାସୀମାନେ ମଧ୍ୟ ସ୍ତମ୍ଭ ସ୍ଥାପନ କରି ସ୍ତମ୍ଭେଶ୍ୱରୀ, ଖମ୍ଭେଶ୍ୱରୀ ରୂପେ ଶକ୍ତି ଆରାଧନା କରୁଥିଲେ । ଖମ୍ଭେଶ୍ୱରୀ ଏବେ ମଧ୍ୟ ଆସିକା ଓ ସୋନପୁରଠାରେ ପୂଜା ପାଉଛନ୍ତି । ସ୍ତମ୍ଭେଶ୍ୱରୀ କାଳକ୍ରମେ ପରବର୍ତ୍ତୀ ସମୟରେ 'ସୁଭଦ୍ରା'ରେ ରୂପାନ୍ତରିତ ହୋଇଅଛନ୍ତି । ଓଡ଼ିଶାର ଭୌମ ଶାସକମାନଙ୍କର ସମୟରେ ଶକ୍ତିପୂଜା ଓ ତନ୍ତ୍ରର ପୁଷ୍କଳ ସାଧନ ହୋଇଥିଲା । ଏହା ପଞ୍ଚମ ଓ ଷଷ୍ଠ ଶତାବ୍ଦୀର କଥା । ଭୌମ ଯୁଗ ପରେ ସୋମ ଓ ଗଙ୍ଗବଂଶୀ ରାଜାମାନେ ମଧ୍ୟ ଶକ୍ତି ଆରାଧନା ପ୍ରତି ଗୁରୁତ୍ୱ ପ୍ରଦାନ କରିଥିଲେ । ଝଙ୍କଡ଼ରେ ଥିବା ଉତ୍କଳ ଭାରତୀ ଦେବୀ ଶାରଳାଙ୍କର ସ୍ଥାପନ ଅଷ୍ଟମ ଶତାବ୍ଦୀ ସମୟରେ । ଦେବୀ ଉପାସକ ଦୁର୍ଗା ଉପାସନା କରି ନିଜକୁ ଦୁର୍ଗା ପୁତ୍ର ରୂପେ ପରିଚିତ କରାଇଥିଲେ ।

ଏହା ଖ୍ରୀ:ଅ: ୧୪୩୫-୧୪୬୫ର କଥା । ତାଙ୍କ ପୁତ୍ର ଗଜପତି ପୁରୁଷୋତ୍ତମ ଦେବ (ଖ୍ରୀ:ଅ: ୧୪୬୬-୧୪୯୬) ମଧ୍ୟ ଜଣେ ଦୁର୍ଗା ଉପାସକ ଥିଲେ । ପଞ୍ଚଦଶ ଶତାବ୍ଦୀର କବି ସାରଳା ଦାସ ଦେବୀ ଶାରଳାଙ୍କ କୃପାବଳରେ ମହାଭାରତ ରଚନା କରିଥିଲେ ଓ ଦୁର୍ଗାପୂଜାର ପ୍ରଥମ ସୂଚନା ଦେଇଛନ୍ତି । ତାଙ୍କ ରଚିତ ଚଣ୍ଡୀ ପୁରାଣ ସେହି ସମୟରେ ରଚିତ ହୋଇ ଓଡ଼ିଶାରେ ଶକ୍ତି ପରମ୍ପରାର ପ୍ରଚାର ପ୍ରସାର ଘଟାଇଥିଲା । ଓଡ଼ିଶାର ଆଠଗୋଟି ସ୍ଥାନରେ ଚଣ୍ଡୀଙ୍କର ପ୍ରଧାନ ବିଗ୍ରହମାନ ଅଛି ।

ବାଣପୁରେ ଭଗବତୀ, ଶ୍ରୀକ୍ଷେତ୍ରେ, ବିମଳା,
କାକଟପୁରେ ରହିଲୁ ନାମତୋ ମଙ୍ଗଳା ।
ଝଙ୍କଡ଼େ ଶାରଳା ନାମ ଅଟଇ ତୋହର,
ବିରଜାଇ ନାମେ ବିଜେ କଲୁ ଯାଜପୁର ।
ବାଙ୍କୀରେ ନାମ ତୋହର ଅଟେ ଚର୍ଚ୍ଚିକାଇ,
ସମ୍ବଲପୁରେ ନାମ ବହିଲୁ ସମଲାଇ ।
ତାଳଚେରରେ ହିଙ୍ଗୁଳା ନାମ ତୋର ମାଆ,
ଏହିପରି ଉତ୍କଳରେ ଶକ୍ତି ଆଠ ନାଆଁ ॥

ସାରଳା ଦାସ 'ଚଣ୍ଡୀ ପୁରାଣ'ରେ ଅଷ୍ଟଚଣ୍ଡୀଙ୍କର ନାମ ନିମ୍ନମତେ ଦେଇଛନ୍ତି -

ଝଙ୍କଡ଼େ ରହିଲୁ ମାଗୋ ଶାରଳା ନାମ ବହି,
କାକଟପୁରେ ରହିଲୁ ମାଗୋ ମଙ୍ଗଳା ବୋଲାଇ ।
କୋଣାରକେ ରହିଲୁ ମାଗୋ ଅଭୟା ରାମଚଣ୍ଡୀ
ପୁରୁଷୋତ୍ତମେ ରହିଲୁ ବିମଳା ବୋଲାଇ
ବାଙ୍କୀରେ ରହିଲୁ ମାଗୋ ଚର୍ଚ୍ଚିକା ନାମ ବହି ।

ଯାଜପୁରେ ରହିଲୁ ବିରଜା କାକଟପୁରେ ମଙ୍ଗଳା,
ପଶ୍ଚିମ ଦିଗେ ରହିଲୁ ବୋଲାଇ ହିଙ୍ଗୁଳା ।
ଭୁବନେଶ୍ୱରରେ ରହିଲୁ ନାମ ତୋ ଗଉରୀ ।।

ଅର୍ଥାତ୍, ଝଙ୍କଡ଼ରେ ଶାରଳା, କାକଟପୁରରେ ମଙ୍ଗଳା, କୋଣାର୍କରେ ରାମଚଣ୍ଡୀ, ପୁରୀରେ ବିମଳା, ବାଙ୍କୀରେ ଚର୍ଚ୍ଚିକା, ଯାଜପୁରରେ ବିରଜା, ପଶ୍ଚିମ (ତାଳଚେର)ରେ ହିଙ୍ଗୁଳା ଓ ଭୁବନେଶ୍ୱରରେ ଗୌରୀ ହେଉଛନ୍ତି ଅଷ୍ଟ ତନ୍ତ୍ରପୀଠର ଅଷ୍ଟ ଦେବୀ ।

ଏହାବ୍ୟତୀତ ଓଡ଼ିଶାର ବିଶିଷ୍ଟ ଶକ୍ତି ପୀଠ ରୂପେ ଗଞ୍ଜାମ (ପୁରୁଷୋତ୍ତମପୁର)ର ତାରାତାରିଣୀ, କଟକର ଚଣ୍ଡୀ, କେନ୍ଦୁଝର (ଘଟଗାଁ)ର ତାରିଣୀ, ଖୋର୍ଦ୍ଧାର ବରୁଣେଇ, ଭଦ୍ରକର ଭଦ୍ରକାଳୀ, ଭଟ୍ଟାରିକା, ଖଲିକୋଟର ନାରାୟଣୀ, ଚିଲିକାର କାଳିଜାଈ, ନୟାଗଡ଼ର ଦକ୍ଷିଣକାଳୀ ପ୍ରଭୃତି ବିଖ୍ୟାତ ଅଟେ । ଓଡ଼ିଶାର ଗାଁଗହଳିରେ ବିଭିନ୍ନ ଶକ୍ତି ପୀଠ ଦେଖିବାକୁ ମିଳେ । ଅଧିକାଂଶ ରାଜା ଜମିଦାର ଶକ୍ତି ଉପାସକ ଥିବା ଯୋଗୁଁ ସେମାନେ ବିଭିନ୍ନ ସ୍ଥାନରେ ଶକ୍ତିଙ୍କୁ ବିଭିନ୍ନ ନାମରେ ଆରାଧନା କରିଯାଇଛନ୍ତି ।

ପଞ୍ଚସଖା ଯୁଗର ଭକ୍ତକବି ବଳରାମ ଦାସ 'ବଟ ଅବକାଶ' ପୁସ୍ତକରେ କେତେ ଦେବୀଙ୍କର ନାମ ଉଲ୍ଲେଖ କରିଛନ୍ତି । ସେ ଦେବୀମାନେ ବିଭିନ୍ନ ଶକ୍ତି ପୀଠର ଅଧିକାରିଣୀ । ସେମାନେ ହେଲେ - ଶାକମ୍ଭରୀ, ଦୁର୍ଗେଶ୍ୱରୀ, କାଳୀ, ରାମଚଣ୍ଡୀ, କୋଠେଶ୍ୱରୀ, ଭଗବତୀ, ବାସେଳୀ, ହାଡ଼ିଯାଇ, କୋଟମ ଚଣ୍ଡୀ, ବ୍ରାହ୍ମଣୀ, ସାବିତ୍ରୀ, ସାରଙ୍କାଚଣ୍ଡୀ, ଅପରାଜିତା, ପିଙ୍ଗଳା, ସରକାମା, ମାରକାମା, ହିଙ୍ଗୁଳା, କଳାବତୀ, କାଳିକା, ପାଟେଳୀ, କଳାଶୁଣୀ, ଚର୍ଚ୍ଚିକା, ଛାୟାମାୟା, ବିଜୟା, ଚଣ୍ଡଘଣ୍ଟା, କାଳଘଣ୍ଟା, କାଳମୁଖୀ, ତୃତିଖଇ, ହେମରାଣ୍ଡି, ସର୍ପମୁଖୀ, ଜାଗୁଳାଇ, ହାଡବାଇ, ସମଲାଇ, ମଙ୍ଗଳା, କରୁଣାଇ, ବରୁଣାଇ, ତାରାଶୁଣୀ, ତାରେଣୀ, ବାରେଣୀ, ମାରେଣୀ, ସପନଚେଟୀ ଓ କନକେଶ୍ୱରୀ ପ୍ରଭୃତି । ଏହାବ୍ୟତୀତ ଚଉଷଠି ଯୋଗିନୀ, କାତ୍ୟାୟିନୀ, ସପ୍ତମାତୃକା, ବିମଳା ଏବଂ ବିରଜାଙ୍କ ନାମ ମଧ୍ୟ ଉଲ୍ଲେଖ କରିଛନ୍ତି ।

ଓଡ଼ିଶାର ଅଧିକାଂଶ ରାଜାଙ୍କର କୁଳଧର୍ମ ବୈଷ୍ଣବ, ଗୌଡ଼ିୟ କିମ୍ବା ବିଶିଷ୍ଟାଦ୍ୱୈତ ହେଲେ ସୁଦ୍ଧା ଇଷ୍ଟ ଦେବୀ ରୂପେ କୌଣସି ନା କୌଣସି ଶକ୍ତିକୁ ଗ୍ରହଣ କରିଥିଲେ । ଯଥା-

| ରାଜବଂଶ | ଇଷ୍ଟଦେବୀ |
|---|---|
| ଖଲିକୋଟ | ବାହୁତି |
| ଘୁମୁସର | ବ୍ୟାଘ୍ରଦେବୀ ବା ବାକ୍ ଦେବୀ |
| ଧରାକୋଟ | କୁଠାରୀ |
| ବଡ଼ଖେମୁଣ୍ଡୀ | ମାଣିକେଶ୍ୱରୀ |
| ପାରଳାଖେମୁଣ୍ଡୀ | ମାଣିକେଶ୍ୱରୀ |
| ଆଠଗଡ଼ | ଭାରମୁଣ୍ଡୀ |
| ମହୁରୀ | କାଳୁଆ |
| ବରଗଡ଼ | ବାରାହୀ |
| ସୁରଙ୍ଗୀ | କୁରେଇସୁଣୀ |
| ଜଳନ୍ତର | ନିମ୍ବେସୁଣୀ |
| ମଞ୍ଜୁଷା | ଖିଲମଣ୍ଡା |
| ବରଡ଼ା | ପୁଲକେଶ୍ୱରୀ |
| ଚିକିଟି | କନକଦୁର୍ଗା |
| ତରଳା | ଅଲ୍ଲାଦେବୀ |
| ଚିକିଲି | କନକଦୁର୍ଗା ଓ ଭାରମୁଣ୍ଡି |
| ସୋନପୁର | ଭଗବତୀ |
| ସମ୍ବଲପୁର | ସମଲେଶ୍ୱରୀ |
| ପାଟଣା | ପାଟଣେଶ୍ୱରୀ |
| କଳାହାଣ୍ଡି | ମାଣିକେଶ୍ୱରୀ, ଶୀତଳା |
| ନୟାଗଡ଼ | ବାଉତି, ବାଉରାଣୀ |

ପଶ୍ଚିମ ଓଡ଼ିଶାରେ ଗ୍ରାମେ ଗ୍ରାମେ ଶକ୍ତି ଆରାଧନା କରାଯାଏ । ସମଲେଇ ବା ସମଲେଶ୍ୱରୀ ମୁଖ୍ୟ ଦେବୀ । ଏହା ବ୍ୟତୀତ ପାଟଣେଶ୍ୱରୀ, କଇଁଲେଇ ବା କୋଲକେଶ୍ୱରୀ, ମାଣିକେଶ୍ୱରୀ, ସୁରେଶ୍ୱରୀ, ମାହେଶ୍ୱରୀ, ରାମଚଣ୍ଡୀ, ପିତାବଲୀ, ମାଉଲୀ, ଘଁସିଏନ, ଦୂରସେନୀ, ଗମକେଇ, ଗଙ୍ଗାଦେଇ, କମଗେଇ । ପଶ୍ଚିମ ଓଡ଼ିଶାର ସର୍ବପ୍ରାଚୀନ ଦେବୀ ହେଉଛନ୍ତି ସ୍ତମ୍ଭେଶ୍ୱରୀ ବା ଖମ୍ଭେଶ୍ୱରୀ (ଖ୍ରୀ:ଅ: ୫ମ) ।

ଓଡ଼ିଶା ଶକ୍ତି ସାଧନାର ପ୍ରକୃଷ୍ଟ କ୍ଷେତ୍ର ଥିଲା ଦକ୍ଷିଣ କୋଶଳ ବା ପାଟଣାଗଡ଼ । ଏହାକୁ କୁଆଁରୀ ପାଟଣା ବୋଲି କୁହାଯାଉଥିଲା । ନିମ୍ନଜାତିର ସାତଜଣ ଶକ୍ତି କୁମାରୀ ସାଧିକା ଏଠାରେ ବାସ କରୁଥିଲେ । ସେମାନେ ତନ୍ତ୍ର ବିଦ୍ୟାରେ ପାରଙ୍ଗମା ଥିଲେ । ସେମାନଙ୍କର ଗୁରୁଥିଲେ, ତନ୍ତ୍ର ବିଶାରଦ ବ୍ରାହ୍ମଣ ବଂଶୀୟ ଧନ୍ୱନ୍ତରୀ । ଉକ୍ତ ସାତ ଜଣ କୁମାରୀ ସାଧିକା ହେଲେ - ଜ୍ଞାନଦେଇ ମାଲୁଣୀ, ନିତେଇ ଧୋବଣୀ, ଲୁହୁକୁଟି ଲୁହୁରାଣୀ, ସୁକୁଟି ଚମାରୁଣୀ, ପତର ସଉରୁଣୀ, ଗାଙ୍ଗୀ ଗଉଡୁଣୀ ଏବଂ ଶୁଆ ତେଲୁଣୀ ।

ଓଡ଼ିଶାରେ ଏମିତି ଗାଁ ନାହିଁ ଯେଉଁଠି ଠାକୁରାଣୀ ବା ଗ୍ରାମଦେବୀଙ୍କର ପୂଜା କରାନଯାଉଛି । ଜଗନ୍ନାଥ ଦାସଙ୍କ ଭାଗବତରେ ଉଲ୍ଲେଖ ଅଛି, ଯେ ଭଗବାନ ଦୁର୍ଗାଙ୍କୁ ନିର୍ଦ୍ଦେଶ ଦେଲେ, ତୁମେ ଯାଇ ଦେବକୀଙ୍କ ସପ୍ତମ ଗର୍ଭରେ ବାଳକକୁ ରୋହିଣୀଙ୍କ ଗର୍ଭରେ ରଖି ନିଜେ ଯଶୋଦାଙ୍କ ଗର୍ଭରେ ଆଶ୍ରୟ ନିଅ । ଦୁର୍ଗା ଆଦେଶ ମାନିଥିବା ଯୋଗୁଁ ବିଷ୍ଣୁ ଖୁସି ହୋଇ କହିଥିଲେ -

'ଲୋକେ କରିବେ ତୋତେ ପୂଜା,
ଅନେକ ଦେବେ ବଳିଭୁଜା ।
ଭକ୍ତକୁ ହୋଇବୁ ପ୍ରସନ୍ନ
ଅନେକ ହେବ ତୋର ନାମ ।
ଜୟ ବିଜୟା ଭଦ୍ରକାଳୀ,
ମଙ୍ଗଳା ଚଞ୍ଚଳା କଙ୍କାଳୀ ।

ଦୁର୍ଗା ଅମ୍ବିକା ନାରାୟଣୀ,
ଏକୁ ଆରେକ ନାମ ଭଣି ।
ଗ୍ରାମ ଗ୍ରାମରେ କରି ସ୍ଥାନ,
ପୂଜନ୍ତେ ହୋଇବୁ ପ୍ରସନ୍ନ ।
ପୂଜା କରିବେ ନାନା ମତେ,
ଅନେକ ନାମ ତୋ ଜଗତେ ।'

କବି ସାରଳା ଦାସ ଚଣ୍ଡୀ ପୁରାଣ ଓ ମହାଭାରତରେ ଓଡ଼ିଶାର ପୁରପଲ୍ଲୀରେ ପୂଜା ପାଉଥିବା ଦେବୀମାନଙ୍କର ନାମ ଉଲ୍ଲେଖ କରିଛନ୍ତି । ଏ ଦେବୀମାନେ ବଳି ଖାଆନ୍ତି ଓ ଅଧିକାଂଶ ଦେବୀ ବର୍ଷକରେ ଥରେ ମାତ୍ର ପୂଜା ପାଇଥାନ୍ତି । ଏହି ଦେବୀମାନଙ୍କୁ ପ୍ରାୟତଃ ନିମ୍ନଜାତିର ସ୍ତ୍ରୀଲୋକମାନେ ପୂଜା କରିଥାନ୍ତି । ସମସ୍ତେ ବିରୂପା । ଦୁର୍ଗା ମହିଷାସୁର ଯୁଦ୍ଧରେ ଏମାନେ ମହିଷାସୁର ଦ୍ୱାରା ଛିଞ୍ଚାଡ଼ି ହୋଇ ଗ୍ରାମେ ଗ୍ରାମେ ପଡ଼ିଥିଲେ ।

ଗ୍ରାମେ ପର୍ବତେ ବନରେ ପଡ଼ିଲେ ଯେ ସ୍ଥାନେ,
ଉଠି ନପାରିଲେ ବ୍ୟଥା ପାଇ ଦେବୀମାନେ ।
ଛୋଟି କାଣୀ କୁବୁଜା କେ ହୋଇଲା ଯେ କେମ୍ପା,
ହିୟା ପଞ୍ଜରା ଭାଙ୍ଗତେ ହୋଇଲେ ବିରୂପା ।
ଯେ ଯହିଁ ପଡ଼ିଲେ ସେହି ରହିଲେ ସେଠାଇଁ,
ଦୁର୍ଗାଦେବୀ ବୋଇଲେ କି ତାକେଶ୍ୱରୀ ଭାଇ ।
ଦେବୀ ପଡ଼ିଲେ ଲୋ କାହିଁ ଛିଞ୍ଚାଡ଼ି ଯେ ହୋଇ,
ସିଦ୍ଧ ରୂପେ ପୂଜା ପାଉଥାନ୍ତୁ ସେହିଠାଇଁ ।
ପାଷାଣ ହୋଇ ତାଙ୍କର ବାକ୍ୟ ସିଦ୍ଧ ହେଉ ।

ସେହିସବୁ ଦେବୀ ହେଲେ - ଅମ୍ବିକା, ବଉଳାଇ, ଶାନ୍ତି, କାନ୍ତି, ମାଧବୀ, ଧାୟୀ, ରୁଖାଇ, ରଖାଇ, ଅବତାରିକା, ପିଙ୍ଗଳାଇ, ସଜାଇ, ବିଦାୟୀ, କାପରାଇ, ତନାଇ, ଧମନ୍ତୀ, ସୁମନ୍ତୀ, ଅନନ୍ତାୟୀ, ବିଜୟା, କାଳନ୍ଦୀ, ତୁଳସୀ, ଅଭୟା, ଡାକିନୀ, ଚାମୁଣ୍ଡା, ତ୍ରିପୁରା, କୁଠାରୀ, ଗୋଲକମା, ମାରକମା, ବେତାଳୀ, ଲୁମ୍ବନାୟୀ, ଭୁଆସୁଣୀ ।

ଓଡ଼ିଶାର ଆଦିବାସୀମାନେ ମଧ୍ୟ ଗ୍ରାମେ ଗ୍ରାମେ ଶକ୍ତି ପୂଜା କରନ୍ତି । ସେମାନେ ଧରିତ୍ରୀ ମାତାକୁ ସର୍ବଶକ୍ତିର ଆଧାର ମନେକରି ଆରାଧନା କରନ୍ତି । କନ୍ଧମାନେ ଧରିତ୍ରୀକୁ 'ଗଡ଼ାପେନୁ' କହୁଥିବାବେଳେ ପରଜାମାନେ 'ଧରନୀ', ଡଙ୍ଗରିଆ କନ୍ଧମାନେ 'ଝାକ୍ରୀ' ବା 'ତରିପେନୁ', କୁଟିଆ କନ୍ଧମାନେ ବାଂଗାପେନୁ ବୋଲି କହିଥାନ୍ତି ।

ଦୁର୍ଗାପୂଜାର ପରମ୍ପରା ଓଡ଼ିଶାରୁ ହିଁ ଉନ୍ମେଷ ହୋଇଛି । ଓଡ଼ିଆମାନଙ୍କର ନିଛକ ମୌଳିକ ଦେବୀପୂଜା ଓ ଆବାହନ କଳସ ମଧ୍ୟରେ । ଦୁର୍ଗାପୂଜା ଅବସରରେ ଖଣ୍ଡାୟତର ଖଣ୍ଡା, ନାପିତର କ୍ଷୁର, ନହୁରୁଣୀ, କରଣର ଲେଖନୀ, କମାର ବଢ଼ାଇଙ୍କର ଉପକରଣ ତଥା ଅନ୍ୟଜାତିମାନଙ୍କର କୌଳିକ ବୃତ୍ତି ଅନୁସାରେ ନିଜ ନିଜର ଉପକରଣଗୁଡ଼ିକୁ କଳସ ନିକଟରେ ସ୍ଥାପନ କରିଥାନ୍ତି । ବୃତ୍ତିଗତ ବ୍ୟବସାୟର ଉତ୍ତରୋତ୍ତର ଅଭିବୃଦ୍ଧି ପାଇଁ ଦେବୀଙ୍କ ନିକଟରେ କାମନା କରିଥାନ୍ତି । ଓଡ଼ିଆ ଶକ୍ତିପୂଜାରେ ଆବାହନ ଅଛି, ମାତ୍ର ବିସର୍ଜନ ନାହିଁ । ଓଡ଼ିଶାର ଦୁର୍ଗା ମୂର୍ତ୍ତି ଦାରୁ, ପଥର ଓ ଧାତୁ ନିର୍ମିତ, ମାତ୍ର ମୃଣ୍ମୟୀ ନୁହଁନ୍ତି । ବରଗଛ ତଳେ ଗୁଆ ସିନ୍ଦୂର ଚର୍ଚ୍ଚିତା ଦେବୀ ଆରାଧନା ଚିରନ୍ତନ ଓ ତାହା ମୌଳିକ ସଂସ୍କୃତିର ପରମ୍ପରା ।

ଓଡ଼ିଶାର ଦୁର୍ଗାମୂର୍ତ୍ତି ବେନିଭୁଜା, ଚତୁର୍ଭୁଜା, ଦଶଭୁଜା, ଓ ଷୋଡ଼ଶଭୁଜା ଥିବାସ୍ଥଳେ ଦ୍ୱାଦଶଭୁଜା ମଧ୍ୟ ଅଛନ୍ତି । ପ୍ରାଚୀ ନଦୀର ଉପତ୍ୟକାରେ ନିଆଳୀ ନିକଟସ୍ଥ ଆମଣାକୁଦଗଡ଼ଠାରେ ବହୁ ପ୍ରାଚୀନ କାଳରୁ ଦେବୀ ବାରଭୁଜା ପୂଜା ପାଉଛନ୍ତି । ଏହି ଦେବୀ ମୂର୍ତ୍ତିକୁ ଦେଖିଲେ ମନେହୁଏ ସତେ ଯେପରି ଦେବୀ ମହିଷାସୁର ସହିତ ଯୁଦ୍ଧ କରି ଅତ୍ୟନ୍ତ କ୍ରୋଧାନ୍ୱିତା ହୋଇ ଯାଇଛନ୍ତି । ଦେବୀଙ୍କ ବାରଭୁଜରେ ଯଥାକ୍ରମେ ଦକ୍ଷିଣ ହସ୍ତରେ ଶଙ୍ଖ, ତ୍ରିଶୂଳ, ଚକ୍ର, ବାଣ, ଶକ୍ତି ଓ ଅସୁର ବେକ ଏବଂ ବାମ ହସ୍ତରେ ଖେଟକ, ପୂର୍ଣ୍ଣଚାପ, ଧନୁ, ଦର୍ପଣ, ଘଣ୍ଟ ଓ ପାଶ ଶୋଭା ପାଉଅଛି । ସତେ ଯେପରି ଏବେ ମଧ୍ୟ ଦେବୀ ମହିଷାସୁରକୁ ବ୍ୟସ୍ତ ଭାବରେ ଅନୁସନ୍ଧାନ କରୁଛନ୍ତି ।

ଓଡ଼ିଶାର ଛତ୍ରେ ଛତ୍ରେ ଶକ୍ତି ପରମ୍ପରା ଆମେ ଅନୁଭବ କରୁ । ଓଡ଼ିଆ ଭାଷାର ଜଣେ ଅଜ୍ଞାତ କବି ଶକ୍ତି ଆରାଧନା କରିବାକୁ ଯାଇ ଗାଇଛନ୍ତି -

ଆଗେ ମୁଁ ବନ୍ଦଇ ଗ୍ରାମ ଦେବତୀଙ୍କୁ
ଦୁର୍ଗତି କର ଖଣ୍ଡନ ।
ପଦ୍ମାସନୀ ମୋର କଣ୍ଠେ ବିଜେ କର
ପଦ କରିବି ରଚନ ॥
ପୁରୀ କ୍ଷେତ୍ରେ ବିମଳାଇ ପଦେ ବନ୍ଦେ
ବାଣପୁରେ ଭଗବତୀ ।
ରଣପୁରେ ମଣିନାଗ ପାଦେ ବନ୍ଦେ
କଣ୍ଠେ ବନ୍ଦେ ସରସ୍ୱତୀ ॥
ସମ୍ବଲପୁରରେ ସମଲାଇ ବନ୍ଦେ ମୁଁ
ଖୁରୁଧାରେ ବରୁଣାଇ ।
ଯାଜପୁରେ ବିରଜାଇଙ୍କୁ ବନ୍ଦିଲି
ବାଙ୍କିଗଡ଼େ ଚର୍ଚ୍ଚିକାଇ ॥
କାକଟପୁରରେ ମଙ୍ଗଳା ବନ୍ଦିଲି
ଢେଙ୍କାନାଳେ କଳାପାଟ ।
ବଉଦ ଉମାଙ୍କ ଚରଣେ ଶରଣ
ଝଙ୍କଡ଼େ ସାରଳା ଶ୍ରେଷ୍ଠ । ॥
ପୂଜା ଅପୂଜା ଦେବଦେବୀ ସଭିଙ୍କୁ
ବନ୍ଦୁଅଛି ଯୋଡ଼ି କର ।
ଓଡ଼ିଶା ଭୂଇଁର ଯେତେ ଦେବଦେବୀ
ବନ୍ଦୁଅଛି ବାରମ୍ବାର ॥

ସଂପାଦକ
ପୁରାଣ ପତ୍ରିକା, ନିଆଳୀ
କଟକ-୭୫୪୦୦୪

# ସକଳ ଜଗତ ଆଧାର, ତୁହି ମା' ମୋତେ ରକ୍ଷା କର

ଡଃ ଶରତ ଚନ୍ଦ୍ର ପରିଡ଼ା

ଆଜି ବୌଦ୍ଧିକ ଆଳସ୍ୟର ଯୁଗ । ପ୍ରତ୍ୟେକ କଥାକୁ ଚିନ୍ତା କରିବା ଓ ବୁଝିବା ନିମନ୍ତେ ଯେଉଁ ଅନୁସନ୍ଧିତ୍ସା ଲୋଡ଼ା ସେଥିପାଇଁ କାହାର ଅବସର ନାହିଁ । ଆମେ କୌଣସି କଥାର ଅନୁସନ୍ଧାନ ନକରି ତାକୁ ଅନ୍ଧ ବିଶ୍ୱାସ କହିବାରେ ଅଭ୍ୟସ୍ତ । କୌଣସି ବିଷୟକୁ ଆଲୋଚନା ନକରି ସମାଲୋଚନା କରିବାରେ ଆମେ ଧୁରନ୍ଧର । ଆମେ କର୍ମକାଣ୍ଡରେ ବୁଡ଼ି ରହିଲେ ଚଳିବ ନାହିଁ । ତା' ପଛରେ ଜ୍ଞାନର ଯେଉଁ ସଙ୍କେତ ରହିଛି, ତାହା ଗ୍ରହଣ କରିବା ଆଜି ଜରୁରି ହୋଇ ପଡ଼ିଛି ।

ଏ ବିଶ୍ୱର ପ୍ରତ୍ୟେକ ବ୍ୟକ୍ତି ଓ ବସ୍ତୁ ତିଷ୍ଠି ରହିବା ପାଇଁ ଆବଶ୍ୟକ କରନ୍ତି ଶକ୍ତି । ପ୍ରତ୍ୟେକ ପ୍ରାଣୀ ଜ୍ଞାତରେ ହେଉ ବା ଅଜ୍ଞାତରେ ହେଉ ଶକ୍ତିର ଉପାସକ ଅଟନ୍ତି । ଏପରି ଲୋକ ଏ ସଂସାରରେ କେହି ନାହିଁ ଯିଏ ଶକ୍ତି ଇଚ୍ଛା ନକରେ । କିଏ ମନ୍ତ୍ରଶକ୍ତି ତ କିଏ ତନ୍ତ୍ରଶକ୍ତି ଓ ଆଉ କିଏ ଯନ୍ତ୍ରଶକ୍ତି ବଳରେ ଶକ୍ତିଶାଳୀ ହେବାକୁ ଚେଷ୍ଟା କରୁଛି । ପଦାର୍ଥ ବିଜ୍ଞାନୀମାନେ ପ୍ରମାଣ କରି ସାରିଛନ୍ତି ଯେ ପ୍ରତ୍ୟେକ ପଦାର୍ଥ ହେଉଛି ଏକ ଅକ୍ଷୟ ଶକ୍ତି । ତେଣୁ ପ୍ରତ୍ୟେକ ସତ୍ତାରେ ଯେଉଁ ଶକ୍ତି ନିହିତ ଅଛି ତାହା ହିଁ ଦିବ୍ୟଶକ୍ତିର ରୂପାନ୍ତର । ଋଷିମାନେ ଶକ୍ତି ଖୋଜି ଖୋଜି ଆତ୍ମଶକ୍ତି ଆବିଷ୍କାର କଲେ ଓ ବୈଜ୍ଞାନିକମାନେ ଶକ୍ତି ଖୋଜି ଖୋଜି ବିଦ୍ୟୁତ ଶକ୍ତି, ଚୁମ୍ବକୀୟ ଶକ୍ତି ଓ ପାରମାଣବିକ ଶକ୍ତି ପାଖରେ ପହଞ୍ଚିଲେ । ଖାଲି ପାର୍ଥକ୍ୟ ଏତିକି ଯେ ପ୍ରଥମଟି ଚୈତନ୍ୟମୟ ଓ ଦ୍ୱିତୀୟଟି ଜଡ଼ । ଏ ଉଭୟର ମୂଳ ଉତ୍ସ ଏକ ଓ ଗୋଟିଏ ଶକ୍ତି, ଦୁର୍ଗା ଶକ୍ତି ।

ଭାରତରେ ପ୍ରାୟ ଚାରି ହଜାର ବର୍ଷ ପୂର୍ବରୁ ଦୁର୍ଗା ପୂଜା ପାଇ ଆସୁଛନ୍ତି । ଦେବୀ ସୂକ୍ତରେ 'ଅହଂ ରାଷ୍ଟ୍ରୀ' ବୋଲି କୁହାଯାଇଛି । ଅର୍ଥାତ୍ 'ମୁଁ ବ୍ରହ୍ମାଣ୍ଡର ଏକମାତ୍ର ଅଧୀଶ୍ୱରୀ' । ଋଗ୍‌ବେଦ (୧.୨୫.୬)ର 'ବାଗମ୍ଭୃନୀୟ ସୂକ୍ତ'ରେ ମହାଶକ୍ତିର ବର୍ଣ୍ଣନାର ଏକମାତ୍ର ମୂଳ ଆଧାର । ଋଗ୍‌ବେଦର 'ରାତ୍ରି ସୂକ୍ତ'ରେ ଯେଉଁ ରାତ୍ରିଦେବୀ ଭୁବନେଶ୍ୱରୀଙ୍କୁ ସୃଷ୍ଟିର ମୂଳଶକ୍ତି ରୂପେ ବର୍ଣ୍ଣନା କରାଯାଇଛି, ସେହି ଦେବୀ ହିଁ ବିଶ୍ୱେଶ୍ୱରୀ । ମହାବିଷ୍ଣୁ ବଟପତ୍ରରେ ଶିଶୁଟି ପରି ଶୟନ କରିଥିଲାବେଳେ ହଠାତ୍ ଚିନ୍ତା କଲେ ସେ କିଏ ?



ତାଙ୍କୁ କିଏ ସୃଷ୍ଟି କରିଛି ? ତାଙ୍କର ନାମ କ'ଣ ? ସେ ସମୟରେ ଆକାଶବାଣୀ ହେଲା : ସର୍ବଂ ଖଲ୍ୱ ଇଦମ୍ ଏବାହମ୍ । ନାନ୍ୟଦସ୍ତି ସନାତନମ୍ । ଏ ସବୁ ଯାହା, ତାହା ସବୁ ମୁଁ । ମୋ ଅତିରିକ୍ତ ସନାତନ କିଛି ନାହିଁ । ମୋ'ଠାରୁ ପ୍ରକୃତି ପୁରୁଷାତ୍ମକ ଜଗତ, ଶୂନ୍ୟ ଓ ଅଶୂନ୍ୟ ସୃଷ୍ଟି ହୋଇଛି ।

ଏଥିରେ ବିଷ୍ଣୁ ବିସ୍ମିତ ହେଲେ । ଏ କଥା କିଏ କହିଲେ ବୋଲି ଜାଣିପାରିଲେ ନାହିଁ । ଧ୍ୟାନମଗ୍ନ ହେଲେ । ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ ଜଣେ ଦେବୀ । ତାଙ୍କର ଚାରୋଟି ବାହୁରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଶୋଭା ପାଉଥିଲା । ଦେବୀ ଦିବ୍ୟ ଅଳଂକାରରେ ବିଭୂଷିତ ହୋଇଥିଲେ । ସେ ମହାବିଷ୍ଣୁଙ୍କୁ କହିଲେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଯେତେବେଳେ ସୃଷ୍ଟି, ସ୍ଥିତି ପ୍ରଳୟ ରୂପକ ଜଗତ ରୂପ ଗ୍ରହଣ କରେ ତୁମେ ମଧ୍ୟ ମହାଶକ୍ତି ବଳରେ ଆବିର୍ଭୂତ ହୋଇଥାଅ । ତୁମଠାରେ ସତ୍ତ୍ୱଗୁଣ ପ୍ରବଳ ଭାବରେ ଅଛି । ତୁମ ନାଭିରୁ ବ୍ରହ୍ମା ଜାତ ହେବେ । ବ୍ରହ୍ମାଙ୍କଠାରେ ରଜୋଗୁଣ ପ୍ରବଳ ଭାବରେ ରହିବ । ବ୍ରହ୍ମାଙ୍କ କପାଳର କେନ୍ଦ୍ରରୁ ଜାତ ହେବେ ରୁଦ୍ର । ରୁଦ୍ରଙ୍କଠାରେ ତମୋଗୁଣ ପ୍ରବଳ ଭାବରେ ରହିବ । ବ୍ରହ୍ମା ନିଜ ତପସ୍ୟା ବଳରେ ପୀତବର୍ଣ୍ଣର

ଜଗତ ସୃଷ୍ଟି କରିବେ । ତୁମେ ସେହି ଦୁନିଆର ପୋଷଣ କର୍ତ୍ତା ହେବ । କଳ୍ପଯୁଗର ଶେଷରେ ରୁଦ୍ର ସେହି ଦୁନିଆକୁ ଧ୍ୱଂସ କରିବେ । ତୁମେ ଜାଣ ଏ ପରାଶକ୍ତି ସମସ୍ତ ଗୁଣ ଓ ଉପାଧିର ଊର୍ଦ୍ଧ୍ୱରେ । ମୁଁ ସେହି ସାତ୍ତ୍ୱିକ ଶକ୍ତି । ମୁଁ ସୃଷ୍ଟି ପାଇଁ ତୁମ ଉପରେ ନିର୍ଭର କରେ ।

ଏହିପରି ପ୍ରତି କଳ୍ପର ଆରମ୍ଭରେ ତ୍ରିଦେବ ସୃଷ୍ଟି ହୁଅନ୍ତି । ସେମାନଙ୍କ ମଧ୍ୟରେ ସୃଷ୍ଟି କରିବା ଆଦି ବିଭାଗ ବଣ୍ଟନ ହୁଏ । କଳ୍ପ ଶେଷ ହେଲେ ତ୍ରିଦେବ ବିଶ୍ୱାତ୍ମିକା ଶକ୍ତି ସହିତ ଏକାକାର ହୋଇ ଯାଆନ୍ତି ।

ସଂପୂର୍ଣ୍ଣ ବିଶ୍ୱ ଯେତେବେଳେ ବିସ୍ତାରର ଶେଷ ଅବସ୍ଥାରେ ପହଞ୍ଚେ, ସେତେବେଳେ ଏହାର ବିପରୀତ ପ୍ରକ୍ରିୟା ସଙ୍କୋଚନ ଆରମ୍ଭ ହୁଏ । ଏହି ବିଶ୍ୱ ଏକ କ୍ଷୁଦ୍ର ବିନ୍ଦୁରେ ବିବର୍ତ୍ତିତ ହୁଏ ଓ ସମସ୍ତ ପଦାର୍ଥ ଏଠାରେ ବିଶ୍ରାମ ନେଇଥାନ୍ତି । ସେହି ବିନ୍ଦୁ ହିଁ ଦେବୀ ଦୁର୍ଗା ଶ୍ରୀ ବିଦ୍ୟା । ବିଶ୍ୱେଶ୍ୱରୀ ସୂକ୍ତରେ ବ୍ରହ୍ମା ସ୍ତୁତି କରନ୍ତି - 'ହେ ନିତ୍ୟା, ଅକ୍ଷର ବ୍ରହ୍ମ ସ୍ୱରୂପା । ଆପଣ ହିଁ ଅମୃତ ରୂପା ଏବଂ ଅ-ଉ-ମ ତ୍ରିବିଧ ମାତ୍ରା ରୂପେ ଅବସ୍ଥିତା । ପ୍ରଣବ ସ୍ୱରୂପା ବିଶେଷ ରୂପେ ଯାହା ନିର୍ଗୁଣ ଆପଣ ହିଁ ସେହି ଶକ୍ତି ସ୍ୱରୂପା । ଆପଣ ହିଁ ପରିଣାମହୀନା । ଶ୍ରେଷ୍ଠ ଶକ୍ତି ଓ ଦେବଗଣଙ୍କର ଆଦିମାତା । ପରମ ବୈଷ୍ଣବୀ । ଆପଣ ହିଁ ଜଗତର ନିମିତ୍ତ କାରଣ ଓ ଉପାଦାନ କାରଣ । ଆପଣ ହିଁ ଏ ଜଗତର ଆଦି, ମଧ୍ୟ ଓ ଅନ୍ତ । ଆପଣ ଜଗତ ସ୍ୱରୂପା ଓ ଜଗତର ଧାରିୟିତ୍ରୀ ।' ସୃଷ୍ଟି ଆଦି କାର୍ଯ୍ୟ କେବଳ ଏକ ମହାଶକ୍ତିର ଭିନ୍ନ ଭିନ୍ନ ଅବସ୍ଥା । ଦେବୀ ସର୍ବଭୂତରେ ପ୍ରକୃତି । ସର୍ବମୟୀ । ସର୍ବବିଦ୍ୟାମାନା । ସେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସବୁ ଜାଣନ୍ତି । ପ୍ରଳୟ ଅବସ୍ଥାରେ ଅବଶେଷ ରହି ଯାଉଥିବା ମହାକାଳକୁ ସେ ଗ୍ରାସ କରୁଥିବାରୁ ସେ ମହାକାଳୀ, ନିତ୍ୟା, ଆରାଧ୍ୟା ।

କ୍ଷିତି, ଅପ୍, ତେଜ, ମରୁତ ଓ ବ୍ୟୋମ - ଏହି ପଞ୍ଚମହାଭୂତ ଆଦ୍ୟାଶକ୍ତିଙ୍କର ଲୀଳା କ୍ଷେତ୍ର । ଏଥିରେ ହୁଏ ଜୀବଜଗତର ଉତ୍ପତ୍ତି ଓ ବିଲୟ । ଆତ୍ମା ଯେପରି ପରମ ଆତ୍ମାଙ୍କ ଅଂଶ ବ୍ୟକ୍ତିର ସୂକ୍ଷ୍ମ ଶରୀର ବା ପ୍ରକୃତି ମଧ୍ୟ ଅବ୍ୟକ୍ତ ମୂଳ ପ୍ରକୃତିର ଅଂଶ ଅଟେ । ମୂଳ ଅବ୍ୟକ୍ତ ପ୍ରକୃତି ପରମ ପିତା ପରମାତ୍ମାଙ୍କ ଆଦିଶକ୍ତି ଅଟନ୍ତି । ଶକ୍ତି ଲିଙ୍ଗହୀନ । ଯେତେବେଳେ ଆମେ ସେହି ଶକ୍ତିକୁ ପୁଲିଙ୍ଗ ରୂପେ ପ୍ରକାଶ କରୁ ତାହା ହୁଏ ଶିବ । ଶକ୍ତି ଓ ଶିବ ପରସ୍ପରଠାରୁ ଅଲଗା ନୁହଁନ୍ତି । ତେଣୁ ସେମାନଙ୍କ ମଧ୍ୟରେ ଦାମ୍ପତ୍ୟ ଜୀବନ କଳ୍ପନା କରିବା ଭକ୍ତପାଇଁ ସ୍ୱାଭାବିକ । ଶ୍ରୀ ଅରବିନ୍ଦ କହନ୍ତି, ପରମାତ୍ମାଙ୍କ ଅବ୍ୟକ୍ତ ପ୍ରକୃତି ଭଗବତୀ ଚିତ୍‌ଶକ୍ତି ଓ ଦିବ୍ୟ ଜନନୀ ଅଟନ୍ତି । ସତ୍ତ୍ୱ-ରଜ-ତମ - ଏହି ତିନିଗୁଣର ବିନ୍ୟାସରେ ମାୟାର ରଚନା । ବ୍ୟାସଦେବ ଜନ୍ମେଜୟଙ୍କୁ ଉତ୍ତରରେ କହିଥିଲେ : ସମସ୍ତ ବଳ, ସମସ୍ତ ବସ୍ତୁ ଯାହା ନାନା ରୂପ ଓ ନାମରେ ପରିଦୃଷ୍ଟ ହେଉଛି ତାହା ଦେବୀଙ୍କ ରୂପ ନାମ ବିନା ଅନ୍ୟ କିଛି ନୁହେଁ । ସତ୍ ଅସତ୍ ରୂପକ ଜଗତ ଭବାନୀଙ୍କଠାରୁ ଉତ୍ପନ୍ନ । ଏଥିରେ ସେ ପ୍ରାଣୀମାନଙ୍କୁ ଅଲକ୍ଷ୍ୟରେ ସଂଲଗ୍ନ କରି ରଖିଥା'ନ୍ତି । କର୍ମଫଳ ପ୍ରଦାନ ସମୟ ଉପସ୍ଥିତ ହେଲେ ସେ ପ୍ରାଣୀମାନଙ୍କୁ କର୍ମାନୁରୂପ ଫଳ (ଶରୀର) ପ୍ରଦାନ କରନ୍ତି । ଜଗତର ନିର୍ମାଣ କର୍ତ୍ତା ବ୍ରହ୍ମା ସେହି ଆଦ୍ୟାଶକ୍ତି ସହିତ ମିଳିତ ହୋଇ ନିଜର ସ୍ୱାତନ୍ତ୍ର୍ୟ ହରାଇଥା'ନ୍ତି । ତେଣୁ ସେହି ଆଦ୍ୟାଶକ୍ତିକୁ କାଳରାତ୍ରି କୁହାଯାଏ । ସେହିପରି ଜଗତ ମଧ୍ୟ ସେହି ପରାଶକ୍ତି ସହିତ ମିଳିତ ହୋଇ ନିଜର ସତ୍ତା ହରାଉଥିବାରୁ ସେ ମହାରାତ୍ରି ଓ ପ୍ରତିଦିନ ଜଗତର ଜୀବନ ସେହି ଆଦ୍ୟାଶକ୍ତି ସହିତ ମିଳିତ ହୋଇ ନିଜର ସ୍ୱାତନ୍ତ୍ର୍ୟ ହରାଉଥିବାରୁ ତାଙ୍କୁ ମନୁଷ୍ୟ ରାତ୍ରି କୁହାଯାଇଥାଏ ।

ଦୁର୍ଗାଙ୍କର ପ୍ରତ୍ୟେକ ନାମ ଭିନ୍ନ ଭିନ୍ନ ଗୁଣର ପ୍ରକାଶକ ଅଟେ । ମା' ଦୁର୍ଗାଙ୍କୁ ଏକ ଶହ ଆଠ ଅଲୌକିକ ଗୁଣର ପ୍ରତିନିଧି ବୋଲି କୁହାଯାଇଛି । ଉମା, କାତ୍ୟାୟନୀ, ଗୌରୀ ... ଏହିପରି ଅମର କୋଷରେ ଦେବୀ ଦୁର୍ଗାଙ୍କର ଯେଉଁ କୋଡ଼ିଏଟି ନାମ ରହିଛି ପ୍ରତ୍ୟେକ ଗୋଟିଏ ଗୋଟିଏ ସୁନ୍ଦର ଇତିହାସରେ ସମୃଦ୍ଧ ଓ ଗୁଣକର୍ମରେ ସାର୍ଥକ । ଏହା ବ୍ୟତୀତ 'ଚଣ୍ଡୀ' ଗ୍ରନ୍ଥରେ ମଧ୍ୟ ଦେବୀଙ୍କର ଶତଶତ ଗୁଣାତ୍ମକ ନାମ ରହିଛି । ପରମ ସତ୍ୟକୁ ସୂଚାଇ ଦେବା ପାଇଁ ତାହା ପ୍ରତ୍ୟେକ ଗୋଟିଏ ଗୋଟିଏ ତୀର । 'ଦୁର୍ଗ' ଶବ୍ଦ ଦୈତ୍ୟ, ମହାବିଘ୍ନ, ସାଂସାରିକ ବନ୍ଧନ, କୁକର୍ମ, ଶୋକ, ଦୁଃଖ, ନରକ, ଯମଦଣ୍ଡ, ଜନ୍ମ, ମହାଭୟ ଓ ଦୁଃସାଧ୍ୟ ରୋଗ ପ୍ରଭୃତି ଅମଙ୍ଗଳ ଅର୍ଥ ପ୍ରକାଶ କରିଥାଏ । ଏସବୁ ଦୁର୍ଗତୀର ବିନାଶକାରିଣୀ ଶକ୍ତି ହିଁ ଦୁର୍ଗାପଦବାଚ୍ୟ । ପ୍ରାଣୀର ଶରୀର 'ଦୁଃଖେନ ଗମ୍ୟତେ' ଅର୍ଥାତ୍ ଦୁଃଖରେ କଟୁଥିବାରୁ ତାହା ଦୁର୍ଗ । ତା' ଭିତରେ ଯେଉଁ ଚିନ୍ମୟୀ ଶକ୍ତି ଅଛି ତାହା ମଧ୍ୟ 'ଦୁଃଖେନ ପ୍ରାପ୍ୟତେ' ଅର୍ଥାତ୍ ଦୁଃଖରେ ଉପଲବ୍ଧି କରାଯାଇଥାଏ ବୋଲି ସେ ହେଲେ ଦୁର୍ଗା । ରାଜାଙ୍କ ବାହ୍ୟର ଶତ୍ରୁର ଆକ୍ରମଣରୁ 'ଦୁର୍ଗ'କୁ ରକ୍ଷା କରୁଥିବାରୁ ସେ ଦୁର୍ଗା 'ଗଡ଼ଚଣ୍ଡୀ' । ରଣକ୍ଷେତ୍ରରେ ଶତ୍ରୁକୁ ସଂହାର କରିବା ନିମନ୍ତେ ତାଙ୍କୁ 'ରଣଚଣ୍ଡୀ' ରୂପେ ସ୍ତୁତି କରାଯାଇଥାଏ । ଗଡ଼ର ଦେବୀ, ରଣର ଦେବୀ ଧୀରେ ଧୀରେ ହୋଇଛନ୍ତି ଗଣର ଦେବୀ । ସେ ଜନସାଧାରଣଙ୍କ ସୁଖଦୁଃଖର ସାକ୍ଷୀ, ବିପଦଆପଦରେ ଅଭୟଦାତ୍ରୀ ଓ ଶାନ୍ତି ସମୃଦ୍ଧିର ପୋଷଣକାରିଣୀ ହୋଇ ଗ୍ରାମେ ଗ୍ରାମେ ଗ୍ରାମଦେବତୀ ରୂପେ ବିଦ୍ୟମାନ ।

ଉତ୍ତର ଭାରତ ଅପେକ୍ଷା ଦକ୍ଷିଣ ଭାରତରେ ଦୁର୍ଗାଙ୍କ ଭୟଙ୍କରୀ ରୂପ ଅଧିକ ଦେଖିବାକୁ ମିଳେ । ସୃଜନାତ୍ମିକା ଶକ୍ତି ବିକ୍ଷୋଭ ଅବସ୍ଥାରେ କାଳୀ, ଯୁଦ୍ଧରେ ଦୁର୍ଗା ଓ ଦୁର୍ଗାଙ୍କର ମହିଷ-ଅସୁର ମର୍ଦ୍ଦିନୀ ରୂପ ବହୁପ୍ରଚଳିତ ଓ ଅତ୍ୟନ୍ତ ଲୋକପ୍ରିୟ । ମହିଷକୁ ଅନେକ ପ୍ରକାର ଦୁର୍ଗୁଣର ସଙ୍କେତ ରୂପେ ଗ୍ରହଣ କରାଯାଇଛି । ଶିଙ୍ଗଯୁକ୍ତ ମହିଷମୁଣ୍ଡ ରାଜତନ୍ତ୍ରର ପ୍ରତୀକ । ପଶୁମାନଙ୍କ ମଧ୍ୟରେ ମହିଷ ଅତ୍ୟନ୍ତ ବଳବାନ୍ । ରାଜାଙ୍କ

ଶକ୍ତି ସହିତ ଅତ୍ୟାଚାର ବଢ଼ିଗଲେ ସେ ହୋଇ ଯାଆନ୍ତି ମହିଷାସୁର । ଏହାଙ୍କ ବିରୋଧରେ ଯୁଦ୍ଧ କରିବାକୁ ଯିବା ପୂର୍ବରୁ ଦୁର୍ଗାଙ୍କୁ ଆରାଧନା କରାଯାଉଥିଲା । ପୁନଶ୍ଚ ଆମ ଭିତରେ ଏକ ପଶୁ ଅଛି । ତାହା ହେଉଛି ଅଜ୍ଞତା । ତାହା ତମୋଗୁଣରେ ପରିପୂର୍ଣ୍ଣ । ଏହା ଏକ ଅସୁର । ମହିଷ ମଧ୍ୟ ମୃତ୍ୟୁର ବାହନ । ମାତ୍ର ଜ୍ଞାନୀ ପାଇଁ ମୃତ୍ୟୁ ବୋଲି କିଛି ନଥାଏ । ଦୁର୍ଗାଙ୍କୁ ଆରାଧନା କରିବା ଦ୍ୱାରା ଆମ ଭିତରେ ଥିବା ଅବିଦ୍ୟା ଅସୁରଗୁଣାବଳିକୁ ଆମେ ଜୟ କରିଥାଉ । ଦେବୀଙ୍କ ତ୍ରିଶୂଳ ଭେଦ କରୁଛି ଅସୁରର ବକ୍ଷସ୍ଥଳ । କାମନା, ଇଚ୍ଛା ସବୁର ଉଦ୍ରେକ ଓ ଅନୁଭବ-ସ୍ଥଳ ହେଉଛି ହୃଦୟ । ଆମେ ନିଜକୁ ଦ୍ରଷ୍ଟା, ଅନୁଭବୀ ଓ ଚିନ୍ତକ ବୋଲି ବୃଥା ଅହଂକାର କରିଥାଉ ଏବଂ ତା’ ପ୍ରଭାବରେ ବସ୍ତୁ, ଭାବ ଓ ଚିନ୍ତାମୟ ଏହି ଦୁନିଆକୁ ଶରୀର-ମନ-ବୁଦ୍ଧି ରୂପକ ଉପକରଣ ଦ୍ୱାରା ଭୋଗ କରିଥାଉ । ଗୁଣ ତ୍ରୟରୁ ଜାତ ଯେଉଁ ଶୂଳ (ପୀଡ଼ା) ତାହା ତ୍ରିଶୂଳ ଦ୍ୱାରା ପରାହତ ହେଉଛି । ତ୍ରିଶୂଳ ଦ୍ୱାରା ଆହତ କରି ଦୁର୍ଗା ମନୁଷ୍ୟଠାରେ ନିଷ୍କାମ କର୍ମ, ଜ୍ଞାନ ଓ ଭକ୍ତିର ସ୍ରୋତ ଛୁଟାଇଥା’ନ୍ତି । ସିଂହ ନିଷ୍ଠୁର ପଶୁଶକ୍ତିର ପ୍ରତୀକ । ବ୍ୟକ୍ତି ଆତ୍ମାକୁ ଭୁଲିଗଲେ ହିଂସ୍ର ହୋଇଉଠେ । ସିଂହ ହୋଇଯାଏ । ନିଜଠାରେ ଥିବା ଚିନ୍ମୟୀ ଶକ୍ତି ଦ୍ୱାରା ହିଂସ୍ରତାକୁ ଦମନ କଲେ ମଣିଷର ଆତ୍ମଜ୍ଞାନ ଉଦୟ ହୁଏ । ଆତ୍ମଜ୍ଞାନର ପବିତ୍ର ଜଳରେ ତାଙ୍କର ରାଜାଭିଷେକ ଅନୁଷ୍ଠିତ ହୁଏ ।

ଯେଉଁ ଦେବୀ ଦ୍ୱିତୀୟ ଶତାବ୍ଦୀ ବେଳକୁ ଦ୍ୱିଭୁଜା ଥିଲେ ଏକାଦଶ ଶତାବ୍ଦୀ ବେଳକୁ ସେ ହେଲେ ଦ୍ୱାଦଶଭୁଜା । ଦେବୀ ଦେବତାମାନଙ୍କର ମାତା । ଦୁର୍ଗା ରୂପରେ ସେ ଦେବତାମାନଙ୍କ ଦ୍ୱାରା ମଧ୍ୟ ଆବିର୍ଭୂତା । ତାଙ୍କ ହାତରେ ଶୋଭା ପାଉଥାଏ ବିଭିନ୍ନ ଦେବଙ୍କ ପ୍ରଦତ୍ତ ନାନାପ୍ରକାର ଅସ୍ତ୍ରଶସ୍ତ୍ର । ଦେବୀଙ୍କ ଉପାସନା ଅବସରରେ ଶକ୍ତି ଜାଗରଣ କରିବା ଦ୍ୱାରା ସେମାନେ ଅଧିକ କ୍ରିୟାଶୀଳ ହୋଇଉଠନ୍ତି । ତେଣୁ ଅସ୍ତ୍ରପୂଜା ‘ଖଣ୍ଡାବସା’ ଏହାର ପ୍ରତୀକ ।

ତ୍ରିପୁରା ସୁନ୍ଦରୀ ଦେବୀ ସୌନ୍ଦର୍ଯ୍ୟର ପ୍ରତୀକ । ଆଶ୍ୱିନ ମାସର ଶରତଋତୁର ପ୍ରାକୃତିକ ମନୋମୁଗ୍ଧକର ସୌନ୍ଦର୍ଯ୍ୟରେ ହିଁ ଦେବୀ ବିଜେ କରିଥାନ୍ତି । ଶ୍ୱେତବସ୍ତ୍ର ଧାରିଣୀ ଦେବୀଙ୍କ ଜ୍ୟୋତିର୍ମୟ ଆବିର୍ଭାବରେ କଳାବାଦଲ ଆକାଶରୁ ଧୀରେ ଧୀରେ ଅପସରି ଯାଉଥାଏ । ଜ୍ଞାନର ତରଙ୍ଗରେ ଲହରାୟିତ ହୋଇ ସବୁଠି ଫୁଟି ଉଠେ ସତ୍ୟର କାଶତଣ୍ଡୀ ଫୁଲ । ଆଭ୍ୟନ୍ତରୀଣ ଓ ବାହ୍ୟ ଶତ୍ରୁ ସଂହାର କରିବା ପାଇଁ ଯୁଦ୍ଧଯାତ୍ରାର ପ୍ରକୃଷ୍ଟ ସମୟ ଶରତଋତୁ । ଏହି ସମୟରେ ବର୍ଷାର ଘନଘଟା ବା ଶୀତର ପ୍ରକୋପ ନଥାଏ । ଦେବୀ ଦୁର୍ଗାଙ୍କର କୃପା ଭିକ୍ଷା କରି ରାଜା ବାହାରି ଯାଆନ୍ତି ଯୁଦ୍ଧ ଅଭିଯାନରେ । ଶାନ୍ତ କାନ୍ତ କମନୀୟ ଶାରଦୀୟ ପରିବେଶ ମଧ୍ୟରେ ସାଧନାରେ ସଫଳ ହେବା ପାଇଁ ସାଧକ ତା’ର ପ୍ରୟାସ ଆରମ୍ଭ କରିଦିଏ ।

ଦୁର୍ଗାପୂଜାର ଅନ୍ୟ ନାମ ଦଶହରା । ପଞ୍ଚ ଜ୍ଞାନେନ୍ଦ୍ରିୟ ଓ ପଞ୍ଚ କର୍ମେନ୍ଦ୍ରିୟ ଦ୍ୱାରା ଆଚରିତ ଦଶ ପାପ ଏଥିରେ ହରଣ ହୋଇଥାଏ । ଦଶହରା ଅବସରରେ କରାଯାଉଥିବା ନବରାତ୍ର ପୂଜା ଉପାସକର ବିକାଶ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ରାକ୍ଷସମାନେ ଉତ୍ପାତ କଲେ ଦୁର୍ଗା ତାଙ୍କୁ ନିଧନ କରନ୍ତି । ମଣିଷର ଅନ୍ତର ଭିତରେ ଆସକ୍ତି, ଲୋଭ, ଦ୍ୱେଷ, ଆଳସ୍ୟ, ଚେଷ୍ଟାହୀନତା ରୂପକ ମହିଷ ଓ ଦାନବମାନେ ଦିନରାତି ବିକ୍ଷୋଭର ଝଡ଼ ସୃଷ୍ଟି କରୁଛନ୍ତି । ଶୁଭଶଙ୍ଖ ବଜାଇ ଦେବୀ ସେମାନଙ୍କୁ ଦିବ୍ୟତ୍ୱର ଡାକରା ଦିଅନ୍ତି । ଏହି ଡାକରା ଯେଉଁମାନେ ଶୁଣି ପାରନ୍ତି ସେମାନଙ୍କର ଜ୍ଞାନ ରୂପକ ପଦ୍ମ ଫୁଟିବାକୁ ଆରମ୍ଭ କରେ । ମାତ୍ର ମଣିଷ ଭିତରେ ଥିବା ଏହି ସଇତାନଗୁଡ଼ିକର ଗର୍ବ ଏତେ ବେଶୀ ଯେ କୌଣସି କୋମଳ ଉପଦେଶ ଏମାନଙ୍କୁ କାଟୁ କରେ ନାହିଁ । ନଶୁଣି ପାରିଲେ ଦେବୀ ଗଦାରେ ମୃଦୁ ପ୍ରହାର କରନ୍ତି । ଶୁଣି ନଶୁଣିଲାପରି ହେଲେ ରକ୍ତ ବିନ୍ଦୁ ଟପ୍ ଟପ୍ ଝରି ପଡୁଥିବା ଭୟଙ୍କର ଖଡ୍ଗ ଭୈରବୀ ଉତ୍ତୋଳନ କରନ୍ତି । ଶେଷରେ ବିଫଳ ହେଲେ ଚକ୍ରପେଷି ଦୃଷ୍ଟଶକ୍ତିଗୁଡ଼ିକୁ ନିର୍ମୂଳେ ବିନାଶ କରନ୍ତି । ଦୁର୍ବଳତା, କ୍ଷୁଦ୍ରତା ଓ ସଂକୀର୍ଣ୍ଣତାକୁ ସେ ଦୂର କରନ୍ତି । ମିଥ୍ୟା ମୂଲ୍ୟବୋଧ ଓ ଦୁଷ୍ଟ ପ୍ରବୃତ୍ତି ନରମୁଣ୍ଡର ପ୍ରତୀକ । ସେଗୁଡ଼ିକ ହତ୍ୟାକରି ଦେବୀ ହୋଇଛନ୍ତି ନରମୁଣ୍ଡମାଳିନୀ । ତାଙ୍କର କୃପା ହେଲେ ଏହି ନକରାତ୍ମକ ଶକ୍ତିଗୁଡ଼ିକର ବିନାଶ ସହଜ ହୋଇଥାଏ । ଯେ ପର୍ଯ୍ୟନ୍ତ ସାଧକ ତା’ ଭିତରେ ଥିବା ତମୋମୟ ବିକାରଗୁଡ଼ିକ ହତ୍ୟା କରି ସେମାନଙ୍କର ଖପୁରିର ମାଳା ଗଳାରେ ନ ପିନ୍ଧିଛି, ସେପର୍ଯ୍ୟନ୍ତ ତା’ ଭିତରେ ସୁଗୁଣାବଳୀର ବିକାଶ ନିମନ୍ତେ କ୍ଷେତ୍ର ପ୍ରସ୍ତୁତ ହୋଇପାରିବ ନାହିଁ । ମନ୍ଦ ପ୍ରବୃତ୍ତିକୁ ନିବୃତ୍ତ କରିବା ଯେତିକି ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ, ସାଧନାର ଧନାତ୍ମକ ଦିଗରେ ଅଭ୍ୟାସ ଆରମ୍ଭ କରିବା ସେତିକି ଜରୁରୀ । ନହେଲେ ଖାଲି ଜାଗା ଦେଖିଲେ ସେମାନେ ପଛ ଦୁଆର ଦେଇ ପୁଣି ଧସେଇ ପଶିବେ । ରାଜରାଜେଶ୍ୱରୀ ଲକ୍ଷ୍ମୀ କେବଳ ଭୌତିକ ସଂପତ୍ତି ଓ ଅଧିକାରର ପ୍ରତୀକ ନୁହଁନ୍ତି, ସେ ମଧ୍ୟ ଇଚ୍ଛା, ଦୟା, କ୍ଷମା, ଶୋଭା, ମେଧା, ଶ୍ରଦ୍ଧା, ଶ୍ରୁତି, ସ୍ମୃତି, ଶାନ୍ତି ଓ ବୁଦ୍ଧି ରୂପରେ ପରିପ୍ରକାଶମାନ ଦିବ୍ୟ ସଂପତ୍ତି । ଦିବ୍ୟ ସଂପତ୍ତି ନଥିଲେ ରାବଣ ଓ ମହିଷାସୁରର ଅକଳନୀୟ ଭୌତିକ ସଂପତ୍ତିର ଅସଦୁପଯୋଗ ହୋଇଥାଏ ଓ ସ୍ଥଳ ବିଶେଷରେ ଧ୍ୱଂସ ପାଇ ନିଃଶେଷ ମଧ୍ୟ ହୋଇଯାଏ । ତେଣୁ ପ୍ରଥମ ତିନିଦିନ ତମୋଗୁଣର ବିନାଶ ପାଇଁ ଦୁର୍ଗାଙ୍କୁ ଉପାସନା କଲାପରେ ଦ୍ୱିତୀୟ ତିନିଦିନ ରଜୋଗୁଣର ପ୍ରତୀକ ଲକ୍ଷ୍ମୀଙ୍କୁ ଆରାଧନା କରାଯାଇଥାଏ ଦିବ୍ୟଗୁଣର ଜାଗରଣ ପାଇଁ ।

ବିବେକ, ବିଚାର, ବୋଧଶକ୍ତି, କଳା, କାବ୍ୟିକ, ପ୍ରତିଭା, ଯୁକ୍ତି, ସଂଗୀତ, ଭାଷା, ଶିକ୍ଷଣ ଓ ସମସ୍ତ ଜ୍ଞାନର ପ୍ରତୀକ ସରସ୍ୱତୀ । ସେ ବାଣୀମାତା । ଭାରତୀୟ ପ୍ରଜ୍ଞାନର ପ୍ରତୀକ । ଆତ୍ମଜ୍ଞାନର ପ୍ରବହମାନ ସ୍ରୋତ । ପ୍ରଥମେ ମନର ମଳକୁ ଦୂର କରି ଦ୍ୱିତୀୟରେ

ମହାନ୍ ମୂଲ୍ୟବୋଧ ଓ ଗୁଣର ଅଭ୍ୟାସ କରି ତୃତୀୟ ଓ ଅନ୍ତିମ ପର୍ଯ୍ୟାୟରେ ଆତ୍ମଜ୍ଞାନ ଲାଭ କରିବା ପାଇଁ ସତ୍ତ୍ୱଗୁଣର ପ୍ରତୀକ ସରସ୍ୱତୀଙ୍କ ଉପାସନା କରାଯାଇଥାଏ । ଏହିପରି ସାଧନାର ସୋପାନଗୁଡ଼ିକ ସାଧକ ଅତିକ୍ରମ କରି ଦଶମ ଦିନରେ ମାତା ବିଜୟାଙ୍କ କୃପାବଳରେ ମନକୁ ଜୟ କରି ପାରିଥିବାରୁ ଏହି ପର୍ବକୁ ବିଜୟାଦଶମୀ କୁହାଯାଏ ।

ପୂଜା ଓ ସଙ୍କେତର ରାଜ୍ୟ ବିସ୍ତୃତ ଓ ବ୍ୟାପକ । ଉପାସକମାନଙ୍କର ମାନସିକ ସ୍ତର ଭେଦରେ ବ୍ରହ୍ମଚେତନା, ଧ୍ୟାନ, ଜପସ୍ତୁତି ଓ ମୂର୍ତ୍ତିପୂଜା ଈଶ୍ୱରଙ୍କ ପାଖରେ ପହଞ୍ଚିବାର ଚାରୋଟି ମାର୍ଗ ଅଟେ । ଜଣେ ସାଧକ ଜୀବନରେ ମଧ୍ୟ ପ୍ରତିମା ପୂଜା, ଜପସ୍ତୋତ୍ର, ଧ୍ୟାନ ଓ ବ୍ରହ୍ମଚେତନା - ଏହି କ୍ରମିକ ସ୍ତରଗୁଡ଼ିକ ଗୋଟିଏ ଗୋଟିଏ ପାହାଚ ରୂପେ କାର୍ଯ୍ୟ କରିଥାଏ । ଶୁଦ୍ଧ ବ୍ରହ୍ମଚେତନା ସ୍ତରକୁ ସାଧକ ସିଧା ଯାଇପାରୁ ନଥିଲାବେଳେ ସେ ପ୍ରତୀକର ସାହାଯ୍ୟ ଲୋଡ଼େ । ଶଙ୍କରାଚାର୍ଯ୍ୟ କହନ୍ତି, ସଗୁଣ ଉପାସନା ମାଧ୍ୟମରେ ନିର୍ଗୁଣବ୍ରହ୍ମ ପ୍ରାପ୍ତି ସହଜ । ଗୋଟିଏ ଦେବୀମୂର୍ତ୍ତିକୁ ଆଗରେ ରଖି ଭକ୍ତ ମା' ବୋଲି ଡାକେ । ଯେତେ ପ୍ରକାର ସଂପର୍କ ଏ ସଂସାରରେ ରହିଛି ମା' ସଂପର୍କ ସବୁଠାରୁ ଉତ୍ତମ । ମା' ଶିଶୁ ପ୍ରତି ବାତ୍ସଲ୍ୟପ୍ରେମର ନିକଟତମ ହୋଇଥିବାରୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବେଶ୍ ଆକର୍ଷଣୀୟ ଓ ଆବେଗମୟ । ତେଣୁ ବହୁକାଳୁ ମାତୃପୂଜା ଆମ ସମାଜରେ ପ୍ରଚଳିତ । ମା' ନିଃସ୍ୱାର୍ଥପର ସେବାର ଜୀବନ୍ତ ବିଗ୍ରହ । ଏ ଜୀବଜଗତ ଗୋଟିଏ ମା'ର ଭଲ ପାଇବାର ଉଷ୍ମତାରେ କୋଳାଗ୍ରତ ହେବାକୁ ଚାହେଁ । ପୁତ୍ର ମା' ପାଖରେ ତା'ର ମନର କଥା ଯେପରି ଖୋଲାଖୋଲି ଭାବରେ କହିପାରେ ଆଉ କାହାକୁ ସେପରି କହିପାରେ ନାହିଁ । ପରମଶକ୍ତିକୁ ଦିବ୍ୟ ମାତୃଭାବନାରେ ପୂଜା କଲେ ମନୁଷ୍ୟର କାମିନୀବାସନା ଶୀତଳ ହୋଇଯାଏ । ତା'ର ପାପ ତାପ କ୍ଲିଷ୍ଟ ହୃଦୟ ଟିକେ ଉପଶମ ଲଭେ । ମାତା ନିର୍ମାତା ଅଟନ୍ତି । ଦିନେ ଏହି ମାତୃପ୍ରେମରେ ବିଗଳିତ ହୋଇଥିଲେ ଶ୍ରୀରାମକୃଷ୍ଣ ପରମହଂସ । ଅଦ୍ୱୈତ ବେଦାନ୍ତର ଶ୍ରେଷ୍ଠ ଆଚାର୍ଯ୍ୟ ଶ୍ରୀମଦ୍ ଶଙ୍କରାଚାର୍ଯ୍ୟ ମଧ୍ୟ ଭକ୍ତିର ନୈବେଦ୍ୟ ବାଢ଼ି ସୌନ୍ଦର୍ଯ୍ୟ ଲହରୀ ପରି ସ୍ତୋତ୍ର ପରେ ସ୍ତୋତ୍ର ରଚନା କରିଥିଲେ । ମାୟାକୁ ହଟାଇବା ପାଇଁ ଭକ୍ତ କରେ ପ୍ରାର୍ଥନା - ହେ ଜଗଦମ୍ବିକେ, ଆପଣ ଦୟାମୟୀ । ଆମ ଦ୍ୱାରା ଅନୁଷ୍ଠିତ ପାପାଚରଣକୁ ଉପେକ୍ଷା କରନ୍ତୁ । ବାସନା ରୂପୀ ବ୍ୟାଘ୍ରଠାରୁ ଆମକୁ ରକ୍ଷା କରନ୍ତୁ । 'ଜ୍ୟୋତିଷା ବାଧତେ ତମଃ' (ଋଗ୍‌ବେଦ ୧୦.୧୦.୧୨୭) ଅର୍ଥାତ୍ ଚିନ୍ମୟୀ ଦେବୀ ଜ୍ଞାନମୟ ଜ୍ୟୋତିଦ୍ୱାରା ଜୀବମାନଙ୍କର ଅଜ୍ଞାନ ଅନ୍ଧକାରକୁ ନାଶ କରି ଦିଅନ୍ତି । ତାଙ୍କୁ ପ୍ରାର୍ଥନା କରାଯାଇଛି - ଉଷ ! ଋଣୀବ ଯାତୟ । ହେ ଉଷା ! ହେ ରାତ୍ରିର ଅଧିଷ୍ଠାତ୍ରୀ ଦେବୀ ! ସବୁଆଡ଼େ ବ୍ୟାପ୍ତ ହୋଇଥିବ । ଏହି ଅଜ୍ଞାନମୟ କଳା ଅନ୍ଧକାର ମୋ' ପାଖରେ ପହଞ୍ଚିଯାଇଛି । ତୁମେ ଏହାକୁ ଋଣ ପରି ଦୂର କର । ଯେପରି ଧନ ଦେଇ ଆପଣ ଭକ୍ତମାନଙ୍କର ଋଣ ଦୂର କରନ୍ତି ସେହି ପ୍ରକାର ଜ୍ଞାନ ଦେଇ ଏହି ଅଜ୍ଞାନକୁ ମଧ୍ୟ ହଟାନ୍ତୁ । ଯେଉଁଠାରେ ଭକ୍ତର ମନ ଘୂରିବୁଲେ ସେଠାରେ ତାଙ୍କର ରୂପ ଏବଂ ଯେଉଁଠାରେ ଭକ୍ତ ମଥା ରଖେ ସେଠାରେ ତାଙ୍କର ପାଦପଦ୍ମ । ସକାମ ଭକ୍ତ ଭଦ୍ରକାଳୀଙ୍କ ସେବା କରିବା ଦ୍ୱାରା ମନ ଅଭିଳଷିତ ଦୁର୍ଲ୍ଲଭତମ ବସ୍ତୁ ବା ସ୍ଥିତି ସହଜରେ ପ୍ରାପ୍ତ ହୁଏ ଏବଂ ନିଷ୍କାମ ଭକ୍ତ ପରମ ଦୁର୍ଲ୍ଲଭ ମୋକ୍ଷ ଲାଭ କରି କୃତାର୍ଥ ହୁଏ ।

ଶକ୍ତିକୁ ତା'ର ମୂଳ ଅବ୍ୟକ୍ତ ରୂପରେ ପୂଜା କରିବା ସମ୍ଭବ ନହୋଇ ପାରିବାରୁ ତାଙ୍କୁ ବ୍ୟକ୍ତ ରୂପରେ ପୂଜା କରାଯାଇଛି । ସାଧନାର ପ୍ରାରମ୍ଭିକ କ୍ଷେତ୍ରରେ ସ୍ଥୂଳବୁଦ୍ଧି ଉପାସକ ପାଇଁ ପ୍ରତିମା ଲୋଡ଼ା । ମୂର୍ତ୍ତିଗୁଡ଼ିକ ଗୋଟିଏ ଗୋଟିଏ ପରଦା । ମଣିଷ ଭିତରର ସୂକ୍ଷ୍ମ ଘଟଣାଗୁଡ଼ିକ ସେଠାରେ ପ୍ରତିବିମ୍ବିତ ହୁଏ । ଚିତ୍ର ଦ୍ୱାରା ଚିତ୍‌ଶକ୍ତିର ଅନୁଭବ ଧୀରେ ଧୀରେ ଆସେ । ଏହା ସମ୍ଭବ ହୁଏ ଜପ ଓ ଧ୍ୟାନ ବଳରେ । ସ୍ୱପ୍ନ ଭାଙ୍ଗିଯାଏ । ସତ୍ୟର ସ୍ୱରୂପ ଆପଣା ଛାଏଁ ଭାସି ଉଠେ । ସମସ୍ତ ଦ୍ୱୈତଭାବନା ଅପସରିଯାଏ । ସୋ଼ହଂ ଭାବ ପ୍ରତିଷ୍ଠିତ ହୁଏ । ରୂପ ଓ ନାମର ଆବଶ୍ୟକତା ରହେ ନାହିଁ । ଭକ୍ତ ଅନୁଭବ କରେ ସେ ନିରାକାର । ଅରୂପ । ତେଣୁ ରୂପକୁ ଗଙ୍ଗାଜଳରେ ବିସର୍ଜନ କରେ । ଗଙ୍ଗାଜଳ ଜ୍ଞାନର ସ୍ରୋତ । ତେଣୁ ପରିଶେଷରେ ଭକ୍ତ ଜ୍ଞାନର ସ୍ରୋତରେ ଭାସି ଭାସି ଯାଇ ଶକ୍ତିର ମହାସାଗରେ ନିଜର ସତ୍ତା ହରାଇ ବସେ । ଆଦ୍ୟାଶକ୍ତିଙ୍କଠାରେ ଲୀନ ହୋଇଯାଏ ।

ସଂଗଠନ ସଂପାଦକ 'ବର୍ଷା'
ବି-୯୩/୧, ନାଲକୋ
ଦାମନଯୋଡ଼ି, କୋରାପୁଟ-୭୬୩୦୦୮



# ଭବନେଷ୍ଠ ମାତା !

କୃଷ୍ଣ ପ୍ରିୟା ଦାସ

**ବି**ପଦ ଆପଦ କଥା ଦୂରେ ଥାଉ, ସାମାନ୍ୟ ଚମକି ପଡ଼ିଲେ ମଧ ମୁହଁରୁ ବାହାରି ଯାଏ ... ଏ ମାଆଲୋ ... !

ମା' ଆଦ୍ୟ ପ୍ରଭାତରୁ, ସୂର୍ଯ୍ୟାସ୍ତର ଅନ୍ତିମ କିରଣ ପର୍ଯ୍ୟନ୍ତ ସହାୟିକା ଭାବେ ନିଯୁକ୍ତ ରହିଥାଏ ଯେପରି ମା' ବିନା, ସାହା କିଏ ହେବ ? ସନ୍ତାନର ଚଲାପଥରେ ମମତାର ଫୁଲ ଝରାଇ ଆଗେଇ ନେବ ଆଗକୁ । ଅରାତିମାନଙ୍କୁ ଅପସାରିତ କରିଦେବ ପଣତି କାନିରେ ! ଅମୃତର ଆଦ୍ୟଧାରା ଦେଇ ସଂଜୀବିତ କରାଇବ ଶକ୍ତି ... !

ମା' ଶବ୍ଦଟିର ଅର୍ଥ ଅତ୍ୟନ୍ତ ଗଭୀର । ତଥ୍ୟ ଓ ତତ୍ତ୍ୱ ଅଙ୍ଗାଙ୍ଗୀ ଜଡ଼ିତ ହେଲେ ହେଁ ତଥ୍ୟ ସ୍ଥୂଳ, ତତ୍ତ୍ୱ ସୂକ୍ଷ୍ମ । ତଥ୍ୟ ପଲ୍ଲବିତ ଫଳାନ୍ୱିତ, ତତ୍ତ୍ୱ ମୂଳାନୁଗତ । ତଥ୍ୟ ବ୍ୟବହାରିକ, ତତ୍ତ୍ୱ ପାରମାର୍ଥିକ । ସର୍ବଦେବତାଙ୍କ ତେଜ ବହନ କରି, କାଳାନଳ ମଧ୍ୟରୁ ଦେବୀ ଦୁର୍ଗାଙ୍କ ଆବିର୍ଭାବ - ଏହା ତଥ୍ୟ । ଆଦ୍ୟାଶକ୍ତି, ତ୍ରିଦେବ ଜନନୀ, ମହାଶୂନ୍ୟ ନିବାସିନୀ ଶାକମ୍ଭରୀ, ଏହା ତତ୍ତ୍ୱ । ଏହି ତତ୍ତ୍ୱକୁ ବୁଝିବା ବ୍ୟକ୍ତି କେବଳ ମାତୃକୃପାକୁ ଅନୁଭବ କରିପାରିବ । ଅନ୍ୟଥା ନୁହେଁ । ଶ୍ରୀଚଣ୍ଡୀର ପ୍ରଥମ ଅଧ୍ୟାୟରେ ହିଁ ସ୍ୱତନ୍ତ୍ର ମତ ପ୍ରକାଶ କରାଯାଇଅଛି -

'ତ୍ୱୟୈତଦ୍ଧାର୍ଯ୍ୟତେ ବିଶ୍ୱଂ ତ୍ୱୟୈତ ସୃଜ୍ୟତେ ଜଗତ୍ ।
ତ୍ୱୟୈ ତଦ୍ ପାଲ୍ୟତେ ଦେବୀ ତ୍ୱମସ୍ୟନ୍ତେ ଚ ସର୍ବଦା ।'

ସୃଷ୍ଟି, ସ୍ଥିତି, ଲୟ ପ୍ରୋକ୍ତ କାର୍ଯ୍ୟକ୍ରମର ପରମ କର୍ତ୍ତୀ ମାତୃଶକ୍ତି । କେତେବେଳେ ତଥ୍ୟ, କେତେବେଳେ ତତ୍ତ୍ୱ ଭାବରେ ପରିକଳ୍ପିତ । ଦେବୀ ସାବିତ୍ରୀଙ୍କ ଶକ୍ତି, ଧର୍ମରାଜଙ୍କଠାରୁ ଅଧିକ ଥିଲା । ପତିବ୍ରତାର ତେଜରେ ଯଜ୍ଞପତି ପରାସ୍ତ ସ୍ୱୀକାର କଲେ । ଦତ୍ତାତ୍ରେୟଙ୍କ ମାତା, ଦେବୀ ଅନୁସୂୟାଙ୍କ ମାତୃଶକ୍ତି ପାଖରେ, ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ମଧ ହାର ମାନି ଥିଲେ । ଜନନୀ ମଦାଳସାଙ୍କ ଜ୍ଞାନ ଗର୍ଭକ 'ଲୋରୀ' ଶୁଣି, ଶୁଣି ତାଙ୍କ ସନ୍ତାନମାନେ ସ୍ତନ୍ୟପାନ ଅବସ୍ଥାରୁ ହିଁ ବେଦାନ୍ତ ଜ୍ଞାନ ଆହରଣ କରି, ପରବର୍ତ୍ତୀ କାଳରେ, ଦିବ୍ୟଦ୍ରଷ୍ଟା ମୁନି ପୁଙ୍ଗବ ହୋଇ ପାରିଥିଲେ । ଏହା ତଥ୍ୟ । ବିଶ୍ୱମ୍ଭରା ଚିନ୍ମୟୀ ମାତୃଶକ୍ତିଙ୍କର ଅଲୌକିକ କରୁଣାକୁ ହୃଦୟଙ୍ଗମ କରି, ବିପଦ ମୁକ୍ତ ହେବା ତଥା ଅଦୃଶ୍ୟ ଶକ୍ତିଙ୍କ ସତ୍ତା ଉପଲବ୍‌ଧି କରିବା ତତ୍ତ୍ୱ । ତେଣୁ ତାଙ୍କୁ ଚଣ୍ଡୀର ଏକାଦଶ ଅଧ୍ୟାୟରେ ନାରାୟଣୀ ରୂପରେ ସ୍ତବ କରାଯାଇଅଛି । ଯଥା-

'ସୃଷ୍ଟି ସ୍ଥିତି ବିନାଶାନାଂ ଶକ୍ତିଭୂତେ ସନାତନୀ ।
ଗୁଣାଶ୍ରୟେ ଗୁଣମୟେ ନାରାୟଣୀ ନମୋ[illegible]ସ୍ତୁତେ ।।'

ତ୍ରିଗୁଣ ମୟୀ ଦେବୀ ନାରାୟଣୀଙ୍କୁ ନ ଚିହ୍ନି, ଶାଗ ବିକାଳି, ମଣି ହରାଇଲା ପରି ଆମର ଦୁର୍ଦ୍ଦଶା ହେଉଛି । ଅନୁଭବାତ୍ମକ - ତ୍ରିଜଗତ ଜନନୀ ଦଶଭୁଜାଙ୍କର ଦଶଟିଯାକ ଆର୍ଶ ହସ୍ତ ଆମରି ଆଡ଼କୁ ପ୍ରସାରିତ ହୋଇ ରହିଛି । ସ୍ନେହର ପଣତ ଘୋଡାଇ, ମମତାର କୋଳରେ କୋଳେଇ ନେବାକୁ ବାରମ୍ବାର ଚେଷ୍ଟା କରି ଆସୁଛି । ତଥାପି ଜୀବ ମାୟା ମୋହ ଅନ୍ଧକାର ଭିତରେ ଜଡ଼ି ରହି, ସେଥିପ୍ରତି ଧ୍ୟାନ ଦେଉନି । ଏହାଠାରୁ ବୋକାମି ଆଉ କ'ଣ ହୋଇପାରେ ?

ଅଧମାଧମ ମଣିଷ ବିଷୟାରେ ମଜ୍ଜି, ମାଆକୁ ନଭଜି, ଦିନପରେ ଦିନ ଆୟୁଷକୁ କ୍ଷିଣ କରୁଚି ପଛେ, ପରମାର୍ଥକୁ ଚିନ୍ତା କରୁନି

'ଶ୍ୱଃ କାର୍ଯ୍ୟ ମଦ୍ୟ କର୍ତ୍ତବ୍ୟଂ ପୂର୍ବାହ୍ନେ ଚାପ ରାହ୍ନିକଂ ।
ନହି ପ୍ରତୀକ୍ଷତେ ମୃତ୍ୟୁଃ କୃତ ମସ୍ୟ ନ ବା କୃତମ୍ ।।'

ମନେ ରଖିବା ଉଚିତ - ଆସନ୍ତା କାଲିର କାର୍ଯ୍ୟ, ଆଜି ହିଁ ତୁଟାଇ ଦେବା ଦରକାର । ଯାହା ଅପରାହ୍ନରେ କରିବାକୁ ଅଛି, ପୂର୍ବାହ୍ନରୁ ସାରିଦିଅ । ମୃତ୍ୟୁ ଅପେକ୍ଷା କରି ରହିଛି । ହୁଏତ ସୁଯୋଗ ଦେଇନପାରେ ।

ଭକ୍ତି ଭାବରେ ଭଗବତୀ ବାକ୍ୟ ପାଳନ କରି, ତାଙ୍କ ପାଦ ପଦ୍ମରେ ସମର୍ପିତ ହୋଇଯାଅ । ତୁମର ସମସ୍ତ ଅରୀଷ୍ଟ ଖଣ୍ଡନ ହୋଇଯିବ । ଶ୍ରୀଚଣ୍ଡୀରେ, ଶ୍ରୀମୁଖ ନିଃଶୃତ ବାଣୀକୁ ଲକ୍ଷ୍ୟ କରାଯାଉ -

'ରକ୍ଷୋ ଭୂତ ପିଶାଚାନାଂ ପଠନା ଦେବ ନାଶନମ୍ ।
ସର୍ବଂ ମମୈତଦ୍ ମାହାତ୍ମ୍ୟଂ ମମ ସନ୍ନିଧିକାରକମ୍ ।।'

ଦେବୀ କହିଲେ - ହେ ଭକ୍ତ ! ମୋତେ ପ୍ରାର୍ଥନା କର, ମୋ ସ୍ତବ ପାଠ କଲେ ତୁମର ସମସ୍ତ ଭୟ ବିନାଶ ହୋଇଯିବ । ରକ୍ଷ,

ଯକ୍ଷ, ଭୂତ, ପିଚାଶର ଛାୟା ମଧ ପଡ଼ିବ ନାହିଁ । ଶେଷରେ ମୋର ପବିତ୍ର ଧାମରେ ନିବାସ କରି, ଆତ୍ମାନନ୍ଦ ପ୍ରାପ୍ତି କରିବ । ଏହା ଦ୍ୱାଦଶ ଅଧ୍ୟାୟ ଶ୍ରୀଚଣ୍ଡୀରେ ଭଗବତୀଙ୍କ ନିରାଧାର ଉଦ୍‌ଘୋଷଣ । ସର୍ବପ୍ରଥମେ ମନରେ ଆସ୍ଥା ସ୍ଥାପନ କର । ବିଶ୍ୱାସ ଥିଲେ, ବିଷ ମଧ ଅମୃତ ପାଲଟିଯିବ ।

'ଥରେ ପ୍ରବଳ ବନ୍ୟା ଆସିଲା । ଗାଁଗଣ୍ଡା ଜଳମଗ୍ନ । ଜଣେ ଯୁବକ ଦୈବାତ୍ ଭାସି ଆସି, ଗୋଟାଏ ପାହାଡ଼ କଡ଼ରେ ଲାଗି ବଞ୍ଚିଗଲା । ଭୋକରେ ପେଟ ଜଳୁଚି । କିଛି ଖାଦ୍ୟ ଆଶାରେ ପାହାଡ଼ ଉପରକୁ ଯାଇ ଦେଖିଲା, ଜଣେ ସିଦ୍ଧ ପୁରୁଷ ତପସ୍ୟା ରତ ଅଛନ୍ତି । ଯୁବକଟି ତାଙ୍କ ପାଖକୁ ଯାଇ, କିଛି ଖାଦ୍ୟ ପାଇଁ ପ୍ରାର୍ଥନା କଲା । ମହାତ୍ମାତ, ସ୍ୱୟଂ ପବନ ଆହାରୀ, ସେ ଲଣ୍ଡା ପାହାଡ଼ରୁ ଖାଦ୍ୟ କୋଉଁଠୁ ଆଣିବେ ?

ସେ ଆଶ୍ୱାସନା ଦେଇ କହିଲେ, ବାବା ତୁମେ ଏ ଜଳାର୍ଣ୍ଣବର ଅପରପାର୍ଶ୍ୱକୁ ଚାଲିଯାଅ, ସେଠାରେ ଅନଛତ୍ର ଖୋଲାଯାଇଛି ।

ଯୁବକଟି ବିସ୍ମୟ ପ୍ରକାଶ କରି କହିଲା, ଆପଣ ତ ଖାଦ୍ୟ ମୁଠେ ଦେବାକୁ ସମର୍ଥ ନୁହନ୍ତି, କିନ୍ତୁ ମୃତ୍ୟୁ ମୁଖକୁ ଠେଲି ଦେବାକୁ ତତ୍ପର ।

ମହାତ୍ମା ସାମାନ୍ୟ ହସି ଦେଇ, ଗୋଟିଏ ବଟପତ୍ରରେ କଣ ଲେଖି ତାକୁ ଚାରି ଚଉତା କରି, ଯୁବକର ହାତ ମୁଠାରେ ଧରାଇ ଦେଲେ ଏବଂ କହିଲେ ଯେ' ତୁମର ରକ୍ଷା କବଚ । ଶ୍ରଦ୍ଧା, ବିଶ୍ୱାସରେ ଏହାକୁ ଧାରଣ କରି, ପ୍ରଳୟ ଜଳରାଶିକୁ ଅକ୍ଳେଶରେ ପାର କରିପାରିବ ।

ଯୁବକଟି ପୂର୍ଣ୍ଣ ବିଶ୍ୱାସରେ ଅଥଳ ଜଳ ରାଶିକୁ ଓହ୍ଲାଇ ଗଲା । ଆଶ୍ଚର୍ଯ୍ୟ ... ଯୋଉଠି ମହା ମହା ଦ୍ରୁମ ବୁଡ଼ି ଯାଇଅଛନ୍ତି, ସେଠି, ତାକୁ ପାଣି ମାତ୍ର ଆଣ୍ଠୁଏ । ଯାଉ ଯାଉ ଅଧାବାଟରେ ଭାବିଲା ଏଥିରେ କି ଆଶ୍ଚର୍ଯ୍ୟ କର ଶକ୍ତି ରହିଛି, ଯାହାର ଚମତ୍କାରିତା ଏପରି ? ମନର କୌତୁହଳକୁ ରୋକି ନପାରି, ପତ୍ରଟି ଖୋଲି ଦେଖିଲା, ସେଥିରେ କେବଳ ମା' ଶବ୍ଦଟିଏ ଉଲ୍ଲେଖ କରାଯାଇଅଛି । ତାଚ୍ଛଲ୍ୟ ଖେଳାଇ କହିଲା, ସାମାନ୍ୟ ଅକ୍ଷର ଗୋଟିକରେ, ଅଥଳ ଜଳ ସଥଳ ହୋଇପାରୁଛି ? ସନ୍ଦେହ ଆସିବା ମାତ୍ରେ, ପ୍ରବଳଝଡ଼ ଓ ପ୍ରକାଣ୍ଡ ଲହରୀମାନ ଉସୁଳି ଉଠିଲା । ଚାହୁଁ, ଚାହୁଁ ଜଳ ଭଉଁରୀ ମଧରେ ପେଶି ହୋଇଗଲା ଯୁବକ ।'

ଆଜିର ଯାବତୀୟ ଅବସ୍ଥା ଏହିପରି । ବିଶ୍ୱାସ ଭିତରେ ଅବିଶ୍ୱାସଟିଏ ଉଙ୍କିମାରି ସର୍ବନାଶ ଆଡ଼କୁ ଟାଣି ନେଉଛି । ଏହା କେବଳ ମାତୃଶକ୍ତି ଉପରୁ ବିଶ୍ୱାସ ହରାଇ ତାଚ୍ଛଲ୍ୟ କରିବାର ଫଳ । ତେବେ 'ବୈକୃତିକ ରହସ୍ୟମ୍'ର ଶ୍ଳୋକ ଆଡ଼କୁ ଧାନ ଦେବା ।

'ଯୋ ନ ପୂଜୟତେ ନିତ୍ୟଂ ଚଣ୍ଡିକା ଭକ୍ତ ବତ୍ସଳାଂ ।
ଭସ୍ମୀ କୃତ୍ୟାସୀ ପୂଣ୍ୟାନି ନିର୍ଦହେତ୍ ପରମେଶ୍ୱରୀଃ ।'

ଯେଉଁ ବ୍ୟକ୍ତି ଦୈନନ୍ଦିନ ଭକ୍ତ ବତ୍ସଳା, ଚଣ୍ଡିକାଙ୍କ ଉପାସନା ନକରେ ତାଙ୍କ ପୂଜାକୁ ବିମୁଖ ହୁଏ, ତା'ର ସମସ୍ତ ପୁଣ୍ୟ ଭସ୍ମସାତ୍ ହୋଇ, ମାତୃକୃପା ରହିତ ଶ୍ରୀହୀନ ଭାବେ ବିପତ୍ତି ପଥକୁ ଆଶ୍ରୟ କରେ । ଚେତାବନୀରେ, କୁହାଯାଇପାରିବ -

'ହେ ଅମୃତର ସନ୍ତାନ ସମୂହ, ତୁମେ ସଦା ଶୁଦ୍ଧ, ପବିତ୍ର ଭାବନା ନେଇ, ମା'ର ପାଦପଦ୍ମକୁ ଧାନ କର । ପ୍ରତି ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ତୁମ ଜାତକରୁ ଗୋଟାଏ, ଗୋଟାଏ ଦିନ ଅବକ୍ଷୟ ହେଉଚି । କର୍ତ୍ତବ୍ୟ ସଂପାଦନର ସମୟ ମଧ ଅତି ସୀମିତ । ଅତଏବ ବିଳମ୍ବତା ଶୋଭା ପାଏନି । ଉଠ ... ଜାଗ୍ରତ ହୁଅ । ଆଧ୍ୟାତ୍ମିକ ମାର୍ଗରେ ସକ୍ରିୟ ହୋଇ, ପ୍ରତି ପ୍ରଭାତରେ ମା'ର କରୁଣା ଭିକ୍ଷା କର । ଆନ୍ତରିକ ଭକ୍ତି ସ୍ଥାପନ କଲେ, ସେ ତୁମକୁ ମାନବରୁ, ମାଧବ ସୁନ୍ଦର କରି, ଜୀବନର ସୂକ୍ଷ୍ମ ଉଦ୍ଦେଶ୍ୟ ପୂର୍ଣ୍ଣ କରିବେ ।'

ଧରାଧାମରେ ସମସ୍ତ ପ୍ରାଣୀଙ୍କ ପାଇଁ ତଥା ସୌରମଣ୍ଡଳ ନିମନ୍ତେ, ସୂର୍ଯ୍ୟଙ୍କର ଯେପରି ଆବଶ୍ୟକତା ରହିଛି, ତଦ୍ରୁପ ମାତୃଶକ୍ତିଙ୍କ ଆବଶ୍ୟକତା ସୃଷ୍ଟିର ସମସ୍ତ ପ୍ରାଣୀ ଗଣଙ୍କ ନିମନ୍ତେ ଏକାନ୍ତ ଅପରିହାର୍ଯ୍ୟ । ସେ ସତ୍ତ୍ୱ, ରଜ, ତମ ତ୍ରିଗୁଣା, ତ୍ରିବିଧା ସର୍ବବ୍ୟାପିଣୀ । ଏକରୁ ଅନେକ ହୋଇ ପୂଜା ପାଉ ଅଛନ୍ତି । ଏ ସମସ୍ତ ଅନନ୍ତ କୋଟି ବ୍ରହ୍ମାଣ୍ଡର ଅଧିଷ୍ଠାତ୍ରୀ ଦେବୀ ଦୁର୍ଗାଙ୍କର ବିଭୂତି ଚୟ । ଶ୍ରୀଚଣ୍ଡୀର ଦଶମ[illegible]ାୟରେ, ସ୍ୱୟଂ ବର୍ଣ୍ଣିତ ବାକ୍ୟ -

'ଏକୈବା[illegible]ଂ ଜଗତ୍ୟତ୍ର ଦ୍ୱିତୀୟା କା ସମା[illegible]ରା ।
ପଶୈ୍ୟତାଃ ଦୁଷ୍ଟ ମୟୋବ ବିଶନ୍ତ୍ୟୋମଦ୍ ବିଭୂତୟଃ ।।'

ଋକ୍ ବେଦର 'ଦେବୀ ସୂକ୍ତ' ଉପରେ ଅନୁଧ୍ୟାନ କଲେ ଅଧିକ ପ୍ରାଞ୍ଜଳ ହେବ । ଯଥା-

'ଅହଂ ରଦ୍ରେଭିଃ ବସୁଭିଶ୍ଚରାମ୍ୟହ୍‌ମାଦିତ୍ୟୈରୁତ
- ବିଶ୍ୱଦେବୈଃ,
ଅହଂ ମିତ୍ରା ବରୁଣାବୁଭୌ ବିଭର୍ମ୍ୟହମିନ୍ଦ୍ରାଗ୍ନୀ -
- ଅହମଶ୍ୱିନା ବୁଭୌ ।'

ଅର୍ଥାତ୍, ଏକାଦଶ ରଦ୍ର, ଦ୍ୱାଦଶ ଆଦିତ୍ୟ, ଅଷ୍ଟବସୁ, ଆଦି ଯେତେଦେବଗଣ, ଅଗ୍ନି, ବରୁଣ, ମିତ୍ର, ଅଶ୍ୱିନୀ କୁମାର ଯେତେ, ସବୁ ମହାଦେବୀ ଚଣ୍ଡୀଙ୍କ ଅଂଶ ବିଶେଷ ଅଟନ୍ତି । ସେ ସତ୍ତ୍ୱ ଗୁଣେ, ସରସ୍ୱତୀ ! ରଜଗୁଣେ, ମହାଲକ୍ଷ୍ମୀ । ତମଗୁଣେ ମହାକାଳୀ ! ଶକ୍ତି ବିନା ଶିବ ମଧ ଶବ ପାଲଟି ଯିବେ । ଯଥା-

'ଶିବୋ[illegible] ଶବତାଂ ଯାତି ଯୟା ଶକ୍ତା ବିବର୍ଜିତଃ ।'

ମହାମାୟା ଦୁର୍ଗାଙ୍କ ସପ୍ତ କୀର୍ତ୍ତି ରୂପରେ - ବ୍ରହ୍ମାଣୀ, ବୈଷ୍ଣବୀ, ଚୌନ୍ଦ୍ରି, ରୌଦ୍ରି, ବାରାହୀ, କୌବେରୀ ଏବଂ କୌମାରୀ । ଯେ ହେଲେ

ସପ୍ତସତୀ ମାତୃକା । ଗୋଟିଏ ଦୀପରୁ ଅସଂଖ୍ୟ ଦୀପ ଲାଗିଲେ ମଧ, ମୂଳଦୀପର ମାନ ହ୍ରାସ ହୁଏନା । ସେହିପରି ତାଙ୍କ ସହସ୍ର ନାମ ସ୍ମରଣରେ ଜନ୍ମ, ବନ୍ଧ ତୁଟିଯାଏ । ମୁକ୍ତ ହୁଏ ଜୀବନ ।

'ଯସ୍ୟ ସ୍ମରଣ ମାତ୍ରେଣ ଜନ୍ମ ସଂସାର ବନ୍ଧନାତ୍ ।'

ଏତିକିରେ ସୀମିତ ନରହି, ଆଉ ଟିକେ ଆଗେଇ ଯିବା ଦରକାର । ସମସ୍ତ କର୍ମ ଯଦି ଅତୀତର ଆଧ୍ୟାତ୍ମିକ ଗୌରବ, ପ୍ରଜ୍ଞା ଓ ପ୍ରେମ ମାଧ୍ୟମରେ ଏହାକୁ ପରିଚାଳନା କରାଯାଇ ପାରନ୍ତା ତା'ହେଲେ ସଂସ୍କୃତି ପରମ୍ପରା ସବୁକିଛି ପୂର୍ବପରି ଅକ୍ଷୁଣ୍ଣ ରହିପାରନ୍ତା ।

ସର୍ବବ୍ୟାପକ ପ୍ରକୃତିର କୋଳରେ ଆଦିଶକ୍ତିର ଅଂଶ । ସମସ୍ତେ ତା'ର ସନ୍ତାନ । କୀଟ, ପତଙ୍ଗ, ଅଣୁ, ପରମାଣୁ ସବୁ କିଛି । ସମସ୍ତଙ୍କ ଉପରେ ମାତୃ କୃପା ସମଭାବରେ ରହିଛି । ମା' କେବେ, ଧନ ସମ୍ପତ୍ତି ଖୋଜେନା । ଖୋଜେ ଟିକେ ଭକ୍ତି ଓ ଶ୍ରଦ୍ଧା । ସେ କାହାର ଶତ୍ରୁ ନୁହେ କି କାହାର ମିତ୍ର ନୁହେଁ । ନିରପେକ୍ଷ ବିଚାରିକା ! ତା' ପୂଜା ନାମରେ ମଣିଷ ସ୍ୱାର୍ଥୀ ହୋଇପାରୁଛି କାହିଁକି ? ନିଜର ଜିହ୍ୱା ଲାଳସାକୁ ସାର୍ଥକ କରିବା ପାଇଁ ଗୋଟାଏ ଜୀବକୁ ହତ୍ୟା କରୁନାହିଁକି ? ଏଥିରେ କ'ଣ ଜଗତ ଜନନୀ ତୁଷ୍ଟ ହୋଇଯିବେ ... ?

ଏହା କଦାପି ଶାସ୍ତ୍ରକୃତ ପ୍ରମାଣ ନୁହେଁ । ମାଂ' ଶବ୍ଦ, ସମସ୍ତ ରସ ପ୍ରିୟ ବସ୍ତୁକୁ ବୁଝାଏ । ସ' ଶବ୍ଦ ହେଉଛି - ବ୍ୟକ୍ତିର ରସନା ସଂଜତ କରିବା । ତେଣୁ ସାଧକ ତା'ର ସାଧନା ରୂପକ ଅସ୍ତ୍ରରେ ସମସ୍ତ ଲାଳସାଗୁଡ଼ିକୁ ବଳି ଦେଇ ବିଜୟୀ ହେବା । ଅତଏବ - ମାଂ +ସା କୁ ବିଜୁକ୍ତ କରୁଥିବା ପୂଜକ ମାଂ-ସ = ହାରୀ ବା ଦମନକ । ସେ ହିଁ ଶାସ୍ତ୍ରଜ୍ଞ ।

ଶରୀରତତ୍ତ୍ୱାନୁସାରେ, ଲୁଣ, ଅଦା, ଲହ୍ୱସ୍ୱନ, ତିଳ ଓ ଗହମର ପଞ୍ଚ ମିଶ୍ରଣକୁ ହୋମାହୁତୀ ସମୟରେ ପିଣ୍ଡୁଳା କରି, ବଳି ଚଢ଼ାଯାଏ । ଯଥା-

'ମାଂ, ଶବ୍ଦାଦ ରସନା ଜୋୟା, ସଂ ଦଶାନ ରସନା ପ୍ରିୟାନ୍ ।
ଏତଦ୍ ଯୋ ଭିକ୍ଷେୟେଦ୍ ଦେବୀ ସ ଏବ ମାଂସ ସାଧକ ॥'
(ଯୋଗିନୀ ତନ୍ତ୍ର)

ମଦ୍ୟ, ମାଂସ, ନିଶା, ବେଶ୍ୟା ଧୂମ୍ର ଓ ଯୁଆ । ଯେ ହେଲା ଜୀବାତ୍ମାର ଷଡରିପୁ । ଯେଗୁଡ଼ିକ ପରିତ୍ୟାଗ କରୁଥିବା ବ୍ୟକ୍ତି, ମାଂସ ହାରୀ । ହାରୀ ଅର୍ଥ ତ୍ୟାଗ । ସେ ତ୍ୟାଗୀ ! ଏପରି କରିବା ଦ୍ୱାରା କ୍ରମୋନ୍ନତି ହୋଇଥାଏ । ଜୀବତ୍ୱରୁ ଶିବତ୍ୱ ଆଡ଼କୁ ଗତି କରେ ।

ମଣିଷ ଭୁଲି ଯାଉଛି ତା' ଜୀବନର ଲକ୍ଷ୍ୟ । ସେ ବୁଝିପାରୁନି ଦେହ, ମନ, ଇନ୍ଦ୍ରିୟମାନଙ୍କ ଊର୍ଦ୍ଧ୍ୱରେ ଅବିନଶ୍ୱର ଆତ୍ମାଟିଏ ବିଦ୍ୟମାନ ରହିଛି । ସେ ସର୍ବଦା ଜୀବଭାବକୁ ଦୂରେଇ ଶିବ ଭାବରେ ନିମଗ୍ନ । ଏଥିପାଇଁ ନିଜର ଅନ୍ତଃକରଣକୁ ଶୁଦ୍ଧି କରାଯିବା ଦରକାର । ଆସୁରୀ ପ୍ରକ୍ରିୟାରୁ ମୁକ୍ତ ହୋଇ, ଦେବ କ୍ରିୟା ଆଡ଼କୁ ଅଗ୍ରସର ହେଲେ ଦେବୀମାତାଙ୍କ ଅନୁଗ୍ରହ ମିଳିବ ।

ମାତୃ ଆବାହନ ପୂର୍ବରୁ, ହୃଦୟ ସିଂହାସନକୁ ପରିମାର୍ଜିତ କର । ତା' ନହେଲେ କାମନା, ବାସନା ରୂପକ ପୂତି ଗନ୍ଧ ପରିପୂର୍ଣ୍ଣ ସିଂହାସନଟି ଉପଯୁକ୍ତ ନୈବେଦ୍ୟ ହୋଇପାରିବ ନାହିଁ । ଶେଷରେ ଶ୍ରଦ୍ଧା, ଭକ୍ତି, ଜ୍ଞାନ ସବୁକିଛିର ପତନ ହୋଇଯିବ । ପୁନଶ୍ଚ ଯୋଉ ଆଶକ୍ତି କି ସେହି ଆଶକ୍ତି ... ।

ଆଜିର ସାରଦୀୟ ସମ୍ଭାର, ମହାନ୍ ନବରାତ୍ରୀ ମହୋତ୍ସବ, ବିଜୟ ପର୍ବରେ ସମସ୍ତେ ଦୁରାଚାର କବଳରୁ ମୁକ୍ତ ହୋଇ, ମାତା ଦୁର୍ଗତୀ ନାଶିନୀଙ୍କ ସହିତ ଘନିଷ୍ଠ ସମ୍ବନ୍ଧ ସ୍ଥାପନ କରି ସଫଳତା ଲାଭ କରନ୍ତୁ । ଏହା ହିଁ ଦୁର୍ଗାପୂଜାର ମହାନତା ଓ ମହାର୍ଘତା ... !

'ତାଂ ଦୁର୍ଗାଂ ଦୁର୍ଗମାଂ ଦେବୀଂ ଦୁରାଚାର ବିଘାତିନୀମ୍ ।
ନମାମି ଭବଭୀତୋ⎕ହଂ ସଂସାରାର୍ଣ୍ଣବ ତାରିଣୀମ୍ ॥'

॥ ଦୁର୍ଗା⎕ର୍ପଣ ମସ୍ତୁ ॥

ଗଜପତି ନଗର
୫୮, ମୈଥିଳୀ ନିବାସ, ପୁରୀ-୨



ସୂଚନା ଓ ଲୋକ ସଂପର୍କ ବିଭାଗ, କୋଲକାତା ଶାଖା ତରଫରୁ ସ୍ୱାଧୀନତା ଦିବସ-୨୦୦୫ ପାଳନ ଅବସରରେ ଓଡ଼ିଆ ହାଇସ୍କୁଲ ପିଲାମାନଙ୍କ ମଧ୍ୟରେ ବକ୍ତୃତା ପ୍ରତିଯୋଗିତା କରାଯାଇ କୃତୀ ପ୍ରତିଯୋଗୀମାନଙ୍କୁ ପୁରସ୍କାର ସହ ପ୍ରମାଣପତ୍ର ଉତ୍କଳ ଭବନ ପରିଚାଳକ ଶ୍ରୀ ସାଇଦତ୍ତ ବିପ୍ଳବ କୁମାର ପ୍ରଧାନ ପ୍ରଦାନ କରୁଛନ୍ତି । କୋଲକତାର ସୂଚନା ଅଧିକାରୀ ଶ୍ରୀ ଶରତ ଚନ୍ଦ୍ର ତ୍ରିପାଠୀ ଉପସ୍ଥିତ ଅଛନ୍ତି ।

# ଉତ୍କଳ ସ୍ଥାପତ୍ୟରେ ବିରଳ ପ୍ରସଙ୍ଗ : ନୌଯୁଦ୍ଧ-ନିପୁଣା ମହିଷମର୍ଦ୍ଦିନୀ ଦୁର୍ଗା

ପଙ୍କଜ ସାହୁ

**ମା**ନବସମାଜ ପ୍ରକୃତିଠାରୁ ବିଭିନ୍ନ ଉପକାର ପାଇବା ଫଳରେ ତା'ର ବିଭିନ୍ନ ବିଭାବ ପ୍ରତି ମନୁଷ୍ୟ ମନରେ ସ୍ୱତଃ ଭକ୍ତିଭାବ ଜାଗ୍ରତ ହେଲା । ଅପର ପକ୍ଷରେ ପ୍ରକୃତିର ବିଭୀଷିକାମୟ ପ୍ରକ୍ରିୟା ମନୁଷ୍ୟ ମନରେ ଭୟ ସଞ୍ଚାର କଲା । ପ୍ରୋକ୍ତ ଭୟ ତଥା ଭକ୍ତିଭାବନା ଉଦ୍ରେକ ଫଳରେ ପ୍ରକୃତିକୁ ସନ୍ତୁଷ୍ଟ କରିବା ଅଭୀପ୍ସାରେ ମନୁଷ୍ୟ ପ୍ରକୃତିର ବିଭିନ୍ନ ବିଭବକୁ ଦେବତା ଜ୍ଞାନରେ ଉପାସନା କରିବାରେ ବ୍ରତୀ ହେଲା । ଏହି ପରିପ୍ରେକ୍ଷୀରେ ଭାରତୀୟ ଉପାସନା ପରମ୍ପରାରେ ଅନେକ ଧର୍ମଭାବନା ସୃଷ୍ଟି ହୋଇଥିଲେ ହେଁ ଆଧ୍ୟାତ୍ମିକ ଜଗତରେ ମୁଖ୍ୟତଃ ବୈଷ୍ଣବ ଶୈବ, ଶାକ୍ତ, ଗାଣପତ୍ୟ ଓ ସୌର ପ୍ରଭୃତି ଧର୍ମ ମତବାଦ ପ୍ରମୁଖ ଭୂମିକା ଗ୍ରହଣ କଲା । ଜାଗତିକ ସକଳବସ୍ତୁ ତଥା ଜୀବଜଗତର ଜୀବନ ଯେଉଁ ପଞ୍ଚମହାଭୂତରେ ଗଠିତ, ପ୍ରକୃତିର ସେହି ପଞ୍ଚ ମହାଭୂତର ଅଧିପତି (ଆକାଶସ୍ୟାଧିପୋ ବିଷ୍ଣୁରଗ୍ନେର୍ଶ୍ଚୈବ ମାହେଶ୍ୱରୀ, ବାୟୋଃ ସୂର୍ଯ୍ୟଃ କ୍ଷିତେରୀଶୋ ଜୀବନସ୍ୟ ଗଣାଧିପ) ରୂପେ ସମ୍ପୃକ୍ତ ଦେବାଦେବୀମାନଙ୍କୁ ଉପାସନା କ୍ଷେତ୍ରରେ ସ୍ୱାତନ୍ତ୍ର୍ୟ ତଥା ପ୍ରାଧାନ୍ୟ ଅର୍ପିତ ହେବା ଫଳରେ ଉପଯୁକ୍ତ ଧର୍ମଭାବନାର ଅଭ୍ୟୁତ୍‌ଥାନ ଘଟିଲା । କ୍ରମେ ବିଭିନ୍ନ ଧର୍ମଚେତନାର ପୃଷ୍ଠଭୂମିରେ ଶକ୍ତି ଉପାସନା ଏକ ବଳିଷ୍ଠ ଭୂମିକା ନିର୍ବାହ କଲା । କାରଣ ଶକ୍ତି ବ୍ୟତିରେକେ ଶିବ ଶବତୁଲ୍ୟ, ବିଷ୍ଣୁ ନିଷ୍କ୍ରିୟ, ସୂର୍ଯ୍ୟ ତେଜୋହୀନ ଓ ଗଣପତି ଅସହାୟ । ତେଣୁ ଶକ୍ତି ଉପାସନା ଆର୍ଯ୍ୟ ସଂସ୍କୃତିର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇପଡ଼ିଲା ।



ଭାରତୀୟ ଧର୍ମଭାବନା କ୍ଷେତ୍ରରେ ଶାକ୍ତଧର୍ମ ଓ ଶକ୍ତି ଉପାସନା ଅତି ପ୍ରାଚୀନ । ପ୍ରାକ୍‌ବୈଦିକ ଯୁଗରୁ ଏପରିକି ମନୁଷ୍ୟ ସୃଷ୍ଟିର ଉନ୍ମେଷ କାଳରୁ ଶକ୍ତି ଉପାସନା ପ୍ରଚଳିତ ହୋଇଥିବାର ପ୍ରମାଣ ଉପଲବ୍ଧ ହେବା ସହିତ ସାମ୍ପ୍ରତିକ ଆଧ୍ୟାତ୍ମିକ ଚେତନାରେ ଶକ୍ତିପୂଜା ଏକ ସାର୍ବଜନୀନ ସ୍ୱୀକୃତି ଲାଭ କରିଅଛି । ବିଶ୍ୱର ଅପରା ପ୍ରକୃତିକୁ ମନୁଷ୍ୟ ତା'ର କଳ୍ପନା ଶକ୍ତି ବଳରେ ବିଭିନ୍ନ ରୂପରେ ରୂପାୟିତ କରି ପୂଜାର୍ଚ୍ଚନା କରିଆସୁଛି । ମନୁଷ୍ୟ ସମାଜ ମହାଶକ୍ତିଙ୍କୁ କେତେବେଳେ ଜ୍ଞାନ ତଥା ମଙ୍ଗଳଦାତ୍ରୀ ମାହେଶ୍ୱରୀ ରୂପରେ ତ କେତେବେଳେ ଦୃଢ଼ ସଙ୍କଳ୍ପା ଧ୍ୱଂସରଣ ନୃମୁଣ୍ଡମାଳିନୀ କାଳୀ ରୂପରେ, କେତେବେଳେ ବିଶ୍ୱ ଜନୟିତ୍ରୀ ଚିରଯୌବନା ଗୌରୀ ରୂପରେ ତ କେତେବେଳେ ବିଶ୍ୱଶାସନ ରତା ବିଶ୍ୱମୋହିନୀ ଭୁବନେଶ୍ୱରୀ ରୂପରେ, କେତେବେଳେ ପ୍ରୀତି ସମ୍ପଦର ଅଧିଷ୍ଠାତ୍ରୀ ମହାଲକ୍ଷ୍ମୀ ରୂପରେ ତ କେତେବେଳେ ଅସୁର ବିମର୍ଦ୍ଦିନୀ-ଦୁର୍ଗତିନାଶିନୀ ମହାମାୟା ଦୁର୍ଗା ରୂପରେ ଆରାଧନା କରି ଆସୁଅଛି । ସେଥିପାଇଁ ଉତ୍କଳୀୟ ସ୍ଥପତି ସ୍ୱୀୟ କଳ୍ପନାଶକ୍ତି ପ୍ରୟୋଗରେ ମହାଶକ୍ତିଙ୍କୁ କେତେବେଳେ ଭୟଙ୍କର ବା କେତେବେଳେ ସୌମ୍ୟା ରୂପେ ପ୍ରସ୍ତର ଗାତ୍ରରେ ରୂପାୟିତ କରି ଶକ୍ତି ଉପାସନା ନିମିତ୍ତ ପ୍ରତୀକାତ୍ମକ ବିଗ୍ରହ ନିର୍ମାଣ କରି ଆସିଛି । ଏହି ରୂପ ପରିକଳ୍ପନା ହିଁ ମନୁଷ୍ୟର ମହାଶକ୍ତିଙ୍କୁ ବିଭିନ୍ନ ଭାବରେ ଅବବୋଧ କରିବାର ମାଧ୍ୟମ ମାତ୍ର । ମନୁଷ୍ୟ ସମାଜ ଶକ୍ତିର ବିଭିନ୍ନ ବିଭାବ ଅପେକ୍ଷା ଦୁର୍ଗତିନାଶିନୀ ଦୁର୍ଗାଙ୍କୁ ଅନନ୍ତର ନିବିଡ଼ତମ ଅଭିବ୍ୟକ୍ତି ପ୍ରଦାନ ପୂର୍ବକ ପୂଜା କରିଆସୁଛି । କାରଣ 'ଭୋଗେ ଭବାନୀ ପୁରୁଷେଷୁ ବିଷ୍ଣୁ/କୋପେଷୁ କାଳୀ ସମରେ ଚ ଦୁର୍ଗା ।'

ଆଦିମ ମାନବ ଯେତେବେଳେ ଜୀବିକାର୍ଜନ ପାଇଁ କୃଷିକୁ ପ୍ରଧାନ ମାଧ୍ୟମ ରୂପେ ଗ୍ରହଣ କରି ନେଲା, ସେତେବେଳେ ଚାଷଜମିର ପରିସର ବୃଦ୍ଧି ତଥା ନିରାପତ୍ତା ରକ୍ଷା ନିମିତ୍ତ ଏକ ଦଳପତି ଅଧୀନରେ ଯୌଥ ଜୀବନଯାପନକୁ ଶ୍ରେୟ ମନେକଲା । ଏହି ଦଳପତି ପରବର୍ତ୍ତୀ କାଳରେ ରାଜାମହାରାଜା ନାମରେ ଅଭିହିତ ହୋଇ ରାଜତନ୍ତ୍ର ପ୍ରତିଷ୍ଠା କଲେ । ଅଧୀନସ୍ଥ ପ୍ରଜା ସମେତ ସାମ୍ରାଜ୍ୟଭୁକ୍ତ ଭୂଖଣ୍ଡର ନିରାପତ୍ତା ତଥା ସାର୍ବଭୌମତ୍ୱ ରକ୍ଷା କରିବା ଦାୟିତ୍ୱ ରାଜା ବହନ କଲେ । ଦୁର୍ଗା ଯେହେତୁ 'ସମରଦେବୀ', ତେଣୁ ଯୁଦ୍ଧ ଅନୁକୂଳ ପୂର୍ବରୁ ସେ

ଗଡ଼ଦେବୀ/ଦୁର୍ଗାଦେବୀ ରୂପେ ଉପାସିତା ଦୁର୍ଗାଙ୍କୁ ଯଥାବିଧି ପୂଜାର୍ଚ୍ଚନା ମାଧ୍ୟମରେ ସନ୍ତୁଷ୍ଟ କରିବାକୁ ତତ୍କାଳୀନ ରାଜନ୍ୟବର୍ଗ ଶ୍ରେୟ ମଣୁଥିଲେ । ପ୍ରକାରାନ୍ତରେ ପ୍ରଶାସନର ଆବଶ୍ୟକ ଖର୍ଚ୍ଚ ତୁଲାଇବା ପାଇଁ ପ୍ରଜାବର୍ଗ କର ଦେବା ସହିତ ଯୁଦ୍ଧ ସମୟରେ ଆନୁଷଙ୍ଗିକ ସହାୟତା ଯୋଗାଇ ଦେବାକୁ ଶ୍ରେୟ ମଣୁଥିଲେ । ତେଣୁ ଯୁଦ୍ଧ ମନୁଷ୍ୟର ସହଜାତ ପ୍ରବୃତ୍ତି ରୂପେ ତତ୍କାଳରେ ପରିଗଣିତ ହେଉଥିଲା । ତା'ର ପରିଣତି ସ୍ୱରୂପ ଆଧୁନିକ ସଭ୍ୟ ମାନବ ସମାଜ ସାମ୍ପ୍ରତିକ ଯୁଦ୍ଧ ବିଭୀଷିକାରେ ସତତ ଆତଙ୍କିତ । 'ରାଜାନୁଗତ ଧର୍ମଃ' - ରାଜପୁରୁଷମାନଙ୍କର ପୃଷ୍ଠପୋଷକତା ଲାଭକରି ବିଭିନ୍ନ ଧର୍ମର ବିକାଶ ସଦୃଶ, ଶାକ୍ତଧର୍ମର ଅଭ୍ୟୁନ୍ନତି ସାଧିତ ହେବାରୁ ପ୍ରଜାମାନେ ସମରଦେବୀ ରୂପେ ମହାଶକ୍ତିଙ୍କୁ ପୂଜା କରିବା ଅବଶ୍ୟମ୍ଭାବୀ । ସେହିହେତୁ ବୋଧହୁଏ ସାମ୍ପ୍ରତିକ ମାନବ ସମାଜ ପରମାଣୁ ଶକ୍ତିର ଭୟାବହତା ଉପଲବ୍‌ଧି କରି ମଧ୍ୟ ସେହି ଶକ୍ତିର ଅଧିକାରୀ ହେବା ପାଇଁ ପ୍ରତିଯୋଗିତା ଆରମ୍ଭ କରି ଦେଇଛି । ଯେ ଯେତେ ପରିମାଣରେ ପରମାଣୁ ଶକ୍ତିର ଅଧିକାରୀ, ଆଜିର ବିଶ୍ୱରେ ସେ ସେତେ ପରିମାଣରେ ପ୍ରଭାବଶାଳୀ ବା ଶକ୍ତିଶାଳୀ, ଏହି ନିଶାରେ ମାନବ ଆଜି ପ୍ରମତ୍ତ ହୋଇ ଉଠିଛି ।

ଶକ୍ତିର ପ୍ରତୀକ ମହାମାୟା ଦୁର୍ଗାଙ୍କର ଅହଙ୍କାର ପ୍ରମତ୍ତ ମହିଷାସୁର ସହ ଯୁଦ୍ଧ ଓ ପରିଶେଷରେ ମହାଦେବୀଙ୍କ କର୍ତ୍ତୃକ ରାକ୍ଷସର ମୃତ୍ୟୁ ସମ୍ବନ୍ଧରେ ପୁରାଣ ପୃଷ୍ଠାରେ ସ୍ଥାନିତ ସୁବିସ୍ତୃତ ବିବରଣୀ ସବୁକୁ ଅନୁଶୀଳନ କଲେ ଜଣାଯାଏ ଯେ ସ୍ୱୟଂ ସିଂହବାହିନୀ ଦୁର୍ଗା, ମହିଷାସୁରର ଅଗଣିତ ସେନା ଓ ସେନାପତିଙ୍କୁ ନିହତ କଲାପରେ ମହିଷାସୁର ସକ୍ରୋଧେ ସ୍ୱଖୁରାଦ୍ୱାରା ଭୂପୃଷ୍ଠ ବିଦୀର୍ଣ୍ଣ କଲା । ମହିଷାସୁର ତାର ଲାଞ୍ଜ ଉତ୍‌ଥାନ ପୂର୍ବକ ଦେବୀଙ୍କ ଉପରକୁ ଲମ୍ଫ ଦେବା ନିମନ୍ତେ ଉଦ୍ୟତ ହେବାମାତ୍ରେ ସମୁଦ୍ର ଜଳରେ ଉଦ୍‌ବେଳନ ସୃଷ୍ଟି ହେଲା । ତାର ନିଃଶ୍ୱାସ ପ୍ରଶ୍ୱାସରେ ବାଦଲସବୁ ବିଗଳିତ ହେବାକୁ ଲାଗିଲା । ମେରୁ ପର୍ବତ ଥରି ଉଠିଲା । ଚତୁର୍ଦ୍ଦିଗରେ ବାଲିଝଡ଼ ସୃଷ୍ଟି ହେଲା । ଅସୁର ସ୍ୱୀୟ ଅପରିମିତ ଦୈହିକ ବଳ ଓ ଅସୀମ ମାନସିକ ଶକ୍ତି ପ୍ରୟୋଗ କରି ସ୍ୱଶୃଙ୍ଗରେ ବିରାଟ ପର୍ବତକୁ ଉତ୍‌ପାଟନ ପୂର୍ବକ ଦେବୀଙ୍କ ଉପରକୁ ନିକ୍ଷେପ କଲା । ତାର ଭୟଙ୍କର ରୂପଦେଖି ଦେବୀ କ୍ରୋଧାନ୍ୱିତା ହୋଇ ତା' ଉପରେ ପାଶ ନିକ୍ଷେପ ପୂର୍ବକ ତାକୁ ବନ୍ଧନ କରିବା ସହିତ ତଦ୍ୱାରା ନିକ୍ଷିପ୍ତ ପର୍ବତ ସମୂହକୁ ଅନାୟାସରେ ଶରଦ୍ୱାରା ନିବାରଣ କଲେ । ମହିଷା ତତ୍‌କ୍ଷଣାତ୍ ମହିଷ ରୂପ ପରିତ୍ୟାଗ ପୂର୍ବକ ସିଂହରୂପ ଧାରଣ କରି ଦେବୀଙ୍କର ବାହନ ସିଂହକୁ ଆକ୍ରମଣ କିରବାରୁ ଦେବୀ କୃପାଣଦ୍ୱାରା ତାର ମସ୍ତକ ଛେଦନ କଲେ । ମାୟାଯୁଦ୍ଧ ନିପୁଣ ମହିଷାସୁର ସହସା ଖଡ୍‌ଗଧାରୀ ଏକ ପୁରୁଷ ରୂପେ ଆବିର୍ଭୂତ ହୋଇ କାମୋନ୍ମତ୍ତ ଭାବେ ଦେବୀଙ୍କ ସମୀପକୁ ଅଗ୍ରସର ହେବା ଅବସରରେ ଦେବୀ ସେହି ଦୁର୍ଦ୍ଦମନୀୟ ଅସୁର ବକ୍ଷରେ ବାମପାଦରେ ଆଘାତ କଲେ । ଦୈତ୍ୟ ସଂଜ୍ଞାହୀନ ହୋଇ ଭୂତଳଶାୟୀ ହେଲା ସତ୍ୟ, ମାତ୍ର ସମ୍ବିତ ଲାଭ କରିବା କ୍ଷଣି ସେ ସେଠାରୁ ଅନ୍ତର୍ହିତ ହୋଇଗଲା । ଅଦୃଶ୍ୟଭାବେ ବାଦଲ ଉହାଡ଼ରେ ଆତ୍ମଗୋପନ କରି ସେ ପଥର ବୃଷ୍ଟି କଲା । ମହାଦେବୀ ସେଗୁଡ଼ିକ ବାଣଦ୍ୱାରା ଶୋଷଣ କରିନେଲେ । ତତ୍‌ପରେ ସେ ଏକ ଭୟଙ୍କର ହସ୍ତୀ ରୂପେ ଦେବୀଙ୍କୁ ଆକ୍ରମଣ କରିବା ପାଇଁ ଧାଇଁ ଆସିବାରୁ ଦେବୀ ଚକ୍ର ସାହାଯ୍ୟରେ ତା'ର ଶୁଣ୍ଢକୁ କର୍ତ୍ତନ କଲେ । ହଠାତ୍ ସେ ଏକ ଅଷ୍ଟପଦୀ ଶରଭ ରୂପରେ ଆକ୍ରମଣ କରନ୍ତେ ଦେବୀ କର୍ତ୍ତୃକ ଆହତ ହୋଇ ପଳାୟନ କଲା । ବାରମ୍ବାର ସେ ରୂପ ପରିବର୍ତ୍ତନ କଲେ ମଧ୍ୟ ପ୍ରତ୍ୟେକ କ୍ଷେତ୍ରରେ ଦେବୀ ତାକୁ ପରାସ୍ତ କଲେ । ପରିଶେଷରେ ସେ ଦେବୀଙ୍କୁ ଭୟଭୀତ କରିବା ପାଇଁ ପୁନର୍ବାର ମହିଷ ରୂପ ଧାରଣ କରି ଦେବୀଙ୍କ ସହ ଘୋର ଯୁଦ୍ଧରେ ଲିପ୍ତ ହେଲା । ତଦନନ୍ତର ମହାମାୟୀ ଲମ୍ଫ ପ୍ରଦାନ ପୂର୍ବକ ମହିଷାସୁର ଉପରେ ଚଢ଼ି ତା'ର କଣ୍ଠଦେଶ ପାଦ ଦ୍ୱାରା ନିପୀଡ଼ନ କଲେ । ମହିଷା ଦେବୀଙ୍କ ଦ୍ୱାରା ଦୃଢ଼ଭାବେ ମର୍ଦ୍ଦିତ ହୋଇ ମହାଦେବୀଙ୍କ ଅସ୍ତ୍ରରେ ତାର ମସ୍ତକ ସ୍କନ୍ଧଚ୍ୟୁତ ହେବାରୁ ତାର କର୍ତ୍ତିତ ଗ୍ରୀବାରୁ ମହିଷାସୁର ଅର୍ଦ୍ଧମାତ୍ର ବହିର୍ଗତ ହେବାକ୍ଷଣି ସେ ଦେବୀଙ୍କ ଉଗ୍ରତେଜ ସନ୍ଦର୍ଶନ କରି ସ୍ତମ୍ଭୀଭୂତ ହୋଇଗଲା ।

ଜଳସ୍ଥଳ ଅନ୍ତରୀକ୍ଷ ଯୁଦ୍ଧ-କୁଶଳୀ ରାକ୍ଷସ ମାୟାବଳରେ ଦେବୀଙ୍କୁ ଆକର୍ଷଣ ପୂର୍ବକ ଆକାଶକୁ ଉଠିବାକୁ ଚେଷ୍ଟା କରିବାରୁ ମହାମାୟା ବିଦ୍ୟୁତପ୍ରଭା ବିକିରଣ କରିବା ଫଳରେ ଅସୁର କିଛି ଦେଖି ନପାରି ଭୂମିରେ କଚାଡ଼ି ହୋଇପଡ଼ି ସଂଜ୍ଞାହୀନ ହେଲା । କିଛିକ୍ଷଣ ପରେ ସେହି ଦୁର୍ଦ୍ଧାନ୍ତ ରାକ୍ଷସ ଚେତନା ଲାଭ କରି ମାତାଙ୍କୁ ଜଳରେ ବୁଡ଼ାଇ ମାରିବା ଉଦ୍ଦେଶ୍ୟରେ ସମୁଦ୍ରର ଅତଳଗର୍ଭକୁ ନେଇଗଲା । ଯୁଦ୍ଧକ୍ଳାନ୍ତା ଦେବୀ ଯେତେବେଳେ ଅଣନିଃଶ୍ୱାସୀ ହୋଇ ଦୀର୍ଘଶ୍ୱାସ ପରିତ୍ୟାଗ କଲେ ସେହି ନିଃଶ୍ୱାସରୁ ଚତୁର୍ଭୁଜା, ପଦ୍ମାସନୀ ସ୍ମିତହାସିନୀ, ଖଡ୍‌ଗଧାରିଣୀ ମଙ୍ଗଳା ଆତ୍ମପ୍ରକାଶ କରି ମହିଷାସୁର ନିଧନ ପରିପ୍ରେକ୍ଷୀରେ ପାଇଥିବା ବର ସମ୍ବନ୍ଧରେ ମହାମାୟାଙ୍କ ସହ ସମୟୋପଯୋଗୀ ପରାମର୍ଶ କରିବା ପରେ ଉଭୟେ ମହିଷାସୁରକୁ ସମୁଦ୍ର ଉପରକୁ ଉଠାଇ ଆଣିଲେ । ତତ୍‌ପରେ ମହାଦେବୀ ମିଷ୍ଟସୁରା ପାନ ପୂର୍ବକ ଅସୁରକୁ ତ୍ରିଶୂଳ ବିଦ୍ଧକରି/ଶ୍ରୀମଦ୍ ଦେବୀ ଭାଗବତ ମତାନୁସାରେ ଦିବ୍ୟଚକ୍ର ସାହାଯ୍ୟରେ ଶିରଚ୍ଛେଦନ କରି ଧରଣୀକୁ ପାପ ଭାରାରୁ ମୁକ୍ତ କଲେ । ଫଳତଃ ସର୍ବଦେବଗଣ ଅପହୃତ ଅଧିକାର ଫେରିପାଇବା ସହିତ ଦେବତାମାନେ ହର୍ଷୋଲ୍ଲାସରେ ପୁଷ୍ପବୃଷ୍ଟି କରି ବିଜୟ ଦୁନ୍ଦୁଭି ବାଦନ କଲେ । ଦେବତାମାନଙ୍କର ଦୁର୍ଗତିବେଳେ ରକ୍ଷାକର୍ତ୍ତ୍ରୀ ରୂପେ ଆବିର୍ଭୂତା ହୋଇ ରାକ୍ଷସ ବିନାଶ କରିଥିବାରୁ ସେହିଦିନୁ ଲୋକଜନନୀ ଲୋକରେ ଦୁର୍ଗା ରୂପେ ଆରାଧିତା ହେଲେ । ମହାଶକ୍ତି ସ୍ୱରୂପା ସିଂହବାହିନୀ ଦୁର୍ଗା ଯୋଦ୍ଧୃବେଶରେ ମହିଷାସୁର ସହ ସମସ୍ତ ଆସୁରୀଶକ୍ତିର ବିଲୋପ ସାଧନ ପୂର୍ବକ ଶାନ୍ତି ପ୍ରତିଷ୍ଠା କରି ମହିଷାମର୍ଦ୍ଦିନୀ ନାମ ବହନ କଲେ ।

ବୈଦିକ ଯୁଗରେ ଦୁର୍ଗା ଏକ ପ୍ରଧାନ ମାତୃଦେବୀ ରୂପେ ଉପାସିତା ହେଉଥିଲେ । ଏପରିକି ଖ୍ରୀ:ପୂ: ପ୍ରଥମ ଶତାବ୍ଦୀ ପୂର୍ବରୁ ପ୍ରଣୀତ ଶାକ୍ତ ଗ୍ରନ୍ଥମାନଙ୍କରେ ଦେବୀଙ୍କୁ ସିଂହବାହିନୀ କିମ୍ବା ମହିଷମର୍ଦ୍ଦିନୀ ରୂପେ ବର୍ଣ୍ଣନା ପରିଦୃଷ୍ଟ ହୁଏନାହିଁ । ଏହାର ଅର୍ଥନୁହେଁ ଯେ ତତ୍କାଳରେ ଦେବୀ ଚରିତ୍ରରେ ରଣଲିପ୍‌ସା ଅଥବା ସମର ନିପୁଣତାର ଉନ୍ମେଷ ସଂଘଟିତ ହୋଇନଥିଲା । ଆମ ଦେଶରେ କେତେକ ପ୍ରାଚୀନ ସ୍ଥାପତ୍ୟରେ ଦୁର୍ଗାଙ୍କ ପ୍ରତିପକ୍ଷ ରୂପେ ଷଣ୍ଢର ପ୍ରତିକୃତି ଦେଖିବାକୁ ମିଳେ । ଆମ ଓଡ଼ିଶାରେ ମଧ କେତେକ ଚତୁର୍ଭୁଜା ଦୁର୍ଗାମୂର୍ତ୍ତି ଆବିଷ୍କୃତ ହୋଇଛି, ଯହିଁରେ ଦେବୀଙ୍କୁ ସାହାଯ୍ୟ କରିବା ପାଇଁ ସିଂହ ନାହିଁ କି ତାଙ୍କ ହସ୍ତରେ କୌଣସି ଆୟୁଧ ଥିବାର ଦୃଷ୍ଟିଗୋଚର ହୁଏ ନାହିଁ । ଦେବୀ ସ୍ୱୟଂ ଷଣ୍ଢର ଜିହ୍ୱା ଉତ୍ପାଟନ ପୂର୍ବକ ତାକୁ ବଧ (ଯା'ଦେବୀ ସର୍ବ ଭୂତେଷୁ . . . କିଶୋର ଶତପଥି, ସମାଜ 'ଗ' ପୃଷ୍ଠା, ତା.୨୯.୯.୯୮) କରୁଛନ୍ତି । ବୃଷଭ ହେଉଛି ଦେବ ଦେବ ମହାଦେବଙ୍କ ବାହନ । ଶିବ ଜାୟା ଦୁର୍ଗା ତାକୁ ବଧ କଲେ ଦୁର୍ବିପାକର କବଳିତ ହେବା ଅବଶ୍ୟମ୍ଭାବୀ ବୋଲି ଆଶଙ୍କା କରି ତଦବିଦ୍‌ଗଣ ଷଣ୍ଢ ପରିବର୍ତ୍ତେ ଦୁର୍ଗା କର୍ତ୍ତୃକ ମହିଷକୁ ବଧ କରିବା ପାଇଁ ଚିନ୍ତା ପ୍ରକଟ କଲେ । ପଶ୍ଚିମ ଭାରତରେ ଆରମ୍ଭ ହୋଇଥିବା ଦେବୀ ପୂଜାରେ ସର୍ବପ୍ରଥମେ ଷଣ୍ଢ ପରିବର୍ତ୍ତେ ମହିଷର ବ୍ୟବହାର କରାଗଲା । କଳାରଙ୍ଗ ପାପର ପ୍ରତୀକ ହୋଇଥିବାରୁ ମହିଷକୁ ଅତ୍ୟଧିକ କଳାରଙ୍ଗରେ ଚିତ୍ରିତ କରାଗଲା । ପରବର୍ତ୍ତୀ ସମୟରେ ଏହା ଅନ୍ୟାନ୍ୟ ଅଞ୍ଚଳର ଦୁର୍ଗାପୂଜାକୁ ପ୍ରଭାବିତ କଲା । ପ୍ରାଚୀନ ଭାସ୍କର୍ଯ୍ୟରେ ଯେଉଁ ସବୁ ଦ୍ୱିଭୁଜା ଅଥବା ଚତୁର୍ଭୁଜା ଦୁର୍ଗା ବିଗ୍ରହର ନିଦର୍ଶନ ମିଳେ ସେ ସବୁରେ ଦେବୀ କେବଳ ହସ୍ତଦ୍ୱାରା ମହିଷବଧ ବା ମହିଷମର୍ଦ୍ଦନ କରୁଥିବା ପ୍ରଦର୍ଶିତ ହୋଇଛି । ସେହିସବୁ ଦେବୀମୂର୍ତ୍ତି ଏକହସ୍ତରେ ମହିଷର ଗଳାକୁ ଚାପି ଧରିବା ସହ ତାହାର ଜିହ୍ୱା ଉତ୍ପାଟନ ଏବଂ ଅନ୍ୟ ହସ୍ତରେ ତାହାର ପୃଷ୍ଠଦେଶରେ ପ୍ରହାର କରିବା ବା ତାହାକୁ ମର୍ଦ୍ଦନ (ଚାପ ପ୍ରୟୋଗ) କରିବା ଇତ୍ୟାଦି ପ୍ରଦର୍ଶିତ । ଅବଶ୍ୟ ଏହି ମୂର୍ତ୍ତିଗୁଡ଼ିକରେ ବର୍ଚ୍ଛାର ଉପସ୍ଥିତି ଥିଲେ ମଧ ତାହା ମହିଷମର୍ଦ୍ଦନ ବା ବଧରେ ବିନିଯୁକ୍ତ ହୋଇନାହିଁ । ସମୟର ପରିବର୍ତ୍ତନ ସହ ସମତାଳରେ ଦେବୀ ବିଗ୍ରହ ମଧ ବିବର୍ତ୍ତିତ ହେଲେ । ସିଂହବାହିନୀ ଦୁର୍ଗା ବର୍ଚ୍ଛା ପରିବର୍ତ୍ତେ ତ୍ରିଶୂଳ ଧାରଣ କଲେ । କ୍ରମଶଃ ଦେବୀଙ୍କ ହସ୍ତ ଦୁଇରୁ ଦଶ ପର୍ଯ୍ୟନ୍ତ ବୃଦ୍ଧିପ୍ରାପ୍ତ ହୋଇ ଦଶାୟୁଧରେ ତାଙ୍କୁ ସଜ୍ଜିତ କରାଗଲା । କୁଶାଣ ରାଜତ୍ୱ ସମୟରେ ଉତ୍କୀର୍ଣ୍ଣ ଏକ ଭାସ୍କର୍ଯ୍ୟରେ ଦେବୀ ନିଜର ସମସ୍ତ ହସ୍ତ ତଥା ଏକ ତ୍ରିଶୂଳ ସାହାଯ୍ୟରେ ଏକ ଦୈତ୍ୟକୁ ବଧ କରୁଥିବାର ଦୃଷ୍ଟି ପଥାରୂଢ଼ ହୋଇଥାଏ । ତେବେ ମହିଷାମର୍ଦ୍ଦିନୀଙ୍କର ଆଦ୍ୟ ରୂପରେ ମହିଷ ପଶୁ-ଦାନବ ରୂପେ ଖୋଦିତ ହୋଇଥିବା ସ୍ଥଳେ କ୍ରମେ ମହିଷ ନର-ଦାନବ ରୂପେ ଉତ୍କୀର୍ଣ୍ଣ ହୋଇଅଛି । ବେଦ ବର୍ଣ୍ଣିତ ମାତୃଦେବୀଙ୍କ ଏହି ସିଂହବାହିନୀ, ଅସୁରଘାତିନୀ ତଥା ରଣରଙ୍ଗିନୀ ରୂପ : ଭାସ୍କର୍ଯ୍ୟ ପରମ୍ପରାରେ ଯେ ପରବର୍ତ୍ତୀ କାଳୀନ ପ୍ରକ୍ଷେପ, ଏଥିରେ ସନ୍ଦେହ ନାହିଁ । ଭିନ୍ନ ଭିନ୍ନ ଯୁଗରେ ମହିଷମର୍ଦ୍ଦିନୀ ମୂର୍ତ୍ତିର ଏବଂ ବିଭିନ୍ନ ଗ୍ରନ୍ଥରେ ଉପଲବ୍‌ଧ ଦେବୀ ବିଗ୍ରହଙ୍କ ରୂପ ବର୍ଣ୍ଣନାର ପ୍ରତୁଳ ପ୍ରଦର୍ଶନ ସମୂହକୁ ଅନୁଶୀଳନ କଲେ ଦେବୀ ଯେ କ୍ରମେ ଦ୍ୱିଭୁଜାଠାରୁ ଦ୍ୱାତ୍ରିଂଶଭୁଜା ପର୍ଯ୍ୟନ୍ତ ବିଭିନ୍ନରୂପେ ଆତ୍ମପ୍ରକାଶ କରିଛନ୍ତି, ତାହା ସ୍ୱଷ୍ଟ ପ୍ରତିଭାତ ହୁଏ ।

ଖ୍ରୀଷ୍ଟୀୟ ପ୍ରଥମ ଶତକ ସମୟକୁ ଦେବୀଙ୍କ ମହିଷମର୍ଦ୍ଦନ ସମ୍ପର୍କୀୟ ଧର୍ମ ବିଶ୍ୱାସ ପ୍ରତିଷ୍ଠା ଲାଭ କରିସାରିଥିଲା । ଏହି ମହିଷମର୍ଦ୍ଦନ ବିଶ୍ୱାସର ସର୍ବପ୍ରାଚୀନ ଯେଉଁ ବୈଶିଷ୍ଟ୍ୟ ଦୁଇଟି ପରିଦୃଷ୍ଟ ହୁଏ, ତନ୍ମଧ୍ୟରୁ ପ୍ରଥମଟି ହେଉଛି ଦେବୀଙ୍କ ସହିତ ବାହନ ରୂପେ ଏକ ସିଂହର ଅବସ୍ଥାନ ଓ ଅନ୍ୟଟି ହେଉଛି ଅଶୁଭ ଶକ୍ତିର ପ୍ରତୀକ ଏକ ମହିଷରୂପୀ ଅସୁରର ଦେବୀ କର୍ତ୍ତୃକ ମର୍ଦ୍ଦନ । ଏହି ମହିଷ ସାଧାରଣତଃ ମହିଷାସୁର ନାମରେ ଅଭିହିତ । ଓଡ଼ିଶାରେ ମହିଷମର୍ଦ୍ଦିନୀ ଦେବୀଙ୍କୁ ଦୁର୍ଗା କୁହାଯାଏ । ଓଡ଼ିଶାର ତନ୍ତ୍ରପୀଠରେ ମହିଷ ବା ମହିଷାସୁର ମର୍ଦ୍ଦିନୀ ଦୁର୍ଗାଦେବୀ ଆରାଧିତା ହୋଇଆସୁଛନ୍ତି । ପୁରାଣ ବର୍ଣ୍ଣିତ ରୂପର ଆଧାରରେ ମହିଷାମର୍ଦ୍ଦିନୀ ଦୁର୍ଗାଦେବୀ ଆରାଧିତା ହୋଇଆସୁଛନ୍ତି । ପୁରାଣ ବର୍ଣ୍ଣିତ ରୂପର ଆଧାରରେ ମହିଷାମର୍ଦ୍ଦିନୀ ଦୁର୍ଗାଦେବୀ ଆରାଧିତା ହୋଇଆସୁଛନ୍ତି । ପୁରାଣ ବର୍ଣ୍ଣିତ ରୂପର ଆଧାରରେ ମହିଷାମର୍ଦ୍ଦିନୀ ଦେବୀଙ୍କର ପ୍ରସ୍ତର ପ୍ରତିମା ନିର୍ମାଣ ଗୁପ୍ତଯୁଗରୁ ଓଡ଼ିଶାରେ ଆରମ୍ଭ ହୋଇଥିବା ସମ୍ବନ୍ଧରେ ଗବେଷକଗଣ ମତ ଦେଇଥାନ୍ତି । ଖ୍ରୀଷ୍ଟୀୟ ତୃତୀୟ ଶତକରେ ନିର୍ମିତ ଓଡ଼ିଶାର ସର୍ବପ୍ରାଚୀନ ଦ୍ୱିଭୁଜାମୂର୍ତ୍ତି ଯାଜପୁରରେ ବିରଜା ନାମରେ ଉପାସିତା ଯିଏକି ବାମହସ୍ତରେ ଲାଞ୍ଜ ଧାରଣ କରି ମହିଷକୁ ତଳମୁହାଁକରି ଉତ୍ତୋଳନ ପୂର୍ବକ ଦକ୍ଷିଣ ହସ୍ତସ୍ଥିତ ବର୍ଚ୍ଛାଦ୍ୱାରା ତାକୁ ବଧ କରୁଛନ୍ତି । ସେ ଯାହା ହେଉନା କାହିଁକି ଓଡ଼ିଶାର ମନ୍ଦିରଗୁଡ଼ିକରେ ଉପାସିତ ପ୍ରସ୍ତର ନିର୍ମିତ ଦେବୀ ବିଗ୍ରହ ସମୂହକୁ ଅନୁଧ୍ୟାନ କଲେ ମନେ ହୁଏ ଯେ ସତେ ଯେପରିକି ଉତ୍କଳୀୟ ଶିଳ୍ପୀମାନସ ମହାଶକ୍ତିଙ୍କୁ ବିଭିନ୍ନ କାଳରେ ସମଧିକ ଶକ୍ତିମୟୀ ସଦୃଶ ରୂପାକୃତି ପ୍ରଦାନ କରିବାରେ ସଫଳ ହୋଇଛି । ଓଡ଼ିଶାରେ ମାତୃପୂଜା କ୍ରମେ ଏପରି ବିକଶିତ ରୂପ ପରିଗ୍ରହ କରିଛି ଯେ ଯଦ୍ଦ୍ୱାରା ଓଡ଼ିଶାରେ ଦ୍ୱିଭୁଜାଠାରୁ ଅଷ୍ଟାଦଶଭୁଜା ପର୍ଯ୍ୟନ୍ତ ବହୁବିଧ ଦୁର୍ଗାମୂର୍ତ୍ତିଙ୍କ ବିଦ୍ୟମାନ୍ୟତା ଉପଲବ୍‌ଧ ହେଉଅଛି । ଓଡ଼ିଆ ଶିଳ୍ପୀର ଅପୂର୍ବ ଶିଳ୍ପ ନୈପୁଣ୍ୟ ତଥା କଳାଭାସ୍କର୍ଯ୍ୟର ଅମର ସ୍ୱାକ୍ଷର ବହନ କରି ଉଲ୍ଲିଖିତ ଦୁର୍ଗାମୂର୍ତ୍ତି ବ୍ୟତୀତ ଆହୁରି ଅନେକ ଦୁର୍ଗା ବିଗ୍ରହ ଯେ ଲୋକଲୋଚନ ଅନ୍ତରାଳରେ ରହିଅଛି, ଏହା ନିଃସନ୍ଦେହ । ଏ ସମ୍ବନ୍ଧରେ ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧିତ୍ସା ଜାଗ୍ରତ ହେଲେ ସେସବୁ ନିଶ୍ଚିତ ରୂପେ ଲୋକଦୃଷ୍ଟିକୁ ଆସି ପାରିବ । ପ୍ରାସଙ୍ଗିକତା ତଥା ଆଲୋଚନାର ସୌକର୍ଯ୍ୟ ଦୃଷ୍ଟିରୁ ଏହି ପରିପ୍ରେକ୍ଷୀରେ ଉତ୍କଳ ସ୍ଥପତିର ଅନନ୍ୟ କଳ୍ପନାଶକ୍ତିର ଉତ୍କର୍ଷରେ ନିର୍ମିତ ଏକ ଦୁର୍ଗାମୂର୍ତ୍ତି ଉପରେ ପାଠକବର୍ଗଙ୍କୁ ସମ୍ୟକ୍ ସୂଚନା ପ୍ରଦାନ କରିବା ଉଦ୍ଦିଷ୍ଟ ପ୍ରବନ୍ଧର ମୁଖ୍ୟ ଉପଜୀବ୍ୟ । ଏହା ଏକ ସ୍ଥାପତ୍ୟ ବୈଚିତ୍ର, ଯେଉଁଥିରେ ଶିଳ୍ପୀ, ଦୁର୍ଗାଙ୍କୁ ନୌଯୁଦ୍ଧରେ ଅବତୀର୍ଣ୍ଣ କରାଇ ମହିଷାସୁର ବଧ କରିଛନ୍ତି ।

ଭୁବନେଶ୍ୱରସ୍ଥ ବ୍ରହ୍ମେଶ୍ୱର ମନ୍ଦିରର ଐଶାନ୍ୟ କୋଣରେ ପ୍ରାୟ ଏକଶହ ମିଟର ଦୂରତ୍ୱରେ ଉତ୍ତୁଙ୍ଗ ଶିଖରରେ ଦଣ୍ଡାୟମାନ ଏକ ପ୍ରକାଣ୍ଡ ବଟବୃକ୍ଷ ମୂଳରେ ଏହି ଅଷ୍ଟଭୁଜା ଦୁର୍ଗାମୂର୍ତ୍ତି ନାମକୁ ମାତ୍ର ଉପାସିତ ହେଉଥିଲେ ହେଁ ଏଯାବତ୍ ତାହା ପର୍ଯ୍ୟଟକମାନଙ୍କ ଦୃଷ୍ଟି ସମକ୍ଷୀଭୂତ ନହେବା ବଡ଼ ପରିତାପର ବିଷୟ । ଉତ୍କଳୀୟ ଭାସ୍କର୍ଯ୍ୟ ଶିଳ୍ପ ଦୃଷ୍ଟିରୁ ଏହା ଅନନ୍ୟ ସାଧାରଣ ଓ ଦୁର୍ଗା ବିଗ୍ରହ ନିର୍ମାଣର ଶୈଳ୍ପିକ ଶୈଳୀ ହିସାବରେ ଏହା ସ୍ୱତନ୍ତ୍ର ମଧ୍ୟ । କାରଣ ଭୁଜାନୁପାତରେ ଅନେକ ଦୁର୍ଗାମୂର୍ତ୍ତି ଓଡ଼ିଶାର ବିଭିନ୍ନ ସ୍ଥାନରେ ଉପାସିତ ହେଉଥିଲେ ହେଁ ଉକ୍ତ ଅଷ୍ଟଭୁଜା ଦୁର୍ଗା ହେଉଛନ୍ତି ସ୍ଥପତିର ଏକ ଅଭିନବ ପରିକଳ୍ପନା । ଶିଳ୍ପୀ ସ୍ୱୀୟ ଶିଳ୍ପ ପ୍ରତିଭାର ପରିଚୟ ଦେଇ ଏଠାରେ ମହାଦେବୀ ଦୁର୍ଗାଙ୍କୁ ନୌଯୁଦ୍ଧରେ ଅବତୀର୍ଣ୍ଣ କରାଇଛି । ଅଢ଼େଇଫୁଟ ଉଚ୍ଚତା ବିଶିଷ୍ଟ ଉକ୍ତ ବିଗ୍ରହର ଉଭୟ ପାର୍ଶ୍ୱରୁ ଦୁଇଟି ଲେଖାଏଁ ହାତ ଭାଙ୍ଗି ଯାଇଥିଲେ ହେଁ ଅବଶିଷ୍ଟ ଅକ୍ଷୁଣ୍ଣ ଥିବା ଚାରୋଟି ହସ୍ତରେ ଦେବୀ ଧାରଣ କରିଥିବା ତୀର, ଚକ୍ର, ଢାଲ ଓ ଏକ ସର୍ପରୁ ମୂର୍ତ୍ତି ଶିଳ୍ପର ପରାକାଷ୍ଠା ସୂଚିତ ହୁଏ । ଦୁଇଜଣ ରମଣୀ ପରିଚାଳିତ ନୌକାରେ ଦେବୀ ଦଣ୍ଡାୟମାନା । ନୌକାଗର୍ଭସ୍ଥିତ କଟା ମହିଷ ମୁଣ୍ଡରୁ ଜଣାଯାଏ ଶକ୍ତିମୟୀ ଦେବୀ ଜଳଯୁଦ୍ଧରେ ମହିଷ ଶରୀର ବିଶିଷ୍ଟ ଅସୁରର ମସ୍ତକ ଛେଦନ କଲାପରେ କର୍ତ୍ତିତ ଗ୍ରୀବାରୁ ଦାନବ ଅର୍ଦ୍ଧ ନିଷ୍କାନ୍ତ ଅବସ୍ଥାରେ ବହିର୍ଗତ ହୋଇ ଦେବୀଙ୍କ ସହ ଯୁଦ୍ଧ କରୁଛି । ଅସୁରର ଡାହାଣ ଗୋଡ଼ ମହିଷର ଗଣ୍ଡି ମଧ୍ୟରେ ଲୁକ୍କାୟିତ ଥିଲେ ହେଁ ବାହାରେ ଥିବା ବାମଗୋଡ଼ରେ ଅସୁର ଆଣ୍ଠେଇ ପଡ଼ିଛି ଏବଂ ଦେବୀ ବାହନ ସିଂହ ଉକ୍ତ ଆଣ୍ଠୁ ଉପରେ ଦଶନାଘାତ କରୁଛି । ଦେବୀଙ୍କର ବାମହସ୍ତରୁ ଆଲମ୍ବ ସର୍ପ ଅସୁରପ୍ରତି ଦଂଶନୋଦ୍ୟତ ଅବସ୍ଥାରେ ଅଛି । ଅସୁର ଦକ୍ଷିଣ ହସ୍ତରେ ଏକ ସୁଦୀର୍ଘ କୃପାଣ ଓ ବାମହସ୍ତରେ ଏକ ଢାଲ ଧାରଣପୂର୍ବକ ଦେବୀ ଆକ୍ରମଣର ପ୍ରତିରୋଧ କରୁଅଛି । ମୂର୍ତ୍ତିଟି ଅତ୍ୟୁଚ୍ଚ ନହେଲେ ମଧ୍ୟ ଭାସ୍କର୍ଯ୍ୟ ଶିଳ୍ପ ଦୃଷ୍ଟିରୁ ଏହା ଯେ ବିରଳ ପର୍ଯ୍ୟାୟର, ଏଥିରେ ମତଦ୍ୱୈଧ ନାହିଁ ।

ନୌକା ଉପରେ ଏତାଦୃଶ ଏକ ଦୁର୍ଗାମୂର୍ତ୍ତି ନିର୍ମାଣ କରିବା ପାଇଁ ଉତ୍କଳୀୟ ଶିଳ୍ପୀ କାହିଁକି ଯେ ଏପରି ସ୍ଥାନ ନିର୍ବାଚନ କଲା, ତାହା ବିଚାର୍ଯ୍ୟ । ଅତୀତରେ ଏହି ସ୍ଥାନ ଅର୍ଥାତ୍ ପୁରୁଣା ଭୁବନେଶ୍ୱରର ଉତ୍ତର ଦିଗରେ ବିସ୍ତୀର୍ଣ୍ଣ ଜଳରାଶି ରହିଥିବାର ସୂଚନା ମିଳେ । କାରଣ ଲିଙ୍ଗରାଜ ମନ୍ଦିରର ଉତ୍ତରରେ ରଥ ଦାଣ୍ଡରେ ଯେଉଁ ବୈତାଳେଶ୍ୱର ମନ୍ଦିର ଅବସ୍ଥିତ, ତାହା ଏକ ବୋଇତ ଆକୃତିରେ ନିର୍ମିତ । ମନ୍ଦିର ଶିଳ୍ପଦୃଷ୍ଟିରୁ ନାଗର, ଆନ୍ଧ୍ର, ଦ୍ରାବିଡ଼, ବେସର ଶୈଳୀର କିମ୍ବା ରେଖ ଦେଉଳ ଅଥବା ପୀଠ ଦେଉଳ ରୂପେ ଏହି ମନ୍ଦିର ନିର୍ମାଣ କରାଯାଇ ପାରିଥାନ୍ତା, ମାତ୍ର ବିସ୍ତୀର୍ଣ୍ଣ ଜଳଭାଗର ତଟଦେଶରେ ବୋଇତ ଆକୃତିର ସାଦୃଶ୍ୟ ରଖି ମନ୍ଦିର ନିର୍ମାଣ କରିବାକୁ ଶିଳ୍ପୀମାନସରେ ଆଗ୍ରହ ଜନ୍ମିବା ସ୍ୱାଭାବିକ, ଯାହାର ସଫଳ ରୂପାୟନ ଘଟିଛି ବୈତାଳେଶ୍ୱର ମନ୍ଦିରରେ । ଠିକ୍ ସେହିପରି ଭୁବନେଶ୍ୱରର ଦକ୍ଷିଣ ଉପକଣ୍ଠରେ ପ୍ରବାହିତ ପୁଣ୍ୟତୋୟା ଗନ୍ଧବତୀ ନଦୀର ଉପପ୍ରଦେଶରେ ବ୍ରହ୍ମେଶ୍ୱର ମନ୍ଦିର ସମୀପସ୍ଥ ଆଲୋଚ୍ୟ ଦୁର୍ଗାମୂର୍ତ୍ତି ନିର୍ମାଣ କଲାବେଳେ ସ୍ଥପତି ଏକ ନୂତନ ଚିନ୍ତାଧାରା ପ୍ରୟୋଗରେ ନୌକା ଉପରେ ଦୁର୍ଗାଦେବୀଙ୍କୁ ଅବତୀର୍ଣ୍ଣ କରାଇଥିବା ସମୀଚୀନ ।

ପୌରାଣିକତା ଦୃଷ୍ଟିରୁ ଏତାଦୃଶ ପରିକଳ୍ପନା ନିଶ୍ଚୟ ଉଦ୍ଭଟ ନୁହେଁ । କାରଣ ଉକ୍ତ ମୂର୍ତ୍ତିକୁ ଦେଖି ଅଥବା ଅନୁରୂପ ଅନ୍ୟକୌଣସି ନୌଯୁଦ୍ଧରେ ଅବତୀର୍ଣ୍ଣା ଦୁର୍ଗାମୂର୍ତ୍ତିରୁ ପ୍ରେରଣା ପାଇ ଉତ୍କଳବ୍ୟାସ ସାରଳାଦାସ ସ୍ୱୀୟ ସାରସ୍ୱତ ପ୍ରତିଭାର ପରିଚୟ ଦେଇ 'ଚଣ୍ଡୀ ପୁରାଣ'ରେ ଲେଖିଛନ୍ତି -

'ପୃଥ୍ୱୀର ମଧ୍ୟରେ ସେହୁ ନପାରିଲା ରହି
କ୍ଷୀର ସମୁଦ୍ର ମଧ୍ୟରେ ହେଲା ଜଳଶାୟୀ ।
ବୁଡ଼ିଗଲା ଅସୁର ଯେ ଅଗାଧ ଜଳରେ
ଦୁର୍ଗାଦେବୀ ବୁଡ଼ିଗଲେ ତାହାର ସଙ୍ଗରେ ।
ଲକ୍ଷେ ତାଳ ଜଳେ ବୁଡ଼ିଗଲା ଯେ ଦଇତ
ଦୁର୍ଗାଦେବୀ ତହିଁ ବୁଡ଼ି ହୋଇଲେ ଚକିତ ।
ଘୋର ଗର୍ଜନ କରଇ ଜଳରେ ମହିଷା
ଦୁର୍ଗାଦେବୀ ଛାଡୁଛନ୍ତି ମାରିବା ଭରସା ।'

ଦୁର୍ଗାଙ୍କର ଏତାଦୃଶ ଦୁର୍ଭାବନାରୁ ମା' ମଙ୍ଗଳା ଆବିର୍ଭୂତା ହୋଇ କାମ୍ୟକ ବନରେ ରହି ଜଳପାଶ ଦ୍ୱାରା ମହିଷାସୁରକୁ କ୍ଷଣକ ମଧ୍ୟରେ କୂଳକୁ ଟାଣି ଆଣିଲେ । ଇତ୍ୟବସରରେ ସମୟର ସଦୁପଯୋଗ କରି ମହାମାୟା ଦୁର୍ଗା ଅସୁରକୁ ଆକ୍ରମଣ କଲେ । ମା' ମଙ୍ଗଳାଙ୍କ ପରାମର୍ଶ କ୍ରମେ ବିବସନା ଦୁର୍ଗା ବ୍ରହ୍ମଯୋନି ରୂପକ ବିଶ୍ୱରୂପ ଦ୍ୱାରା ମହିଷାକୁ ହୀନବୀର୍ଯ୍ୟ କରାଇ ଦେବୀଦୁର୍ଗା ଅସୁରବକ୍ଷରେ ଶୂଳବିଦ୍ଧ କରି ତାକୁ ବଧ କଲେ । ଫଳରେ ଧରାପୃଷ୍ଠରେ ଶାନ୍ତିର ପ୍ଲାବନ ସୃଷ୍ଟି ହେଲା । ପୌରାଣିକ ଆଖ୍ୟାନକୁ ଭିତ୍ତିକରି ସ୍ଥପତି ପ୍ରସ୍ତର ଗାତ୍ରରେ ରୂପ ପ୍ରଦାନ କରିଛି ଅଥବା ମୂର୍ତ୍ତି ପରିକଳ୍ପନାକୁ ଆଧାର କରି ଶାସ୍ତ୍ରକାର ଆଖ୍ୟାୟିକା ସୃଷ୍ଟି କରିଛି, ତାହା ନିର୍ଦ୍ଧାରଣ କରିବା ଏକ ବିବାଦୀୟ ବିଷୟ ହୋଇଥିଲେ ମଧ୍ୟ ଆଲୋଚ୍ୟ ନୌଯୁଦ୍ଧରେ ଅବତୀର୍ଣ୍ଣା ମହିଷମର୍ଦ୍ଦିନୀ ଦୁର୍ଗାମୂର୍ତ୍ତି ସଦୃଶ ଅନେକ ଉଚ୍ଚକୋଟୀର ମୂର୍ତ୍ତି ଯେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଅନାବିଷ୍କୃତ ଅବସ୍ଥାରେ ରହିଛି, ଏହା ଏକ ସର୍ବବାଦୀ ସମ୍ମତ ସତ୍ୟ । ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ଆନ୍ତରିକ ତଥା ନିଷ୍ଠାପର ଉଦ୍ୟମ ଅବ୍ୟାହତ ରହିଲେ ସେଗୁଡ଼ିକ ନିଶ୍ଚୟ ଯେ ଦିନେ ଲୋକସମକ୍ଷକୁ ଆସିବା ସହିତ ଉତ୍କଳୀୟ ପର୍ଯ୍ୟଟନ ଶିଳ୍ପର ନୂତନ ଦିଗ ଯେ ଉନ୍ମୋଚନ କରିପାରିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ନୂଆଗାଁ
ଇଡିପୁର, ଭୁବନେଶ୍ୱର-୨

# ସୋନପୁରରେ ଆଶ୍ୱିନ କୃଷ୍ଣାଷ୍ଟମୀ

ଡ. ପବିତ୍ର ମୋହନ ନାୟକ

**ସୋ**ନପୁରକୁ ଆଶ୍ୱିନ ଆସେ ମୁହଁରେ ସିନ୍ଦୂର ବୋଳି, ଦେହରେ ଦହି ଦହନା ମାଖି । ଗଳାରେ ମନ୍ଦାରଫୁଲର ମାଳା ଲମ୍ଵାଇ ଆଶ୍ୱିନ ଆସେ । ଢୋଲ ଟମକ ନିଶାଣର ଷୋଳ ଭରଣୀ ବଜାଇ, ମୁହୁରୀ ଫୁଙ୍କି, ଟିଣିଟିଣି ଘଣ୍ଟି ହଲାଇ, ଆବାହନୀ ମନ୍ତ୍ର ଉଚ୍ଚାରଣ କରି ଆଶ୍ୱିନ ଆସେ । କଳାଧଳା ଛତ୍ର ଧରି, ବନଦୁର୍ଗା, ବାଉତୀ ଯନ୍ତ୍ର କାଟି, ଧୂପ ଗୁଗ୍ଗୁଳର ଧୂଆଁ ଉଡାଇ ଉଡାଇ ଆଶ୍ୱିନ ଆସେ । ଆଶ୍ୱିନ ଆସେ ଛାଗଳର ନିରୀହ ରୁଧିର ବୋଳି ହୋଇ, ମହାପଶୁର ରକ୍ତରେ ହୋରି ଖେଳି, ଖଣ୍ଡାଖର୍ପର ଧରି, ଜିଭ ଲହଲହ କରି । ମଥାରେ ଚୂଳ ବାନ୍ଧି, ଚେପ୍‌ଟା ଢୋଲ ଉପରେ ଥେଇ ଥେଇ ନାଚି ନାଚି ଆଶ୍ୱିନ ଆସେ । ଦୁର୍ଗୋତ୍ସବର ଢୋଲ ପିଟିପିଟି, କିଳିକିଳା ରାବ କରି, ଅନ୍ଧାରକୁ ଗାଢ଼ତର କରି, ଛାତିରେ ଛନକା ପଶାଇ ଆଶ୍ୱିନ ଆସେ ସୋନପୁରକୁ ।

**ଦୁର୍ଗୋତ୍ସବର ପ୍ରସ୍ତୁତି ପର୍ବ :** ବଂଗ ଦେଶରେ ଦୁର୍ଗାପୂଜା ପ୍ରାତଃକାଳରେ ଅନୁଷ୍ଠିତ ହୁଏ ।

ପ୍ରାତରାବାହୟେଦ୍ଦେବୀଂ ପ୍ରାତଃ ପ୍ରାତଃ ପ୍ରପୂଜୟେତ୍
ପ୍ରାତରେବ ବଳିଂ ଦତ୍ୱା ପ୍ରାତରେବ ବିସର୍ଜୟେତ୍ ।

କିନ୍ତୁ ଦେବୀ ପୁରାଣରେ ଏ ପର୍ବ ରାତ୍ରିର ପର୍ବ । ନକ୍ତଂବ୍ରତମିଦଂ ସ୍ମୃତମ୍ । ମହିଷାସୁରମର୍ଦ୍ଦିନୀ ଦୁର୍ଗା ରାତ୍ରିରୂପା । ତେଣୁ ଏ ବ୍ରତ ରାତ୍ରିର ବ୍ରତ । ରାତ୍ରିରୂପା ଯତୋ ଦେବୀ ଦିବାରୂପୋ ମହେଶ୍ୱରଃ ।

ରାତ୍ରିବ୍ରତମିଦଂ ଦେବୀ ସର୍ବପାପ ପ୍ରଣାଶନଂ
ସର୍ବକାମପ୍ରଦଂ ନୃଣାଂ ସର୍ବଶତ୍ରୁ ନିବର୍ହଣଂ ।
ରାତ୍ରିବ୍ରତମିଦଂ ତସ୍ୟ ରାତ୍ରୌ କର୍ତ୍ତବ୍ୟ ତେଷ୍ୟତେ
ନକ୍ତଂ ବ୍ରତମିଦଂ ତସ୍ମାଦନ୍ୟଥା ନରକେ ଗତିଃ ॥

ଆଶ୍ୱିନ କୃଷ୍ଣ ଅଷ୍ଟମୀ ଦୁର୍ଗୋତ୍ସବର ପ୍ରାରମ୍ଭିକ ପର୍ବ । ଦୁର୍ଗାଦେବୀଙ୍କ ପ୍ରବୋଧନର ଦିନ । ଷୋଡ଼ଶରାତ୍ର ପୂଜାର ଅୟମାରମ୍ଭ । ଏହି ଦିନ ଦେବୀଙ୍କର ସହସ୍ର କୁମ୍ଭାଭିଷେକ ହୁଏ । ଆଡମ୍ବରରେ । ବିଧି ଅନୁସାରେ । ସାବଧାନତା ସହକାରେ ।

ରାଜ ଉଆସର ଆଗଭାଗ ଅଗଣାରେ ଏକ ପାଟଖଣ୍ଡା ଘର ବା ପର୍ବଗୃହ ନିର୍ମିତ ହୁଏ । ପୂର୍ବ ପଶ୍ଚିମ କ୍ରମରେ ! ପଶ୍ଚିମକୁ ପ୍ରବେଶ ଦ୍ୱାର । ପଲାଶ ପ୍ରଗଣା ମରୀଚପୁର ଗାଁର ପ୍ରଜାମାନେ ଏଇ ଦୁଇ ବଖରା ଘର ତିଆରି କରନ୍ତି । ଶାଳକାଠରେ ଘର ତିଆରି ହୁଏ । ଚରିହା ବା କାଶ ତୃଣରେ ଆଚ୍ଛାଦନ କରାଯାଏ । କେଉଟମାନେ ଡଙ୍ଗାରେ ମହାନଦୀରୁ ବାଲି ବୋହି ଆଣି ରାଜଘାଟରେ ଜମା କରନ୍ତି । ସେଇଠୁ କୁଲୀପାଟକ ଲୋକେ ବାଲି ଆଣି ଖଣ୍ଡାଘରରେ ବିଛେଇ ଦିଅନ୍ତି । ଏହିଭଳି ଭାବରେ ଖଣ୍ଡାଘର ତିଆରି ହୁଏ । ଖଣ୍ଡାଘରେ ପାଟମାହେଶ୍ୱରୀ ମୂର୍ତ୍ତି ଖୋଦିତ ପାଟଖଣ୍ଡ, ଦଳଖଣ୍ଡା, ଖୋରାସାନ୍, ତଲୱାର୍, ଛୁରୀକଟାରୀ ରଖାଯାଏ । ତା' ଆଗରୁ ମାଲଗାଟରେ ଏଇ ଶସ୍ତ୍ର ସବୁ ଖାତୀ ମାର୍ଜ୍ଜନ କରେ । ଶାଣ ଦିଏ । ଏଇ ଦିନ ସେ ଉପବାସରେ ରହେ । ସୋନପୁରର ପ୍ରଥମ ଚୌହାଣ ରାଜା ମଦନଗୋପାଳ ସିଂହଦେବ ଏସବୁ ଭାଇଭାଗରେ ପାଇଥିଲେ । ସମ୍ବଲପୁରରୁ ଆଣିଥିଲେ । ଆଣିଥିଲେ ସୁବର୍ଣ୍ଣ ପ୍ରତିମା ଭୁବନେଶ୍ୱରୀଙ୍କୁ । ତାଙ୍କୁ ମଧ ଏହି ଦିନ ଏହି ଖଣ୍ଡାଘରରେ ସ୍ଥାପନା କରାଯାଏ । ରାତିରେ ରାଜପୁରୋହିତ, ରାଜପାଣିଗ୍ରାହୀ, ରାଜଗୁରୁ, କେଶଲପୁରା ହୋତା, ଭାଲିଆପଦର ପଣ୍ଡା ହାତରେ ଏସବୁ ଅସ୍ତ୍ରଶସ୍ତ୍ର ଧରି ଶଙ୍ଖ ବୀରତ୍ୱର ବିବିଧ ବାଦ୍ୟ ଭିତରେ ଏକ ଶୋଭାଯାତ୍ରାରେ ବାହାରନ୍ତି ମହାନଦୀର ଖଣ୍ଡାଧୁଆ ଘାଟକୁ । ସାଥିରେ ଥାନ୍ତି ମଲ୍ଲିକ୍, ଜମିଦାର, ତହସିଲଦାର, ପଟ୍ଟନାୟକ, ଦରୁଆନ ମଶାଲଚୀ, ସିପାହୀ, ଚପରାଶୀ ଆଦି ଦଳବଳ । ମହାନଦୀ ଜଳ ଚଳଚଞ୍ଚଳ ହୋଇଉଠେ । ଖଣ୍ଡାଧୁଆ ଘାଟରେ ଯୂପସ୍ତମ୍ଭ । ପାଟଖଣ୍ଡା ପୂଜା ହୁଏ । ବଳିପଡ଼େ । ମେଷ ବଳି ଓ ମହାପଶୁ ବଳି । ମହାପଶୁ ବା ପୋଢ଼ଟି ଆସେ ଖମାର ଗାଁରୁ । ମହଦାରେ ଦିନସାରା ଘାସ ଚରେ । ଶେଷ ମୁଠାକ ଘାସ । ତା'ପରେ ସନ୍ଧ୍ୟାରେ ପଘାରେ ଟଣା ହୋଇ ଆସିଥାଏ ମୃତ୍ୟୁମୁହଁକୁ । ସରିଆ ଘରର ଯାଉ ଚକୁଳି ଭୋଗ ପରେ ପୋଢ଼ର ପାଳି । ପାଷାଣ ରକ୍ତରେ ବୋଳି ହୋଇଯାଏ । ରାଜପୁରୋହିତ ପାଟଖଣ୍ଡା, ରାଜପାଣିଗ୍ରାହୀ ଦଳଖଣ୍ଡା, ରାଜଗୁରୁ ତେଗା, ଭାଲିଆପଦର ପଣ୍ଡା କଟାରୀ, କେଶଲପୁରା ହୋତା ଛୁରୀ ଧରି ସମଭିବ୍ୟାହାରରେ ଫେରନ୍ତି ଖଣ୍ଡାଘରକୁ, ଖଣ୍ଡାଧୁଆ ଘାଟରୁ

ଖଣ୍ଡାଘର । ବନ୍ଧୁକ ଫୁଟେ । ଦୁର୍ଗୋତ୍ସବ ବିଧିରେ ପୂଜା ହୁଏ । ହୋମ ହୁଏ । ପୁଣି ବଳିଦାନ ହୁଏ । ମେଷ ବଳି । ମେଷ ଆସେ ଉଫୁଲାରୁ । ପାଟଖଣ୍ଡା ଭୋଗ ଯାଉ ଚକୁଳି, କ୍ଷୀର, କ୍ଷୀରି ବର୍ଗାଇ ପାଏ । ମହିଷ ଛେଦ ପାଏ ଘାସି ପଣୁଆ । ମେଷ ଛେଦ ଖାତୀ ନିଏ ।

ଷୋଳଦିନ ଧରି ହୋମାଗ୍ନି ଜଳୁଥାଏ । ପଲାଶକାଠର ହୋମାଗ୍ନି । ପଲାଶଖୁଣ୍ଟା ମାଫି ଲାଇସେନ୍ସ ଦିଅନ୍ତି ଫରେଷ୍ଟ ଅଫିସର୍ । ଶରଧାପାଲି, କବାଟତଲାଇ ନନ୍ଦନମାଳ, ଧଉରାଖମନ୍ ଓ ବାଙ୍କବିଜା ଗାଁର ପ୍ରଜାମାନେ ଏଇ ଖୁଣ୍ଟା ଯୋଗାନ୍ତି । ବରଗାଇ ଯୋଗାଏ କରଚାଲି । ମାଳୀ ପଣୁଆ ସମିଧ, ଦୁବଫୁଲ ଦାଖଲ କରେ । ମାହାଲିକ ଦିଏ ହୋମ ପାଇଁ ଘିଅ । କଳସ ବସାଇବା ପାଇଁ ରଂଗଧାନ । ଖଣ୍ଡା ଉଠିବା ପର୍ଯ୍ୟନ୍ତ ଷୋଳଦିନ ଧରି ଅଖଣ୍ଡ ଜାଗର ଜଳେ । ତେଲ ଦିଏ ତେଲୀ ପଣୁଆ । ସରିଆଘର ରୁଷିଆ ଭୋଗ ରାନ୍ଧେ । ଭୋଗ ପ୍ରସାଦ ଚାରିଘରିଆମାନେ ପାଆନ୍ତି । ଖଣ୍ଡାଘର ପହରା କରନ୍ତି ପୋଲିସ୍ । ଚାରିଘରିଆ ଓ ଜଗନ୍ନାଥ ମନ୍ଦିର ପୂଜକମାନେ । ଖଣ୍ଡାଘରେ ଷୋଡଶରାତ୍ର ପୂଜା ହୁଏ । ଗଣ୍ଡାମାନେ ପ୍ରତ୍ୟହ ଷୋଳ ଭରଣୀ ବାଜା ବଜାନ୍ତି ।

ସୋନପୁର ସହର ଷୋଳ ଭରଣୀ ବାଜାରେ ଦୁଲିକି ଉଠେ । ସେ ଆଡ଼େ ମନ୍ଦିର ସବୁ ମନ୍ତ୍ରମୁଖର ହୋଇ ଉଠେ । ଆଚାର୍ଯ୍ୟବରଣ, ବ୍ରହ୍ମାବରଣ, ହୋତୃବରଣ, ଋତ୍ୱିକ୍‌ବରଣ ହୁଅନ୍ତି । ସହରର ଭଗବତୀ, ଦୁର୍ଗାଦେବୀ, ନାରାୟଣୀ, ସମଲେଇ, ବୁଢ଼ା ସମଲେଇ, ଖମ୍ଭେଶ୍ୱରୀ, ସୁରେଶ୍ୱରୀ, ମାଣିକେଶ୍ୱରୀ, ରାମଚଣ୍ଡୀ ଓ ବିମଳାକ୍ଷୀ ମନ୍ଦିରରେ ଯଥାକ୍ରମେ କେଉଟିପାଲି ଓ ଜମ୍ବାଲିପାଲି, ଅରିଗାଁ ଓ ଯୋଗୀଗୁମ୍ଫା, ସେଲେଡ଼ି, ହିକୁଡ଼ି, କୁଦପାଲି, ଦେଉଳୀ, କମିରା, ଲଙ୍କାବାହାଲ, ଖୁଣ୍ଟଲାପାଲି, ବାଘବାହାଲି ଗୌନ୍ତିଆ ବା ନମ୍ବରଦାରମାନେ ଏକ ଆବର୍ତ୍ତ ଚଣ୍ଡୀପାଠ କରନ୍ତି ଏହି ଦିନ । ଦୁର୍ଗାଦେବୀ ମନ୍ଦିରରେ ବଡ଼ପଡ଼ା ମିଶ୍ର ବଗଳା ମନ୍ତ୍ର ତେଲେଣ୍ଡାରେ ରାୟଗୁରୁ ରାମଚଣ୍ଡୀଙ୍କ ଆଗରେ କାଳୀ ମନ୍ତ୍ର ଓ ଲେହେଡ଼ିରେ ଦେବୀ ଭୁବନେଶ୍ୱରୀଙ୍କ ଆଗରେ ଭୁବନେଶ୍ୱରୀ ମନ୍ତ୍ର ୧୦୮ ଥର ଲେଖାଏଁ ଜପ କରନ୍ତି । ଭୁଜବଳପୁରରେ ନମ୍ବରଦାର ବେଦବାକ୍ ଏକ ଆବର୍ତ୍ତ ଚଣ୍ଡୀପାଠ କରନ୍ତି । କେବଳ ଦେବୀ ମନ୍ଦିରରେ ନୁହ । ସୁବର୍ଣ୍ଣମେରୁ ମନ୍ଦିରରେ କୁଦପାଲି ନମ୍ବରଦାର ଏକ ଆବର୍ତ୍ତ ମନ୍ଦିରରେ ନୁହ । ସୁବର୍ଣ୍ଣମେରୁ ମନ୍ଦିରରେ କୁଦପାଲି ନମ୍ବରଦାର ଏକ ଆବର୍ତ୍ତ ଅଭିଷେକ କଲାବେଳେ, ଲୁପୁରସିଙ୍ଘା ନମ୍ବରଦାର ଗୋକର୍ଣ୍ଣେଶ୍ୱର ମନ୍ଦିରରେ ହରିହର ସ୍ତବ ପଣ୍ଡୁଆ ନମ୍ବରଦାର ରାମେଶ୍ୱର ମନ୍ଦିରରେ ସିଦ୍ଧ ବିନାୟକ ସ୍ତୋତ୍ର ଓ ଚମ୍ପାମାଳ ନମ୍ବରଦାର ଚମ୍ପେଶ୍ୱର ମନ୍ଦିରରେ ଶିବ କବଚ ପାଠ କରନ୍ତି । ଏକ ଆବର୍ତ୍ତ ଲେଖାଏଁ ବ୍ରାହ୍ମଣୀପାଲି ନମ୍ବରଦାର ଲୋକନାଥ ମନ୍ଦିରରେ ଅଷ୍ଟୋତ୍ତର ଶହେ ଥର ଶିବ ପଞ୍ଚାକ୍ଷର ମନ୍ତ୍ର ଉଚ୍ଚାରଣ କରନ୍ତି । ସୋନପୁର ଅଷ୍ଟଚଣ୍ଡୀ, ଅଷ୍ଟଶମ୍ଭୁ ଓ ଅଷ୍ଟବିଷ୍ଣୁଙ୍କ ମିଳନ ପୀଠ । ଦେବୀ ଉପାସନାର ମାସ ଆଶ୍ୱିନରେ ତେଣୁ ବଗଳା ମନ୍ତ୍ର, କାଳୀ ମନ୍ତ୍ର, ଭୁବନେଶ୍ୱରୀ ମନ୍ତ୍ର ସହିତ ତାଳ ଦିଏ ଶିବ ପଞ୍ଚାକ୍ଷର, ହରିହର ସ୍ତବ ଓ ସିଦ୍ଧ ବିନାୟକ ସ୍ତୋତ୍ର । ଏହା ସହିତ ବିଷ୍ଣୁ ସହସ୍ର ନାମ, ଗୋପାଳ ସହସ୍ର ନାମ ଓ ରାମହୃଦୟ ସଂହତିର, ସହିଷ୍ଣୁତାର, ଏକତାର ସ୍ୱର ତୋଳେ । ମହାମିଳନର ମହାମନ୍ତ୍ର ଗାଏ । ମେଘଲାର ନମ୍ବରଦାର ଦଧିବାମନ ମନ୍ଦିରରେ ଓ ମେଣ୍ଢାଶାଳ ନମ୍ବରଦାର ଭିତିରି ଗୋପାଳଜୀ ମନ୍ଦିରରେ ଏବଂ ବାଘମାରୀ, ଦରଘାଟ ନମ୍ବରଦାର ଓ ବଡ଼ପଡ଼ା ମିଶ୍ର ନୃସିଂହ ମନ୍ଦିରରେ ଏକ ଆବର୍ତ୍ତ ବିଷ୍ଣୁ ସହସ୍ର ନାମ ପାଠ କରନ୍ତି । କେଲଗାଁ ଓ ଭ୍ରମରପାଲି ନମ୍ବରଦାରମାନେ ଯଥାକ୍ରମେ ବଡ଼ ଗୋପାଳଜୀ ଓ ଗୋପୀନାଥ ମନ୍ଦିରରେ ଗୋପାଳ ସହସ୍ର ନାମ ପାଠ କଲାବେଳେ, ତେନ୍ତୁଳି ମହଦାର ନମ୍ବରଦାର ରାମଜୀ ମନ୍ଦିରରେ ବସି ରାମ ହୃଦୟ ଜପ କରନ୍ତି ଏକ ଆବର୍ତ୍ତ । ଏହି ଦିନ । ଭକ୍ତିର ଏ ସମ୍ମିଳିତ ସ୍ୱର ବିବିଧ ଧର୍ମ ସଂପ୍ରଦାୟର ଏ ସୁଲଳିତ ସିମ୍ଫୋନି ସୋନପୁର ଆକାଶକୁ ସରସ, ସୁନ୍ଦର, ମଧୁମୟ, ସଂଗୀତମୟ କରିଦିଏ ।

ଜୀବତ୍ ପୁତ୍ରିକା ବ୍ରତ :

ଇଶେ ମାସ୍ୟ ଶିତେ ପକ୍ଷେ ଚାଷ୍ଟମୀ ଯା ତିଥିର୍ଭବେତ୍
ପୁତ୍ର ସୋଭାଗ୍ୟଦା ସ୍ତ୍ରିଣାଂ ଖ୍ୟାତା ସା ଜୀବ ପୁତ୍ରିକା ।
ଶାଳିବାହନ ରାଜସ୍ୟ ପୁତ୍ରୋ ଜୀମୂତ ବାହନଃ
ତସ୍ୟାଂ ପୂଜ୍ୟଃ ସ ନାରୀଭିଃ ପୁତ୍ର ସୌଭାଗ୍ୟ ଲିପ୍ସୟା ।
ପ୍ରଦୋଷ ସମୟେ ସ୍ତ୍ରୀଭିଃ ପୂଜ୍ୟୋ ଜୀମୂତବାହନଃ
ପୁଷ୍କରିଣୀଂ ବିଧାୟାଥ ପ୍ରାଙ୍ଗଣେ ଚତୁରସ୍ରିକାଂ ।

ଭବିଷ୍ୟୋତ୍ତର ଗ୍ରନ୍ଥରେ ଆଶ୍ୱିନ କୃଷ୍ଣାଷ୍ଟମୀ ତିଥିରେ ପୁତ୍ରର ଆୟୁଷ୍କାମନାରେ ଜୀମୂତବାହନ ପୂଜାର ଉଲ୍ଲେଖ ଅଛି । ଏହାକୁ ଜୀବତ୍ ପୁତ୍ରିକା ବ୍ରତ ବା ସ୍ଥାନୀୟ ଭାଷାରେ ପୁଅ ଜୀଉଁତିଆ କହନ୍ତି । ପଶ୍ଚିମ ଓଡ଼ିଶାରେ ମା'ମାନଙ୍କର ଏହା ଏକ ପ୍ରଧାନ ବ୍ରତ । ସନ୍ଧ୍ୟାରେ ଏ ବ୍ରତ କରାଯାଏ ।

ପୂର୍ବେ ଦ୍ୟୁରପରେ ଦୂର୍ବା ପ୍ରଦୋଷେ ଯତ୍ର ଚାଷ୍ଟମୀ
ତତ୍ର ପୂଜ୍ୟଃ ସଦା ସ୍ତ୍ରୀଭିଃ ରାଜା ଜୀମୂତବାହନଃ ।
(ବିଷ୍ଣୁଧର୍ମୋତ୍ତର)

ଘର ଅଗଣା ବା ଘର ଆଗରେ ଚତୁରସ୍ର ପୁଷ୍କରିଣୀଟିଏ ଖୋଳାଯାଏ । ତୋରଣ ବିତାନ ମଣ୍ଡନ କରାଯାଏ । ପୁଷ୍କରିଣୀ ମଝିରେ ଗାତଟିଏ ଖୋଳି ତୁଳସୀ ଗଛ ଓ କଦଳୀ ଗଛଟିଏ ଲଗାଯାଏ । ଉପରେ ଚନ୍ଦ୍ରାତପ । ଆମ୍ବତୋରଣ । କଇଁଫୁଲ ଝୁଲୁଥାଏ ।

ଯୁଇ ଡାଳର ଆବରଣ ତଳେ ପୁଷ୍କରିଣୀରେ ଜୀଅଁନ୍ତା ମାଛଟିଏ ପହଁରୁଥାଏ । ଜୀମୂତବାହନଙ୍କୁ ବସାଯାଏ ପଶ୍ଚିମାଭିମୁଖ କରି ।

ଏହି ଦିନ ମଧ୍ୟାହ୍ନରେ ଘାଟ ଉଷା କରାଯାଇଥାଏ । ଅପାମାର୍ଗ, ଜହ୍ନି, କାକୁଡ଼ି ଚକି ଲାଗେ ।

ଏହି ପୂଜା ଏକାଠି କରିବାର ବିଧି ଅଛି । ମା'ମାନେ ଏକାଠି ହୁଅନ୍ତି । ନୂଆ ଟାଙ୍ଗୁଡ଼ିରେ ୨୧ ପ୍ରକାର ଫଳମୂଳ ଯୋଗାଡ଼ କରନ୍ତି : ଆଖୁ, କନ୍ଦମୂଳ, ନଡ଼ିଆ, ମୁଗ, ପାଚିଲା କଦଳୀ, ସୋହ୍ଲା, ନାରଙ୍ଗ, ବଡ଼ଚଣା, କାକୁଡ଼ି, ମକା, କରମଙ୍ଗା, ନଅରକୋଳି, ଓଉ, ଯମ୍ବୀର, ଲେମ୍ବୁ, କମଳା, କରଣ୍ଡାକୋଳି, ପଦ୍ମପୁଷ୍କର, ଜହ୍ନି, କଖାରୁ ସହିତ ପାନପତ୍ର ଓ ଫୁଲ । ପୁରାଣପଣ୍ଡା ଦୂତୀବାହନ ବା ଜୀମୂତବାହନ ଉପାଖ୍ୟାନ ଶୁଣାନ୍ତି । ଚିଲ ଓ ଶିଆଳ କାହାଣୀ ପଢ଼ନ୍ତି । ପାହାନ୍ତା ପ୍ରହରରେ ଘାଟ ଓଷା ହୁଏ । ପୋଖରୀ ବା ନଈ ଘାଟରେ ବାଲୁକା ଲିଙ୍ଗ ସ୍ଥାପନ କରାଯାଏ । ଅପାମାର୍ଗ କାଠି ବାଲିରେ ପୋତାଯାଏ । ପୂଜା ହୁଏ । ମା'ମାନେ ବଡ଼ଚଣା ଓ ଉଆଚାଉଳ ସାତୋଟି ଲେଖାଏଁ କ୍ଷୀର ସର ସହ ଗିଳି ଦିଅନ୍ତି । ପଁଶାରି ପଖାଳ, ପାଳ ତିଖୁରି ଖାଇ ଉପବାସ ଭଗ୍ନ କରନ୍ତି ।

ସ୍ତ୍ରୀମାନେ ବ୍ରତ ଦିନ ନିର୍ଜ୍ଜଳା ଉପବାସ କରିଥାନ୍ତି । ଏହି ଦିନ ଖାଇବା ମନା । ବାଚସ୍ପତି ମିଶ୍ର କୃତ ଚମତ୍କାର ଚିନ୍ତାମଣିରେ ଅନ୍ନଭୋଜନ ନିଷେଧ କରାଯାଇଛି :

ଆଶ୍ୱିନସ୍ୟାଶିତାଷ୍ଟମ୍ୟା ଯାଃ ସ୍ତ୍ରିୟୋ[illegible]ଂ ବିଭୁଂଜତେ
ମୃତବତ୍ସା ଭବେୟୁସ୍ତା ବୈଧବ୍ୟଂଚ ଭବେଦ୍ଧୃବଂ ।

ଏହି ବ୍ରତରେ ୧୦୮ଟି ଲେଖାଏଁ ଅଖଣ୍ଡ ଦୁବ ଓ ଚାଉଳରେ ପୁଡ଼ିଆଟିଏ ବନାଯାଏ । ଯେତୋଟି ପୁତ୍ର ସନ୍ତାନ ସେତୋଟି ପୁଡ଼ିଆ ଦୂତୀବାହନଙ୍କୁ ଅର୍ପଣ କରାଯାଇଥାଏ । ବ୍ରତ ପରେ ସେ ପୁଡ଼ିଆକୁ ମୁଣ୍ଡରୁ ପାଦ ପର୍ଯ୍ୟନ୍ତ ୭ ଥର ଉତୁରାଯାଏ ପୁଅମାନଙ୍କ ଦୀର୍ଘ ନିରାମୟ ଜୀବନ କାମନା କରି ।

**ଲକ୍ଷ୍ମୀପୂଜା :**

ଆଶ୍ୱିନ କୃଷ୍ଣାଷ୍ଟମୀ ଦୁର୍ଗାପୂଜା ପାଇଁ ଉଦ୍ଦିଷ୍ଟ ଥିଲେ ହେଁ, ଏହି ଦିନ ସୋନପୁର ରାଜଉଆସରେ ରାଜା ମହାଲକ୍ଷ୍ମୀ ପୂଜା କରନ୍ତି :

ଲକ୍ଷ୍ମୀବ୍ରତଂ ଚାତ୍ୟଧିକେ ଶଶାଙ୍କେ
ଯତ୍ରାଷ୍ଟମୀ ଚାଶ୍ୱିନ କୃଷ୍ଣପକ୍ଷେ ।
ଯତ୍ରୋଦୟଂ ବୈକୁରୁତେ ଦ୍ୱିଜେଶ
ତଦା ଭବେଜ୍ଜୀବିତ ପୁତ୍ରିକା ସା ।।

ଏ ପୂଜା ରାଜାଙ୍କର । ରାଜଲକ୍ଷ୍ମୀଙ୍କର । ସର୍ବସାଧାରଣଙ୍କର ନୁହ । ତଥାପି ଏ ପୂଜାର ବିଶେଷତ୍ୱ ଏହି ଯେ ଏଥିରେ ଷୋଳ ରକମର ଫୁଲ, ଷୋ'ଳ ରକମର ଫଳ, ଷୋ'ଳ ରକମର ମିଷ୍ଟାନ୍ନ ଲାଗେ । ଷୋ'ଳ ପେଣ୍ଡା ଦୁବ ଲାଗେ । ପ୍ରତି ପେଣ୍ଡାରେ ଷୋ'ଳଟି ଦୁବ ଓ ଷୋ'ଳଟି ଅକ୍ଷତ ତଣ୍ଡୁଳ । ବ୍ରତ ସୂତ୍ରରେ ଷୋ'ଳଟି ଗଣ୍ଠିପଡ଼େ । ଷୋ'ଳ ପେଣ୍ଡା ଦୁବ ଏ ବ୍ରତସୂତ୍ରରେ ଗ୍ରଥିତ ହୁଏ । ଲକ୍ଷ୍ମୀମନ୍ତ୍ରରେ ଅଭିମନ୍ତ୍ରିତ ହୁଏ ।

ଏହିଭଳି ଭାବରେ ସର୍ବଧର୍ମ ସମନ୍ୱୟର ଏ ମାଟିରେ ଦୁର୍ଗା ଓ ଲକ୍ଷ୍ମୀ ଏକ ହୋଇଯା'ନ୍ତି । ଦୁର୍ଗତିନାଶିନୀ ଦୁର୍ଗା ଓ ଧନସମ୍ପତ୍ତି ଦାୟିନୀ ମହାଲକ୍ଷ୍ମୀ ।

ଏ ଦୁର୍ଗୋତ୍ସବ ଆଚାଣ୍ଡଳ ବ୍ରାହ୍ମଣଙ୍କ ଉତ୍ସବ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ରଙ୍କ ଉତ୍ସବ । ସାର୍ବଜନୀନ ଗଣପର୍ବ ଯେଉଁଠି ଜାତିଧର୍ମ ବର୍ଣ୍ଣର ବିଭେଦ ଓ ବିବିଧତା ମ୍ଳାନ ପଡ଼ିଯାଏ । ସମସ୍ତେ ତ ସେଇଠି, ଜନନୀର ସନ୍ତାନ, ମାତୃରୂପେଣ ସଂସ୍ଥିତା ସେହି ମହାକାଳ ସ୍ୱରୂପିଣୀ ଜଗଜ୍ଜନନୀର :

ସ୍ନାତୈଃ ପ୍ରମୁଦିତେ ହୃଷ୍ଟୈର୍ବ୍ରାହ୍ମଣୈଃ କ୍ଷତ୍ରିୟୈର୍ବୈଶ୍ୟୈଃ
ଶୂଦ୍ରୈର୍ଭକ୍ତି ଯୁତୈର୍ମ୍ଲେଚ୍ଛୈରନୈଶ୍ଚ ଭୁବି ମାନବୈଃ ।
(ଭବିଷ୍ୟୋତ୍ତର)

ଦୁର୍ଗୋତ୍ସବ ବ୍ରତ ଦ୍ୱାରା ଧର୍ମ ଅର୍ଥ କାମ ମୋକ୍ଷ ମିଳେ । ଚତୁର୍ବର୍ଗ ପ୍ରାପ୍ତି ହୁଏ । ସର୍ବ କାମାର୍ଥସିଦ୍ଧ୍ୟର୍ଥଂ କର୍ମ୍ମେଦଂ ଦୁର୍ଲଭଂ ସ୍ମୃତଂ । ପୁତ୍ରଲାଭ ହୁଏ । ଆୟୁଷ ବଢ଼େ । ଧନ ପ୍ରାପ୍ତି ହୁଏ । ଏପରିକି ରାଜ୍ୟ ମିଳେ :

କର୍ମେଦଂ କ୍ରିୟତେ ଯସ୍ତୁ ସମୃଦ୍ଧିସ୍ତସ୍ୟ ଜାୟତେ
ବେଦବିଚ୍ଚଭବେଦ୍ ବର୍ଣ୍ଣୀ ତ୍ରିବର୍ଗଂ ସାଧୟେଦ୍ କ୍ରମାଦ୍ ।
କୃତ୍ୱାପ୍ନୋତି ଯଶୋରାଜ୍ୟଂ ପୁତ୍ରାୟୁର୍ଦ୍ଧନ ସମ୍ପଦଂ ।

ଏଥିପାଇଁ କ'ଣ ଆମେ ଦୁର୍ଗୋତ୍ସବର ଆୟୋଜନ କରୁଁ । ପୁରାଣର ପ୍ରତିଶ୍ରୁତି ପାଇଁ କିଛି ମାଗିବା ପାଇଁ, କିଛି ପାଇବା ପାଇଁ ? ଦୁର୍ଗା ହୁଅନ୍ତୁ କି ଲକ୍ଷ୍ମୀ ହୁଅନ୍ତୁ । ସେ ମାତୃସ୍ୱରୂପିଣୀ । ବିଶ୍ୱଜନନୀ ସନ୍ତାନବତ୍ସଳା । ସର୍ବମଙ୍ଗଳା । ତାଙ୍କ ଆଶିଷ ଟିକକ ମାଗିବା । ଆମ ଅସ୍ମିତା ଅର୍ପଣ କରିଦେବା । ଆମ୍ଭମ୍ଭରିତା ଯାହା ଜାତି ଜାତି ଭିତରେ, ସଂପ୍ରଦାୟ ଭିତରେ, ମଣିଷ ମଣିଷ ଭିତରେ ଦୁର୍ଲଂଘ୍ୟ ପ୍ରାଚୀର ଛିଡ଼ା କରାଇଦିଏ । କାମ, କ୍ରୋଧ, ଲୋଭ, ମୋହ, ଈର୍ଷା, ଅସୂୟା ଆଦି ଯାବତୀୟ ମାନବୀୟ ଦୋଷ ଦୁର୍ବଳତାକୁ ଅର୍ପଣ କରିଦେବା । ବଳିଦେବା ପଶୁତ୍ୱକୁ, ପଶୁକୁ ନୁହେଁ । ଏକ ମହତ୍ତର ଜୀବନର ସନ୍ଧାନରେ ଦୁର୍ଗୋତ୍ସବ ପାଳନ କରିବା ଘରେ ଘରେ, ପୁରେ ପୁରେ :

ପୂଜନୀୟା ଜନୈର୍ଦ୍ଦେବୀ ସ୍ଥାନେ ସ୍ଥାନେ ପୁରେ ପୁରେ
ଗୃହେ ଗୃହେ ଶକ୍ତିପରୈର୍ଗ୍ରାମେ ଗ୍ରାମେ ବନେ ବନେ ।
(ଭବିଷ୍ୟୋତ୍ତର)

ପ୍ଲଟ ନଂ-୨୨
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର



# ଶ୍ରୀ ଶ୍ରୀ ଦୁର୍ଗାପୂଜାର ରହସ୍ୟ

ପୂର୍ଣ୍ଣେନ୍ଦୁ କୁମାର ନନ୍ଦ

**ଶ**ରତ କାଳରେ କ୍ଷିତିତତ୍ତ୍ୱ ଅର୍ଥାତ୍ ଜଡତତ୍ତ୍ୱର ପୂର୍ଣ୍ଣ ଅଭିବ୍ୟକ୍ତି ହୋଇଥାଏ । ଏହାଫଳରେ ଚୈତନ୍ୟରୂପୀ ଦେବଦେବୀଗଣ ଜଡତତ୍ତ୍ୱର ମୋହରେ ଆଚ୍ଛନ୍ନ ହୋଇଥାନ୍ତି । ଦେବଗଣ ଏହି ସମୟରେ ଆତ୍ମାନୁସନ୍ଧାନରେ ପ୍ରଯତ୍ନ ବିହୀନ ହୋଇ ସୁପ୍ତ ରହିଥାନ୍ତି । ଏହି ସମୟରେ ମନୁଷ୍ୟଗଣ ଚୈତନ୍ୟସତ୍ତାଙ୍କୁ ଉଦ୍‌ବୁଦ୍ଧ କରିବାପାଇଁ ବିଶେଷ ଯତ୍ନବାନ୍ ହୋଇଥାନ୍ତି ।

ଏହି ଶରତକାଳରେ ଆକାଶ, ସୂର୍ଯ୍ୟ, ଚନ୍ଦ୍ର, ବୃକ୍ଷଲତା, ନଦନଦୀ ପ୍ରଭୃତି ବର୍ଷାସ୍ନାତ ହୋଇ ଏକ ନୂତନ ଆନନ୍ଦ ଓ ଜାଗରଣ ଅନୁଭବ କରନ୍ତି । ବାହ୍ୟ ପ୍ରକୃତିର ଏହି ଆନନ୍ଦର ଅଭିବ୍ୟକ୍ତି ସଙ୍ଗେ ମନୁଷ୍ୟର ଅନ୍ତଃ ପ୍ରକୃତିରେ ଏହି ଆନନ୍ଦ ପ୍ରତିଧ୍ୱନିତ ହୋଇଥାଏ । ଏଣୁ ମନୁଷ୍ୟଗଣ ପୂର୍ଣ୍ଣ ଆନନ୍ଦମୟୀ, ଚୈତନ୍ୟମୟୀ ମା'ଙ୍କଚରଣରେ ପୁଷ୍ପାଞ୍ଜଳି ଦେବାକୁ ଇଚ୍ଛା କରିଥାନ୍ତି । ଆର୍ଯ୍ୟ, ଅନାର୍ଯ୍ୟ ସକଳ ଜାତିର ନରନାରୀ ଶରତକାଳରେ ଦୁର୍ଗାଙ୍କର ପୂଜା କରିଆସୁଛନ୍ତି । ସ୍ଥଳଭେଦରେ ସାତ୍ତ୍ୱିକ, ରାଜସିକ ଓ ତାମସିକ ଏହି ତିନିଶ୍ରେଣୀର ଦୁର୍ଗାପୂଜା ପ୍ରଚଳିତ ରହିଛି ।

ଏହି ପୂଜାରେ ବିଲ୍ୱବୃକ୍ଷରେ ଦେବୀଙ୍କୁ ବୋଧନ କରିବାର ପରମ୍ପରା ରହିଛି । ବୋଧନ ଅର୍ଥ ଜାଗରଣ । ଏହି ଶରତକାଳର ପୂଜା ସମୟକୁ ଦେବୀ ନିଦ୍ରିତ ରହିଥାନ୍ତି । ଚିର ଜାଗରଣମୟୀ, ଚୈତନ୍ୟ ସ୍ୱରୂପା ଦେବୀଙ୍କୁ ଶାରଦୀୟ ଦୁର୍ଗାପୂଜା ବେଳେ ବୋଧନ ମଧ୍ୟରେ ଜାଗ୍ରତ ହେବାକୁ ଆହ୍ୱାନ କରାଯାଏ । ସୂକ୍ଷ୍ମ ଦୃଷ୍ଟିରେ ବିଚାର କଲେ ଏହି ଶରତକାଳରେ ଆମ୍ଭମାନଙ୍କର ଇନ୍ଦ୍ରିୟାଧିଷ୍ଠିତ ଚୈତନ୍ୟବର୍ଗ ଜଡତତ୍ତ୍ୱର ମୋହରେ ଆଚ୍ଛନ୍ନ ହୋଇଥାଏ । ଚାରିଆଡ଼େ କେବଳ ଜଡତତ୍ତ୍ୱର ଘନୀଭୂତ ବିସ୍ତାର ଦେଖାଯାଏ । ଏହି ଅବସ୍ଥାରୁ ଚୈତନ୍ୟ ରାଜ୍ୟକୁ ଉପନୀତ ହେବାକୁ ହେଲେ ଆମ୍ଭମାନଙ୍କୁ ଜାଗ୍ରତ ରହିବାକୁ ହେବ । ଏଣୁ ମା'ଙ୍କୁ ଜାଗ୍ରତ କଲେ ଆମ୍ଭମାନଙ୍କ ମଧ୍ୟରେ ଜାଗରଣ ଅନୁଭୂତ ହେବ ଓ ସୁପ୍ତିର ବିଲୟ ଘଟିବ । କାତର ଭାବରେ ଭକ୍ତଗଣ ଏଥିପାଇଁ ପ୍ରାର୍ଥନା କରିଥାନ୍ତି, 'ମା' ତୁମେ ଜାଗ୍ରତ ହୁଅ, ତୁମେ ଉଦ୍‌ବୁଦ୍ଧା ହୁଅ ।'

ବାସ୍ତବରେ କଳିଯୁଗରେ ଅଶ୍ୱମେଧ ଯଜ୍ଞର ବିକଳ୍ପ ହେଲା ଦୁର୍ଗାପୂଜା । ଭାରତବର୍ଷର ବିଭିନ୍ନ ସ୍ଥାନରେ ଏହି ଶରତକାଳରେ ଦୁର୍ଗାପୂଜା ଅନୁଷ୍ଠିତ ହୁଏ । ବିଶେଷତଃ ଏହି ସମୟରେ ଅର୍ଥାତ୍ ଅସମୟରେ ଦୁର୍ଗାଙ୍କୁ ଆବାହନ କରି ଶ୍ରୀରାମଚନ୍ଦ୍ର ରାବଣ ବଧ କରିବାକୁ ସମର୍ଥ ହୋଇଥିଲେ ବୋଲି କୁହାଯାଏ ।

ଦଶ ଦିଗବ୍ୟାପିନୀ, ଚିନ୍ମୟୀ, ମହତୀ ଶକ୍ତିର ପ୍ରତିରୂପା ମା' ଦୁର୍ଗା ଦଶଭୁଜା ରୂପେ ପରିକଳ୍ପିତା । ସେ ତ୍ରିନୟନା । ଦଶ ଇନ୍ଦ୍ରିୟରେ ଯେଉଁ ଆସୁରିକ ଭାବ ପ୍ରକାଶ ପାଏ, ତାହାକୁ ଦୂର କରିବାକୁ ମା'ଙ୍କ ଦଶଭୁଜରେ ଦଶ ପ୍ରହରଣ ଶୋଭାପାଏ । ଚୈତନ୍ୟ ରୂପିଣୀ ମା'ଙ୍କ ଆବିର୍ଭାବ ସହିତ ସିଦ୍ଧି, ଶକ୍ତି, ବିତ୍ତ ଓ ଜ୍ଞାନର ମଧ୍ୟ ଆବିର୍ଭାବ ହୋଇଥାଏ । ଫଳରେ ମା'ଙ୍କ ସହିତ ସିଦ୍ଧିର ପ୍ରତୀକ ଗଣେଶ, ଶକ୍ତିର ପ୍ରତୀକ କାର୍ତ୍ତିକେୟ, ବିତ୍ତର ପ୍ରତୀକ ଲକ୍ଷ୍ମୀ ଓ ଜ୍ଞାନର ପ୍ରତୀକ ସରସ୍ୱତୀଙ୍କର ମଧ୍ୟ ପୂଜା କରାଯାଏ । ମା'ଙ୍କ ପଦତଳେ ଜୀବରୂପୀ ସିଂହ ରହିଥାଏ । ଏଣୁ ମା' ସିଂହବାହିନୀ । ମା'ଙ୍କର ଏକ ପାଦ ମହିଷାସୁର ଉପରେ ଓ ଏକହସ୍ତରେ ମହିଷାସୁରକୁ ଶୂଳ ନିକ୍ଷେପ କରୁଛନ୍ତି । ମହିଷାସୁର ଅହଙ୍କାରର ପ୍ରତୀକ । ସେ ଦେବୀଙ୍କ ହସ୍ତରେ ଶୂଳ ଆଘାତ ପାଇ କ୍ଷତ ବିକ୍ଷତ ହୋଇଥିଲା । ତଥାପି ଦେବୀଙ୍କ ଉଦ୍ଦେଶ୍ୟରେ ଅସ୍ତ୍ର ଉତ୍ତୋଳିତ କରିଥିଲା । ପରିଶେଷରେ ଦେବୀଙ୍କ ଖଡ୍ଗରେ ମହିଷାସୁରର ଶିରଚ୍ଛେଦ ହୋଇଥିଲା । ଏହାପରେ ଦେବତାଗଣ ଆନନ୍ଦରେ ଦେବୀଙ୍କୁ ସ୍ତୁତି କରିଥିଲେ । ତାହାକୁ ଶକ୍ରାଦି ସ୍ତୁତି କୁହାଯାଏ । ଯଥା-

'ଦୁର୍ଗେ ସ୍ମୃତା ହରସି ଭୀତିମଶେଷ ଜନ୍ତୋଃ
ସ୍ୱସ୍ଥୈ ସ୍ମୃତା ମତିମତୀବ ଶୁଭାଂ ଦଦାସି
ଦାରିଦ୍ର୍ୟ ଦୁଃଖ ଭୟହାରିଣୀ କା ତ୍ୱ ଦନ୍ୟା
ସର୍ବୋପକାର କରଣାୟ ସଦାର୍ଦ୍ରଚିତ୍ତା ।'

ଭାରତବର୍ଷରେ ଦୁର୍ଗାପୂଜାର ଛଅଗୋଟି କଳ୍ପ ରହିଛି । କୃଷ୍ଣପକ୍ଷ ନବମୀଠାରୁ ଶୁକ୍ଳ ନବମୀ ପର୍ଯ୍ୟନ୍ତ ଏହି କଳ୍ପ ଗଣନା କରାଯାଏ । ଏଣୁ କେହି କେହି କୃଷ୍ଣ ନବମୀଠାରୁ, କେହି କେହି ଶୁକ୍ଳ ପ୍ରତିପଦାଠାରୁ,

ଆଉ କେହି ଷଷ୍ଠୀକଳ୍ପଠାରୁ କିମ୍ବା ଆଉ କେହି ସପ୍ତମୀ, ଅଷ୍ଟମୀ ଅଥବା ନବମୀ କଳ୍ପରୁ ପୂଜା ଆରମ୍ଭ କରିଥାନ୍ତି । ସାଧାରଣତଃ ସପ୍ତମୀଠାରୁ ନବମୀ ଯାଏଁ ତ୍ରିଦିନାତ୍ମକ ପୂଜା କରାଯାଇଥାଏ । ସପ୍ତମୀରେ ଦେବୀଙ୍କୁ ଆବାହନ କରାଯାଏ, ଅଷ୍ଟମୀରେ ବିଶେଷ ପୂଜା କରାଯାଏ, ଅଷ୍ଟମୀ ନବମୀ ସନ୍ଧି ସମୟରେ ମହାପୂଜା ଓ ନବମୀ ତିଥିରେ ପୂଜକର ସ୍ୱାଧୀନ ପ୍ରାର୍ଥନା ଓ ଦଶମୀରେ 'ବିଜୟା' ଉତ୍ସବ ପାଳନ କରାଯାଏ ।

ଓଡ଼ିଶାରେ ସାଧାରଣତଃ ମୂଳାଷ୍ଟମୀ ବା ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀଠାରୁ ଷୋଳଦିନ ପୂଜା କରାଯାଏ । ଏହାର କାରଣ ଦୁର୍ଗା ଭାଦ୍ର ଶୁକ୍ଳ ଅଷ୍ଟମୀରେ ଶୟନ କରି ପନ୍ଦର ଦିନ ପରେ ଉଠନ୍ତି ଓ ସେହିଦିନଠାରୁ ତାଙ୍କର ପୂଜା ହୁଏ । ଓଡ଼ିଶାର ପ୍ରତି ଶକ୍ତିପୀଠରେ ଓ ଶାସନମାନଙ୍କରେ ଏହି ଷୋଳଦିନାତ୍ମକ ପୂଜା ହୋଇଆସୁଛି । କିନ୍ତୁ ସାର୍ବଜନୀନ ଭାବରେ ସପ୍ତମୀଠାରୁ ତ୍ରିଦିନାତ୍ମକ ଦୁର୍ଗାପୂଜା କରାଯାଇ ଦଶହରା ଦିନ 'ବିଜୟା' ଉତ୍ସବ ପାଳନ କରାଯାଇ ବିଭିନ୍ନ ଦେବୀମୂର୍ତ୍ତିମାନଙ୍କର ବିଶେଷ ଆଡମ୍ବର ସହିତ ପୂଜା କରାଯାଏ ।

ତ୍ରିଦିନାତ୍ମକ ପୂଜା ଭକ୍ତିର ସହିତ ପାଳନ କରି ଭଗବତୀ ଭୁବନେଶ୍ୱରୀଙ୍କର କୃପାଲାଭ ପାଇଁ ଭକ୍ତଗଣ ପ୍ରତିବର୍ଷ ଚୈତନ୍ୟମୟୀ, ଆନନ୍ଦମୟୀ ଓ ସତ୍ୟମୟୀ ଦୁର୍ଗାଙ୍କୁ ଆବାହନ କରି ଆସୁଛନ୍ତି । ଉଚ୍ଚନିଚ ଭେଦଭାବ ଭୁଲି, ହିଂସା ପରିହାର କରି ସାମାଜିକ ଐକ୍ୟ ଓ ସଂହତିର ବାର୍ତ୍ତା ନେଇ ପ୍ରତିବର୍ଷ ମା' ଦୁର୍ଗାଙ୍କର ଆବାହନ କରାଯାଇଆସୁଛି । ଆସୁରିକ ଶକ୍ତି, ଦୁଷ୍ଟ ଶକ୍ତି ଓ ଶତ୍ରୁପକ୍ଷ ଯେତେ ବଳୀୟାନ୍ ହେଲେ ମଧ୍ୟ ପରିଶେଷରେ ଦୈବୀଶକ୍ତି ନିକଟରେ ତାହା ପରାଭୂତ ହୋଇଥାଏ, ଏହା ହିଁ ଦୁର୍ଗାପୂଜାର ପ୍ରକୃତ ରହସ୍ୟ ରୂପେ ପରିଚିତ ।

ଯୁଗ୍ମ ଶାସନ ସଚିବ
କୃଷି ବିଭାଗ, ଭୁବନେଶ୍ୱର

---

# ଅବତରି ଆସ ମା' ଦୁର୍ଗା

ଜଗତ୍ ଜୀବନ ରଥ

ଆସ ମା' ଦୁର୍ଗା ଅବତରି ଆସ
ଏଇ ଶରତ କାଳରେ ତ ତୁମରି ପୂଜା
ଆସ ହେ ଅଗ୍ନି ! ଅବତରି ଆସ
ଏଇ ଧରାପୃଷ୍ଠରେ ତୁମରି ସାଜସଜ୍ଜା ।

ହେ ମା ! ଦୁର୍ଗା, ହେ ମା ! ମଙ୍ଗଳା, ହେ ମା ! ସର୍ବଂସହା
ହେ ମା ! ଚଣ୍ଡୀ, ହେ ମା ! ଶାରଳା, ହେ ମା ! ସର୍ବଂଦ୍ରଷ୍ଟା ।
ହେ ମା ! ଚର୍ଚ୍ଚିକା, ହେ ମା ! କାଳୀ, ହେ ମା ! ଜଗଜ୍ଜନନୀ
ହେ ମା ! ସରସ୍ୱତୀ, ହେ ମା ! ଶାରଦେ, ହେ ମା ! ଅଭୟଦାୟିନୀ ।

ଶ୍ରୀ ଲକ୍ଷ୍ମୀ ! ତୁମେ ଅନ୍ନ ପୂର୍ଣ୍ଣେଶ୍ୱରୀ
ଶ୍ରୀ ରାଧା ! ତୁମେ ଜଗତ୍ ପୂର୍ଣ୍ଣେଶ୍ୱରୀ
ଶ୍ରୀ କୃଷ୍ଣ ପ୍ରେୟସୀ ତୁମେ, ତୁମେ ଜଗଦ୍ଧାରିଣୀ
ଶ୍ରୀ ରୁଦ୍ର ପ୍ରେୟସୀ ତୁମେ, ତୁମେ ଜଗତ୍ କାରିଣୀ ।

ସେଦିନ ମହିଷା ଦାନବ ପାଇଁ 'ଅଗ୍ନି' ରୂପେ ହେଲ ଆବିର୍ଭୂତ
ସେଦିନ କଂସ ଦାନବ ପାଇଁ 'କ୍ରୋଧ' ରୂପେ ହେଲ ପ୍ରାଦୁର୍ଭୂତ,
ସେଦିନ ଶରତ କାଳରେ 'ରଘୁନାଥ' କରିଥିଲେ ପୂଜାର୍ଚ୍ଚନା
ଏକଶତ 'ନୀଳପଦ୍ମ' ଦେଇ ...

ତୁମେ ସେଇ ଦୁର୍ଗା ! କରିଥିଲ ପରୀକ୍ଷା ଏକ 'ନୀଳପଦ୍ମ' ବଦଳେ
ରାଜୀବଲୋଚନଙ୍କ ଏକ ଲୋଚନ ପାଇଁ
ହେ ଦିବ୍ୟ ଲୋଚନା !

ଅବତରି ଆସ ମା' ଦୁର୍ଗା ! ଅବତରି ଆସ ...
ତୁମ ଆଗମନେ ପ୍ରାଣ ସଂଚାରିତ ହେଉ
ଜନଜୀବନରେ ... ଏଇ ଧରା ପୃଷ୍ଠରେ
ଦୁଃଖ, ଶୋକ, ରୋଗ, ହିଂସା, ଅଭିମାନ, କାପଟ୍ୟ,
ଦୂରୀଭୂତ ହେଉ ପ୍ରାଣୀ ଜୀବନରୁ ...

ତୁମେ ହୁଅ ସର୍ବଂସହା, ତୁମେ ହୁଅ ସର୍ବଂଦ୍ରଷ୍ଟା
ତୁମେ ଜଗଜ୍ଜନନୀ, ତୁମେ ଅଭୟଦାୟିନୀ
ହେ ମା ! ବିଶ୍ୱ ପ୍ରାଣେଶ୍ୱରୀ
ହେ ମା ! ପରମ କରୁଣାମୟୀ
ହେ ମା ! ଦୁର୍ଗତିନାଶିନୀ

ସାମ୍ବାଦିକ
ବାରିପଦା

# ତସ୍ୟ ଶକ୍ତି ସ୍ୱରୂପେୟ୍ ...

ଡାକ୍ତର ଗୌରାଙ୍ଗ ଚରଣ ମହାପାତ୍ର

**ପ୍ରକୃତି-ପୁରୁଷ-ପୁରୁଷୋତ୍ତମ**

ବୈଦିକ ଯୁଗ ପ୍ରାରମ୍ଭରୁ ଯୁଗେ ଯୁଗେ ପ୍ରକୃତି ସ୍ୱରୂପିଣୀ ଦେବୀ - ପୁରୁଷ ସାନ୍ନିଧ ଲାଭ କରି ଜୀବଜଗତର ସୃଷ୍ଟି ବା ସଂସାର ସର୍ଜନା କରିଥାନ୍ତି । ଗୀତାରେ ସେଥିପାଇଁ ବର୍ଣ୍ଣନା କରାଯାଇଛି -

'ମୟାଧକ୍ଷେନ ପ୍ରକୃତିଃ ସୂୟତେ ସଚରାଚରମ
ହେତୁ ଯନେନ କୋନ୍ତେୟ ଜଗତଦ୍ଧି ପରିବର୍ତ୍ତତେ ।'

ଅର୍ଥାତ୍, ବିଶ୍ୱନିୟନ୍ତା ଜଗନ୍ନାଥ ପ୍ରକୃତି ସମିଶ୍ରଣରେ ସଚରାଚରେ ଜଗତକୁ ସୃଷ୍ଟି କରିଛନ୍ତି । ଅତଏବ ପ୍ରକୃତି+ପୁରୁଷ=ପୁରୁଷୋତ୍ତମ ଉପାସନାରେ - ବୈଦିକ ପଞ୍ଚ ଦେବତାଙ୍କଠାରୁ ଆରମ୍ଭ କରି ତେତିଶ ଦେବତା ପୂଜା ପାଇଲେ ଓ ତାହା ପୁଣି ତେତିଶ କୋଟି ଦେବତା ରୂପେ ବର୍ଣ୍ଣିତ ହୋଇଛନ୍ତି । ପ୍ରକୃତି କର୍ତ୍ତୃତ୍ୱ ବେଦ ସମ୍ମତ । ... ତେଣୁ ଦେବା ଦେବୀ, ଠାକୁର ଠାକୁରାଣୀ ପୂଜା ପ୍ରଚଳିତ ହୋଇଛି । ଅନ୍ୟ ଅର୍ଥରେ ଏହି ଶକ୍ତି ପୂଜା ରୂପେ ବର୍ଣ୍ଣିତ । - ବିଷ୍ଣୁ ପୁରାଣରେ ବର୍ଣ୍ଣିତ ପରଂବ୍ରହ୍ମଙ୍କର ପ୍ରଧାନଶକ୍ତି ବ୍ରହ୍ମା, ବିଷ୍ଣୁ, ଶିବ । ଏହାପରେ ଚର୍ତୁଦଶ ମାତୃକା ଶକ୍ତି, ଯଥା- ଗୌରୀ, ପଦ୍ମା, ଶଚୀ, ମେଧା, ସାବିତ୍ରୀ, ବିଜୟା, ଜୟା, ଦେବସନା, ସ୍ୱାଧା, ସ୍ୱାହା, ମାତରୋ ଲୋକ ମାତର, ଧୃତି, ପୁଷ୍ଟି ।

ବୌଦ୍ଧ ଯୁଗରେ ତନ୍ତ୍ରଯୁଗର ଆରମ୍ଭ ହେଲା । ହିନ୍ଦୁଧର୍ମ ଓ ବୌଦ୍ଧଧର୍ମର ସମ୍ମିଶ୍ରଣ ଘଟିଲା । ମାତ୍ର ମାତୃଶକ୍ତିର ପ୍ରାଧାନ୍ୟ ପାଇଁ ଶାକ୍ତଧର୍ମ ପ୍ରବର୍ତ୍ତନ ହେଲା । ତେଣୁ ଉଗ୍ରା, ମହୋଗା, ବ୍ରଜବରାହୀ, କାଳୀ, ସରସ୍ୱତୀ, ବିମଳା, କାମେଶ୍ୱରୀ, ଭଦ୍ରକାଳୀ, ତାରା, ତନ୍ତ୍ରଶାସ୍ତ୍ର ମତରେ ଏ ସମଗ୍ର ବିଶ୍ୱ ଏକ ମହାଶକ୍ତିରୁ ଜାତ ଏବଂ ମହାଶକ୍ତି ଦ୍ୱାରା ନିୟନ୍ତ୍ରିତ । ପୁଣି କୁହାଯାଇଛି -

'ତ୍ୱ ମାତା ଜଗତା ଦେବୀ ନାରାୟଣ ହିସଃ
ସ୍ତ୍ରୀ ରୂପଂ ସର୍ବମେବତ୍ୱଂ ପୂ. ରୂପୋ ଜଗଦୀଶ୍ୱର ।'

ଅତଏବ ସାଂସାରିକ କ୍ଷେତ୍ରରେ ପ୍ରକୃତି ପୁରୁଷ, (ନରନାରୀ) ପିତା, ମାତା (ସ୍ୱାମୀ-ସ୍ତ୍ରୀ) ଦେବ, ଦେବୀ - 'ପୁଲିଙ୍ଗ ସର୍ବମୀଶାନ ସ୍ତ୍ରୀ ଲିଙ୍ଗ ଭବତୁ ମା' । ଅର୍ଥରେ ସଂସାରର ସମସ୍ତ ପୁଂ ଦେବତା ଶିବ ବା ବିଷ୍ଣୁ । ସବୁ ସ୍ତ୍ରୀ ଦେବୀ ଦୁର୍ଗା ବା ଲକ୍ଷ୍ମୀ । ତେଣୁ ଶିବପାର୍ବତୀ, ରାଧାକୃଷ୍ଣ, ସୀତାରାମ, ଲକ୍ଷ୍ମୀନାରାୟଣ - ବିଶେଷତଃ ଶ୍ରୀମନ୍ଦିରରେ ନୀଳମାଧ, ଦୁର୍ଗାମାଧବ, ରାଧାମାଧବ ପୂଜାର ଅବତାରଣା ଆଲୋଚ୍ୟ ବିଷୟ ।

**ନୀଳମାଧବ :**

ସୂକ୍ଷ୍ମ ଅର୍ଥରେ ନୀଳସମୁଦ୍ର (ମହୋଦଧି) ନୀଳକନ୍ଦର (ପ୍ରକୃତି) ମା+ଧବ ବା ସ୍ୱାମୀ ହେଲେ ଜଗନ୍ନାଥ । ଅନ୍ୟ ଅର୍ଥରେ ଜଳାଧିପତି ବରୁଣ । ବରୁଣଙ୍କ କନ୍ୟା ଲକ୍ଷ୍ମୀ+ତାଙ୍କ ସ୍ୱାମୀ ଜଗନ୍ନାଥ । 'ଲକ୍ଷ୍ମୀ ନାରାୟଣ ... ଦାରୁବ୍ରହ୍ମ ପରିକଳ୍ପନାରେ ପ୍ରକୃତି ପୁରୁଷ । ପୁରୁଷୋତ୍ତମ ... ଶାକ୍ତମାନେ କହିଲେ -

'ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବ ।'

ଅର୍ଥାତ୍, ଜଗନ୍ନାଥ ମନ୍ଦିରରେ ବିମଳାଙ୍କୁ ଭୈରବୀ କହି ଜଗନ୍ନାଥଙ୍କୁ ଭୈରବ ବୋଲି ଚିତ୍ରଣ କରାଯାଇଛି ।

**ଦୁର୍ଗାମାଧବ :**

ଦୁର୍ଗା ଭୈରବୀ ଓ ଶିବ ଭୈରବ ରୂପେ ପୂଜା ପାଉଥିବା ବେଳେ ଶ୍ରୀମନ୍ଦିରରେ 'ବିମଳା ସା ମହାଦେବୀ ଜଗନ୍ନାଥସ୍ତୁଭୈରବ'



କୁହାଯାଇଛି । କାହିଁକି, 'ଶିବଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତା

ପ୍ରଭବିତୁଂ ।' ଶିବ ଏବଂ ଶିବା - ପୁରୁଷ ପ୍ରକୃତି ଏକ ଓ ଅଭିନ୍ନ । ଅତଏବ ଶିବଙ୍କ ସହ ପାର୍ବତୀ (ଶିବ) ବା ଦୁର୍ଗା ସଂଯୋଗ ହେବା ସ୍ୱାଭାବିକ । ମାତ୍ର ବିଷ୍ଣୁ (ମାଧବ)ଙ୍କ ସଙ୍ଗେ ଦୁର୍ଗାଙ୍କ ସଂଯୋଗ ବିସ୍ମୟର କାରଣ ମାତ୍ର ... ଏଣେ ପୁଣି ବିମଳାଙ୍କୁ ତନ୍ତ୍ରୋକ୍ତି ଅନୁଯାୟୀ 'ଇସନା ଉଡ୍ର ଦେଶେ ଚ ବିମଳା ପୁରୁଷୋତ୍ତମେ' ବିମଳା ରସନାପୀଠ କହି ପଶୁବଳୀର ପ୍ରବର୍ତ୍ତନ ହୋଇଛି । କିନ୍ତୁ

'କୈବଲ୍ୟ ଭୋଜିନୀ ଦେବୀ ବିମଳା ବିମଳପ୍ରଦଂ
ଗୃହ୍ଣାନ୍ତ ହରି କୈବଲ୍ୟ ସୃଷ୍ଟି ସ୍ଥିତ୍ୟାନ୍ତ କାରିଣୀ ।'

x x x x x

'ଜୟ ଜୟ ସାରଳା ଗୋ ବିଷ୍ଣୁର ବଲ୍ଲଭୀ
ଜୟଜୟ ସାରଳାଗୋ ପରମ ବୈଷ୍ଣବୀ ।'

ବିମଳାଙ୍କୁ ଦୁର୍ଗା କହି ଶ୍ରୀମନ୍ଦିରରେ ଦୁର୍ଗା ପୂଜାବେଳେ ଯେଉଁ ପଶୁବଳୀ ହୁଏ ତାହାର ତାତ୍ପର୍ଯ୍ୟ ହେଉଛି - ପଶୁପ୍ରବୃତ୍ତିକୁ ବଳୀ ଦେଇ ସମାଜର ମଂଗଳ ସାଧନ କର ... । ସେଥିପାଇଁ ତନ୍ତ୍ରରେ କୁହାଯାଇଛି -

'ଆତ୍ମଗ୍ଲାନି ଅସୂୟାଚ ଇର୍ଷାଦ୍ୱେଷ ପରୋକ୍ଷବାକ୍
ମିଥ୍ୟା କ୍ରୋଧାଭିମାନର୍ଥ ଅହଂତ୍ୱ ନାସ୍ତିକ ମତମ୍ ।
ଦଶବଧା ମିତ ପ୍ରୋକ୍ତା ନୟ୍ୟନ୍ତୁ ମମ ସର୍ବଦା ।
'ଦଶବିଘ୍ନ ହୃତା ଦେବୀ-ଦୁର୍ଗା ଦୁର୍ଗତିହାରିଣୀ ।'

ଅର୍ଥାତ୍, ଆତ୍ମଗ୍ଲାନି, ଅସୂୟା, ଇର୍ଷା, ଦ୍ୱେଷ, ପରୋକ୍ଷ ବାକ୍, ମିଥ୍ୟା, କ୍ରୋଧ, ଅଭିମାନ, ଅହଂକାରାଦି ଦଶବିଧ ମାନସିକ ବାଧା ବିନାଶ ପାଇଁ ଦୁର୍ଗାଙ୍କୁ ନିବେଦନ କରାଯାଏ ।

**ଲକ୍ଷ୍ମୀ :**

ବିଷ୍ଣୁଙ୍କର ସହଧର୍ମିଣୀ ରୂପେ ମହାଲକ୍ଷ୍ମୀ ପୂଜିତା -

'ସର୍ବ ସତ୍ୟାତ୍ମିକା ଦେବୀ ଜୀବନୋପାୟ ରୂପିଣୀ
ମହାଲକ୍ଷ୍ମୀଶ୍ଚ ବୈକୁଣ୍ଠେପତି ସେବାରତା ସତୀ
ସ୍ୱର୍ଗେଚସ୍ୱର୍ଗ ଲକ୍ଷ୍ମୀଶ୍ଚ ରାଜଲକ୍ଷ୍ମୀଶ୍ଚ ରାଜସୁ ।'

ଗୃହ ଲକ୍ଷ୍ମୀଶ୍ଚ ମର୍ତ୍ତ୍ୟନା-ଗୃହିଣା-କଥା ମହାଲକ୍ଷ୍ମୀ ସ୍ୱର୍ଗରେ ସ୍ୱର୍ଗଲକ୍ଷ୍ମୀ, ରାଜଲକ୍ଷ୍ମୀ ରୂପରେ ରାଜପୁରେ ଓ ମର୍ତ୍ତରେ ପ୍ରତ୍ୟେକ ଗୃହର ଗୃହିଣୀ ଓ ବିଦ୍ୟା, ବୁଦ୍ଧି, ପ୍ରଜ୍ଞା ରୂପିଣୀ ସରସ୍ୱତୀ ରୂପରେ ପୂଜ୍ୟା ଅଟନ୍ତି ।

ଶ୍ରୀଶ୍ରୀଜଗନ୍ନାଥଙ୍କୁ ନୀଳମାଧବ- ଦୁର୍ଗାମାଧବ ରୂପେ ବର୍ଣ୍ଣନା କରିବା ବେଳେ - ରାଧାମାଧବ କହିବା ରହସ୍ୟମୟ ଓ ବୈଚିତ୍ର୍ୟ ମୟ ମାତ୍ର । ଶ୍ରୀଜଗନ୍ନାଥ ପରଂବ୍ରହ୍ମ ବିଷ୍ଣୁ 'ଲକ୍ଷ୍ମୀ ନାରାୟଣ' ବୋଲି ପରିଗଣିତ ହେଉଥିବାବେଳେ 'ରାଧାମାଧବ' ଭିନ୍ନ, ବିଭିନ୍ନ ମତପୋଷଣ କରାଯାଏ । ଅର୍ଥାତ୍, ରାଧାକୃଷ୍ଣ କହିଲେ, ଶ୍ରୀକୃଷ୍ଣଙ୍କର ପ୍ରେମଲୀଳାର ରାସ କ୍ରୀଡ଼ାକୁ ବୁଝାଏ । ଏଥିରେ ଜଗନ୍ନାଥ ବା ଅଣାକାର ବ୍ରହ୍ମଙ୍କର ସମ୍ବନ୍ଧ ସଂପର୍କ କିଛି ନାହିଁ । ଆହୁରି କୌତୁହଳ ବିଷୟ ଏହି ଯେ- ଜଗନ୍ନାଥଙ୍କୁ ଖାଲି 'ରାଧାମାଧବ' ନୁହେଁ 'ଗୋପୀ ଜନବଲ୍ଲଭ ଶ୍ରୀଜଗନ୍ନାଥ' ବୋଲି ପ୍ରତିପାଦନ କରାଯାଇଛି । ଗୀତାବାକ୍ୟ ଅନୁଯାୟୀ-

'ପଶ୍ୟମେ ପାର୍ଥ ରୂପିଣୀ ଶତଶୋ[illegible]ଥସହସ୍ରସ୍ୟ
ନାନା ବିଧାନି ଦିବ୍ୟାନି ନାନାବର୍ଣ୍ଣା-କୃତୀନିଚ୍ଚ ।'

'ପ୍ରଣିପତ୍ୟ ଜଗନ୍ନାଥ ସର୍ବଜୀନ ବରାଚିତ ।' ବୋଲି ବୌଦ୍ଧମାନେ କହିଲାବେଳେ ଶାକ୍ତମାନେ କହନ୍ତି - 'ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବୀ ।' ବୈଦିକ ଦେବତା ଜଗନ୍ନାଥଙ୍କୁ ଶବର ପୂଜିଛି । ବ୍ରାହ୍ମଣ୍ୟ, ଶୈବ୍ୟ, ଶାକ୍ତ, ଗାଣପତ୍ୟ, ବ୍ରହ୍ମା ବୈଷ୍ଣବ, ଖ୍ରୀଷ୍ଟ, ମୁସଲମାନ ସମସ୍ତେ ସର୍ବଧର୍ମ ସମନ୍ୱୟ ପୂଜା ଆରାଧନା କରନ୍ତି । ... ସବୁଧର୍ମ ସଂପ୍ରଦାୟ ଜଗନ୍ନାଥଙ୍କୁ ଆପଣାର କହି କୋଳାଗ୍ରତ କରିବାକୁ ତତ୍ପର । ସର୍ବଧର୍ମ ସମନ୍ୱୟ । ତେଣୁ ଜଗନ୍ନାଥଙ୍କୁ ରାଧାକୃଷ୍ଣ କହି ପଞ୍ଚଶାଖା ଭକ୍ତ କବିମାନେ ଲେଖିଲେ -

'ସୁଭଦ୍ରା ଅଂଶ ରାଧାପୁଣି
ନିତ୍ୟରେ କି ରୂପେ ବଖାଣି ।'

ଅଚ୍ୟୁତ, ଯଶୋବନ୍ତ, ଅନନ୍ତ ଓ ଜଗନ୍ନାଥ ବଳରାମ (ସବୁଦାସ) ପଞ୍ଚଶାଖା ଭକ୍ତ କବିମାନେ ଶ୍ରୀଜଗନ୍ନାଥ ରାଧାକୃଷ୍ଣଙ୍କର ମିଳିତ ବିଗ୍ରହ ଏବଂ ଶ୍ରୀକୃଷ୍ଣଙ୍କ ନିତ୍ୟ ଗୋଲକସ୍ଥଳୀ ଶ୍ରୀକ୍ଷେତ୍ରର ରତ୍ନ ସିଂହାସନ ବୋଲି ନାନାପ୍ରକାର ଗୀତ, ସ୍ତୋତ୍ର, ସ୍ମୃତି, ଭଜନ, କାବ୍ୟ କବିତା ଲେଖିଲେ ସଂସ୍କୃତରେ 'ପୁରୁଷବୋଧନୀସୁକ୍ତ' ନାମକ ପୂଜା ବିଧି ରଚନା ଲେଖି ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କୁ ଶ୍ରୀଜଗନ୍ନାଥ-ସୁଭଦ୍ରାଙ୍କର ମିଳିତ ତନୁ ବୋଲି ବର୍ଣ୍ଣନା କଲେ ।

ଷୋଡଶ ଶତାବ୍ଦୀରେ ଶ୍ରୀଚୈତନ୍ୟ ଓଡ଼ିଶା ଆସି ରାଧାକୃଷ୍ଣ ଯୁଗଳ ଉପାସନା ଓ ରାଧାକୃଷ୍ଣଙ୍କ ପ୍ରେମଲୀଳା ପ୍ରକମ୍ପନ କଲେ । ଶ୍ରୀମନ୍ଦିରରେ ରାଧାକୃଷ୍ଣ ପ୍ରେମଧାରାର ପ୍ଲାବନ ଛୁଟାଇ ଜଗନ୍ନାଥଙ୍କୁ କୃଷ୍ଣ ବୋଲି ପ୍ରଚାର କଲେ । ଭକ୍ତକବି ଜଗନ୍ନାଥ ଦାସ ପ୍ରଭୃତି ପଞ୍ଚସଖା କବିମାନେ ଚୈତନ୍ୟଙ୍କ ରାଧାକୃଷ୍ଣ ପ୍ରେମ ଲୀଳା ପ୍ରଚାର କରିବାକୁ କୃଷ୍ଣାପ୍ରକାଶ କଲେ ନାହିଁ । ଜଗନ୍ନାଥଙ୍କୁ 'ରାଧାମାଧବ' ଓ 'ଗୋପୀଜନ ବଲ୍ଲଭ ଶ୍ରୀଜଗନ୍ନାଥ' ବୋଲି କାବ୍ୟ କବିତାରେ ପ୍ରମାଣ କଲେ । ଏହାଛଡ଼ା ମାଧ୍ୱଚାର୍ଯ୍ୟ, ନିମ୍ବାକାଚାର୍ଯ୍ୟ, ବିଷ୍ଣୁସ୍ୱାମୀ, ବଲ୍ଲଭସ୍ୱାମୀ ପ୍ରଭୃତି ସାଧୁ ସନ୍ଥମାନେ ପୁରୀରେ ମଠ ସ୍ଥାପନ କରି - 'ଗୋପୀଜନ ବଲ୍ଲଭ ଶ୍ରୀକୃଷ୍ଣ'ଙ୍କୁ ଶ୍ରୀଜଗନ୍ନାଥ ବୋଲି ଦାବି କଲେ । ଜଗନ୍ନାଥଙ୍କୁ କୃଷ୍ଣ ବୋଲି ପ୍ରମାଣ କଲେ । ଖାଲି ସେତିକି ନୁହେଁ ଶ୍ରୀକୃଷ୍ଣଙ୍କୁ 'ଗୋପକୃଷ୍ଣ' ' ଗୋପାଳକୃଷ୍ଣ' ବୋଲି ଅଭିହିତ କରିବା ସଂଗେ ସଂଗେ ଗୋପୀ ଜନ ବଲ୍ଲଭ ଶ୍ରୀକୃଷ୍ଣ ହିଁ ଜଗନ୍ନାଥ ବୋଲି ଲେଖିଲେ ।

ଖାଲି ଓଡ଼ିଶାରେ ନୁହେଁ ଚାରିଆଡ଼େ 'ରାଜାନୁଗତ ଧର୍ମ' ପ୍ରବର୍ତ୍ତନ ହେଉଥାଏ । ଚୈତନ୍ୟ ଦେବ ଓଡ଼ିଶା ରାଜା (ପୁରୀ ମହାରାଜା)ଙ୍କୁ ଏ ଧର୍ମଦୀକ୍ଷା ଦେଲେ । ଗଜପତି ମହାରାଜା ପ୍ରତାପରୁଦ୍ର ଦେବ ଗୋପାଳ ମନ୍ତ୍ରରେ ଜଗନ୍ନାଥଙ୍କୁ ପୂଜା କରିବାକୁ ଆଜ୍ଞା ଦେଲେ । ଶ୍ରୀପୁରୁଷୋତ୍ତମ ସୁକ୍ତ ମନ୍ତ୍ର ବଦଳରେ ଗଜପତି କହିଲେ - ଗୋପାଳ ଦଶାକ୍ଷର ମନ୍ତ୍ରରେ ଜଗନ୍ନାଥଙ୍କୁ ପୂଜା କର । 'ଓଁ ହ୍ରୀଂ କ୍ଲୀଂ ଶ୍ରୀଂ ଗୋପୀଜନ ବଲ୍ଲଭାୟ ସ୍ୱାହା ।' ଗୋପାଳମନ୍ତ୍ର ପ୍ରଚଳନ କଲେ । ... ଶ୍ରୀଜଗନ୍ନାଥଙ୍କୁ କୃଷ୍ଣ କରିବା ପାଇଁ କେତେ ବହି ସଂସ୍କୃତରେ ଲେଖା ଚାଲିଲା । ଜୟଦେବ କୃତ ଗୀତଗୋବିନ୍ଦ ପ୍ରଭୃତିରେ ରାଧାକୃଷ୍ଣ ପ୍ରେମ ରସ ପ୍ଲାବିତ ହେଲା ।

**ଭଗିନୀ-ଜାୟା-ଜନନୀ**

ଶ୍ରୀକୃଷ୍ଣ, ବଳରାମ ଓ ତାଙ୍କ ଭଉଣୀ ସୁଭଦ୍ରା (ଅର୍ଜୁନଙ୍କ ସ୍ତ୍ରୀ)ଙ୍କୁ ଜଗନ୍ନାଥଙ୍କ ଭଉଣୀ ବୋଲି କହିଲେ । ... ରାଧାସ୍ୱରୂପିଣୀ ଓ ଲକ୍ଷ୍ମୀ ସ୍ୱରୂପିଣୀ ସୁଭଦ୍ରା ବୋଲି ଲେଖିଲେ । ଗୌଡୀୟ ବୈଷ୍ଣବମାନେ ସୁଭଦ୍ରାଙ୍କୁ ଶ୍ରୀଜଗନ୍ନାଥଙ୍କର ଭଗିନୀ ଭାବରେ କେବଳ ନୁହେଁ ଶକ୍ତି ରାଧା ଭାବରେ ଚିତ୍ରଣ କଲେ ଓ କେହି କେହି ଆଦ୍ୟାଶକ୍ତି ସୁଭଦ୍ରାଙ୍କୁ ଭଗିନୀ କହି (ରାଧାକୃଷ୍ଣ) ସ୍ୱାମୀ ସ୍ତ୍ରୀ କହି କିଶୋର-କିଶୋରୀ ବର୍ଣ୍ଣନା କଲେ । ସୁଭଦ୍ରାଙ୍କୁ ବ୍ରହ୍ମା ଓ ଯୋଗମାୟା ଆଦ୍ୟାଶକ୍ତି କହିଲା ବେଳେ 'ରାଧାକୃଷ୍ଣ', 'ରାଧାମାଧବ', 'ଗୋପୀଜନ ବଲ୍ଲଭ ଜଗନ୍ନାଥ' କହି କୃଷ୍ଣଙ୍କୁ ଶ୍ରେଷ୍ଠତ୍ୱ ଓ ଜ୍ୟେଷ୍ଠତ୍ୱ ଦିଆଯାଇ ଜଗନ୍ନାଥଙ୍କୁ ସାନ କରାଯାଇଛି । ସ୍ୱୟଂ ଜଗନ୍ନାଥ ଜଗତର ପିତାମାତା ଆଦି ସୃଷ୍ଟି କର୍ତ୍ତା ଅଟନ୍ତି । ତାଙ୍କ ଘରୁ ଦଶଅବତାର ସୃଷ୍ଟି ହୋଇଛନ୍ତି ।

'ଜଗନ୍ନାଥ ଯେ ଷୋଳକଳା
ତହୁଁ କଳାଏ ନନ୍ଦବଳା ।'

ପ୍ରଜାତନ୍ତ୍ର ପ୍ରତିନିଧି
ପୂର୍ବ ଯାଜପୁର

---

## ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମ (ଏମ୍.ଏନ୍.ପି.)ରେ ଅଗଷ୍ଟ ମାସ ଶେଷସୁଦ୍ଧା ୨୭୯୦ ଗ୍ରାମର ବିଦ୍ୟୁତକରଣ କାର୍ଯ୍ୟ ଶେଷ

ବିଦ୍ୟୁତ୍‌କରଣ ହୋଇ ନଥିବା ସମସ୍ତ ରାଜସ୍ୱ ଗ୍ରାମ, ପଡ଼ା ଏବଂ ଦଳିତ ବସ୍ତିକୁ ବିଦ୍ୟୁତ୍ ଯୋଗାଇ ଦେବା ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଇଥିବା, ଶକ୍ତି, ପର୍ଯ୍ୟଟନ ଓ ସୂଚନା ପ୍ରଯୁକ୍ତି ବିଦ୍ୟା ମନ୍ତ୍ରୀ ଶ୍ରୀ ସୂର୍ଯ୍ୟ ନାରାୟଣ ପାତ୍ର ପ୍ରକାଶ କରିଛନ୍ତି । ସଂପ୍ରତି ମନ୍ତ୍ରୀ ଶ୍ରୀ ପାତ୍ରଙ୍କ ସଚିବାଳୟସ୍ଥ ପ୍ରକୋଷ୍ଠରେ ଗ୍ରାମ୍ୟ ବିଦ୍ୟୁତ୍‌କରଣ ଯୋଜନାର ଅଗ୍ରଗତି ସଂପର୍କରେ ଆଲୋଚନା କରାଯାଇଥିଲା । ୨୦୦୩ ମସିହା ଡିସେମ୍ବର ମାସରୁ ଆରମ୍ଭ ହୋଇଥିବା ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମ (ଏମ୍.ଏନ୍.ପି.)ରେ ଚଳିତ ବର୍ଷ ଅଗଷ୍ଟ ମାସ ଶେଷ ସୁଦ୍ଧା ୨୭୯୦ ଗ୍ରାମକୁ ବିଭିନ୍ନ ବିଦ୍ୟୁତ୍ ବିତରକ କମ୍ପାନୀମାନଙ୍କ ଦ୍ୱାରା ବିଦ୍ୟୁତ୍‌କରଣ କରାଯାଇଥିବା ସମୀକ୍ଷାରୁ ଜଣାଯାଇଛି । ଏହି ସମୟ ମଧ୍ୟରେ ସେସ୍କୋ ପକ୍ଷରୁ ୭୮୪ ଗ୍ରାମ, ନେସ୍କୋ ପକ୍ଷରୁ ୫୮୩ ଗ୍ରାମ, ୱେସ୍କୋ ପକ୍ଷରୁ ୬୨୩ ଗ୍ରାମ ଏବଂ ସାଉଥ୍‌କୋ ପକ୍ଷରୁ ୮୦୦ ଗ୍ରାମର ବିଦ୍ୟୁତ୍‌କରଣ କାର୍ଯ୍ୟ ଶେଷ ହୋଇଅଛି । ଅବଶିଷ୍ଟ ୧୮୫୬ ଗ୍ରାମର ବିଦ୍ୟୁତ୍‌କରଣ କାର୍ଯ୍ୟ ଶୀଘ୍ର ଶେଷ କରିବା ପାଇଁ ମନ୍ତ୍ରୀ ଶ୍ରୀ ପାତ୍ର ୪ ଗୋଟି ବିତରକ କମ୍ପାନୀର ଅଧିକାରୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

ଏତଦ୍‌ବ୍ୟତୀତ ଯେଉଁସବୁ ଉଠାଜଳସେଚନ ପଏଣ୍ଟଗୁଡ଼ିକ ବିଦ୍ୟୁତ୍ ସରଞ୍ଜାମର ଅଭାବ ଯୋଗୁଁ ଅଚଳ ହୋଇଥିବ ସେଗୁଡ଼ିକୁ କାର୍ଯ୍ୟକ୍ଷମ କରାଇବା ପାଇଁ ବିଦ୍ୟୁତ୍ ବିତରକ କମ୍ପାନୀମାନେ ଉଦ୍ୟମ କରିବାକୁ ମନ୍ତ୍ରୀ ଶ୍ରୀ ପାତ୍ର ପରାମର୍ଶ ଦେଇଥିଲେ । ଏହି ସମୀକ୍ଷା ବୈଠକରେ ବିଭାଗୀୟ କମିଶନର ତଥା ଶାସନ ସଚିବ ଶ୍ରୀ ଅସିତ୍ କୁମାର ତ୍ରିପାଠୀ, ଯୁଗ୍ମ ଶାସନ ସଚିବ ଶ୍ରୀ ବିଶ୍ୱଜିତ୍ ମିଶ୍ର ଏବଂ ୪ ଗୋଟି ବିତରକ କମ୍ପାନୀର ବରିଷ୍ଠ ଅଧିକାରୀମାନେ ଯୋଗଦାନ କରିଥିଲେ ।

# ଋଗ୍ ଓ ଅଥର୍ବ ବେଦରେ ଶ୍ରୀଦେବୀ ତତ୍ତ୍ୱ 'ରାତ୍ରୀ' ଉପାସନା ଓ ମାତୃଶକ୍ତି ଆରାଧନା

ଡଃ ରାମେଶ୍ୱର ସାହୁ

ଆର୍ଯ୍ୟାବର୍ତ୍ତର ସମଗ୍ର ଭାରତବର୍ଷରେ ମାତୃ ଉପାସନା ତଥା ଶକ୍ତି ଆରାଧନାର ଉନ୍ମେଷ ବହୁ ପ୍ରାଚୀନ । ଏହି ଉପାସନା ସହିତ ଭାରତୀୟ ହିନ୍ଦୁ ଧର୍ମ ଦର୍ଶନର ମଧ୍ୟ ନିବିଡ଼ ସଂପର୍କ ବିଦ୍ୟମାନ । ପୌରାଣିକ ପ୍ରାକ୍ ବୈଦିକ ସମୟରୁ ହିଁ ଭାରତୀୟମାନଙ୍କ ମନରେ ଶକ୍ତି ଉପାସନାର ସ୍ୱରୂପ ଦେଖିବାକୁ ମିଳେ ।

'ଶିବୋ⃞ପି ଶବତାଂ ଯାତି' ଶକ୍ତି ବିନା ଶିବ ହେଲେ ଶବ । ଏହି ମାତୃଶକ୍ତି ମୂଳ ପ୍ରକୃତି ଓ ସୃଷ୍ଟିର ହେଲେ ଆଦ୍ୟ ଉତ୍ସ । 'ଦେବୀ ଭାଗବତ'ରେ ଉଲ୍ଲେଖ ଅଛି ଦେବଗଣଙ୍କୁ ବରଦାନ ପୂର୍ବକ ସ୍ୱଧାମ ମଣିଦ୍ୱୀପ ଅଭିମୁଖେ ଦେବୀ ଯାତ୍ରା କରୁଛନ୍ତି । ଏହି ପରମ ମନୋହର ସ୍ୱଦ୍ୱୀପ ସୁଧାସାଗର ମଧ୍ୟରେ ଅବସ୍ଥିତ ଏବଂ ଦେବୀଙ୍କର ନିତ୍ୟ ବିହାରସ୍ଥଳୀ । ଦେବଗଣ ମହୀୟଷୀ ଦେବୀଙ୍କ ନିଜ ନିତ୍ୟାନନ୍ଦ ଅଲୌକିକ ଲାବଣ୍ୟ ରୂପ ସଂପର୍କରେ ପ୍ରଶ୍ନ କରନ୍ତେ, ସ୍ୱୟଂ ଦେବୀ ଉତ୍ତର ଦିଅନ୍ତି, ମୁଁ ସ୍ୱୟଂ ବ୍ରହ୍ମ । ସ୍ୱୟଂମ୍ଭୁ ପ୍ରକୃତି ପୁରୁଷାତ୍ମକ ଜଗତର ସୃଷ୍ଟି ମୋ'ଠାରୁ ସମ୍ଭୁତ । ସମସ୍ତ ଜୀବକୋଷର ପୁଞ୍ଜିଭୂତ ପରିପାଳିକା ଆଦ୍ୟକୋଷ ହିଁ ମୁଁ । ପରମ ଆରାଧ୍ୟା ମନୀଷା ମୁହିଁ ସାରାଜଗତ ସର୍ବ ପୂଜନୀୟା ଆଦ୍ୟାଶା । ସମଗ୍ର ବିଶ୍ୱର ଶିଖର ଦେଶୁଁ ପରମପିତାଙ୍କ ଅବତରଣ ସମ୍ଭବ ମୋରି ଦ୍ୱାରା । ଲଲାଟ ପଟ୍ଟରେ ବ୍ରହ୍ମମଣ୍ଡଳରେ ତ୍ରିନୟନୀ ଚିରନ୍ତନ ସ୍ୱର୍ଗୀୟ ସ୍ୱର୍ଶ । ନିଃଶ୍ୱାସ ଓ ପ୍ରଶ୍ୱାସରେ ଉଦ୍ଦାମତା ପ୍ରଭଞ୍ଜନ ସମ । ବିଂଶଭୁଜା ସ୍ୱହସ୍ତରେ ନିୟନ୍ତ୍ରିତା ପୂର୍ଣ୍ଣ ସୃଷ୍ଟି ସତ୍ତା । ଦେବୀ ପୂଜାର ମହତ୍ୱ ପୌରାଣିକ ଧର୍ମରେ ଏତେ ତୀବ୍ର ଯେ ଯଦ୍ଦ୍ୱାରା ଦେବୀଙ୍କ ବନ୍ଦନା ପାଇଁ ଏକ ସ୍ୱତନ୍ତ୍ର ପୁରାଣ ପରିକଳ୍ପନା ମଧ୍ୟ ହୋଇଛି । 'ଦେବୀ ଭାଗବତ'ରେ ଦେବୀଙ୍କ ବହୁପୀଠର ବର୍ଣ୍ଣନା ସଂଗେ ସଂଗେ ଦେବୀଙ୍କ ରୂପ, ଅର୍ଚ୍ଚନା, ପୂଜା ଉପରେ ଗୁରୁତ୍ୱ ଆରୋପ କରାଯାଇଛି । 'କୁମାର ସମ୍ଭବ'ରେ ମହାକବି କାଳିଦାସ ତାଙ୍କୁ ପରମ କଲ୍ୟାଣମୟୀ, ଆରାଧ୍ୟା ଦୁର୍ଗତିନାଶିନୀ ତପସ୍ୱିନୀ ରୂପେ ଚିତ୍ରଣ କରିଛନ୍ତି । ତହିଁରେ ଆଦର୍ଶ ଦାମ୍ପତ୍ୟ ଜୀବନ ଓ ସାମାଜିକ ଆଚାର ବିଚାର ସଂପର୍କରେ ପ୍ରତିଷ୍ଠା ଲାଭ କରିଛି । ମହାଭାରତରେ ବ୍ୟାସଦେବ ତାଙ୍କୁ ବିନ୍ଧ୍ୟବାସିନୀ ରୂପେ ଚିତ୍ରଣ କରିଛନ୍ତି । ପରମ ସାଧକ ମହାପୁରୁଷ ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ ଆରାଧ୍ୟା ମାଆଙ୍କ ସାକ୍ଷାତ ଦର୍ଶନରେ ଭକ୍ତିପୁତ ହୃଦୟରେ ବର୍ଣ୍ଣନା କରିଛନ୍ତି - ମାଆ ସିନା ଗୋଟିଏ, ମାତ୍ର ରୂପ ଅନେକ । କିଏ କେତେ ରୂପରେ ତାଙ୍କୁ ଦର୍ଶନ କରିଛି, ସେ ବହୁ ଭାବରେ ବହୁ ରୂପରେ ଲୀଳା ରଚନା କରନ୍ତି । ବିଶ୍ୱର କଲ୍ୟାଣ ନିମିତ୍ତ ତାଙ୍କର ଏ ବହୁ ରୂପ । ଏହି ନିତ୍ୟ ନନ୍ଦିନୀ ଶକ୍ତି ସ୍ୱରୂପିଣୀ ଦେବୀଙ୍କ ପ୍ରସଙ୍ଗରେ ତନ୍ତ୍ରରେ ଉଲ୍ଲେଖ ଅଛି, ସୃଷ୍ଟିର ଉନ୍ମେଷ ଘଟି ନଥିବାବେଳେ - ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର ଓ ପୃଥିବୀ ନଥିଲେ ଚତୁର୍ଦ୍ଦିଗ ଘନଘୋର ତମିସ୍ରାରେ ଆଚ୍ଛାଦିତ ଥିଲା । ସେତିକିବେଳେ ମାଆ ନିରାକାର ମହାକାଳୀ ମହାକାଳଙ୍କ ସହିତ ବିରାଜମାନ କରୁଥିଲେ । 'ଅକାଳ ବୋଧନ ତନ୍ତ୍ର' ନାମରେ ନାମିତ ତନ୍ତ୍ରଶାସ୍ତ୍ରରେ ଉଲ୍ଲେଖ ଅଛି ଯେ, ମାଆ ଦୁର୍ଗାଙ୍କ ପୂଜା କରୁଥିବା ବ୍ୟକ୍ତି ମହାଦୁର୍ଗତିରୁ ରକ୍ଷା ପାଏ ବୋଲି ମଧ୍ୟ 'ମାର୍କଣ୍ଡେୟ ପୁରାଣ' ଅନ୍ତର୍ଗତ 'ସପ୍ତସତୀ ଚଣ୍ଡୀ'ରେ ଉଲ୍ଲେଖ ଅଛି । ମାତୃଶକ୍ତି ଭଗବତୀ ପରମେଶ୍ୱରୀଙ୍କ ଶରଣାପନ୍ନ ହେବା ଫଳରେ ଇହଲୋକରେ ମହାଐଶ୍ୱର୍ଯ୍ୟ ଲାଭ କରି ପରଲୋକରେ ମୋକ୍ଷ ପ୍ରାପ୍ତ ହୁଅନ୍ତି । ଯୁଗ ପରେ ଯୁଗ ଅତିକ୍ରାନ୍ତ, ଶତାବ୍ଦୀ ପରେ ଶତାବ୍ଦୀ ଲୀନ ହେଲାଣି । କେଉଁ ଅନାଦି କାଳରୁ ଏ ଦେଶରେ ଶକ୍ତିପୂଜାର ପ୍ରଚଳନ ଘଟିଛି କେହି କହିପାରିବେ ନାହିଁ । ଆର୍ଯ୍ୟାବର୍ତ୍ତ ଭାରତବର୍ଷରେ ଶକ୍ତିତତ୍ତ୍ୱର ସୃଷ୍ଟି ଠିକ୍ କେଉଁ ସମୟରୁ ଆରମ୍ଭ, ତାହାର ସନ୍ତୋଷଜନକ କାରଣ ଓ ଉତ୍ତର କେହି ନିର୍ଣ୍ଣୟ କରିପାରିନାହାନ୍ତି । କିନ୍ତୁ ଏହା ସର୍ବବାଦୀ ସମ୍ମତ ଯେ, କେଉଁ ସ୍ମରଣାତୀତ କାଳରୁ ଶକ୍ତି ଉପାସନା କିପରି ଭାବେ ଓ କେବେ ଆରମ୍ଭ ହେଲା, ତାହା ସଂପୂର୍ଣ୍ଣ ରହସ୍ୟାବୃତ୍ତ । ମହେଞ୍ଜୋଦାରୋ ଓ ହରପ୍ପାରୁ ଆବିଷ୍କୃତ ପ୍ରସ୍ତର ମୂର୍ତ୍ତିମାନଙ୍କରୁ ଶକ୍ତି ଉପାସନାର ପ୍ରଚଳନ ଅନ୍ତତଃ ଖ୍ରୀ:ପୂ:୩୦୦୦ ବର୍ଷ ପୂର୍ବରୁ ମାନବ ସଭ୍ୟତାର ଆରମ୍ଭ ସମୟରୁ ଥିବାର ପ୍ରମାଣ ମିଳେ ।

ପ୍ରାଚୀନ ସିନ୍ଧୁ ସଭ୍ୟତାର କେତେକ ନିଦର୍ଶନ ସ୍ୱରୂପ, ଆମ୍ଭମାନଙ୍କର ଆରାଧ୍ୟା ସବୁ ଦେବୀ ମୂର୍ତ୍ତି ପ୍ରଥା ଅନୁସାରେ ପୂଜାବିଧି ଦ୍ୱିବିଧ ପରିଲକ୍ଷିତ ହେଲା । ବୈଦିକ ମତରେ ପୁରୋହିତ ହେଲେ ବ୍ରାହ୍ମଣ, ମାତ୍ର ଆଦିମ ପ୍ରଥାନୁଯାୟୀ ପୂଜକ ହେଲେ ଗ୍ରାମବାସୀ ଓ କୁଳବଧୂ । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତକରେ ମୂର୍ତ୍ତିପୂଜା ପ୍ରଚଳିତ ହେବା 'ବୌଦ୍ଧଗ୍ରନ୍ଥ', 'ଅବଦାନ ଶତକ' ଓ ଅଶ୍ୱଘୋଷଙ୍କ ବିରଚିତ 'ବୁଦ୍ଧ

ଚରିତ'ରୁ ଜଣାଯାଏ । ଐତିହାସିକ ଡଃ ବରୁଆଙ୍କ ବିବରଣୀ (ଖାରବେଳଙ୍କ ଶିଳାଲେଖ)ରୁ ଜଣାଯାଏ ଯେ ଉତ୍କଳରେ ମୂର୍ତ୍ତିପୂଜାର ପ୍ରଚଳନ ଖ୍ରୀ:ପୂ:୨ୟ ଶତକରୁ ଆରମ୍ଭ । ଏହି ମାତୃ ଆରାଧନା ଓ ଶକ୍ତି ଉପାସନା ଏବଂ ମୂର୍ତ୍ତିପୂଜା ହିନ୍ଦୁଧର୍ମର ପ୍ରାଣ ସ୍ୱରୂପ, ସାଂପ୍ରତିକ ଆଧୁନିକ ହିନ୍ଦୁ ଧର୍ମଧାରା ମୃଣ୍ମୟୀ ମୂର୍ତ୍ତି ପୂଜାର କ୍ରମ ପରିଣତି ମାତ୍ର । ଅଥର୍ବ ବେଦ ବ୍ୟତୀତ କୌଣସି ବେଦରେ ଶକ୍ତି ଉପାସନାର ସଂକେତ ମିଳେ ନାହିଁ । ଋକ୍‌ବେଦର ରାତ୍ରୀ ବା ତାମସୀ ଦେବୀ କାଳୀଙ୍କ ବୈଦିକ ରୂପ । ଏସିଆ-ମାଇନର ର 'ମା'କୁଏଲୀ' (Makueli) ପରବର୍ତ୍ତୀ ପର୍ଯ୍ୟାୟରେ ସାଇବେଲ (Cybele) ନାମରେ ଆରାଧିତା ହେବାର ଜଣାଯାଏ । ଏହି 'କୁଏଲୀ' ବା 'ସାଇବେଲ' ଦେବୀ କାଳୀଙ୍କର ରୂପାନ୍ତର ହେବା ଅନୁମେୟ । ସମଗ୍ର ଭାରତବର୍ଷରେ ଶକ୍ତି ଉପାସନାର ଉନ୍ମେଷ ବହୁ ପ୍ରାଚୀନ । ଏହି ଉପାସନା ସହିତ ଭାରତୀୟ ହିନ୍ଦୁ ଦର୍ଶନର ମଧ୍ୟ ନିବିଡ଼ ସଂପର୍କ ବିଦ୍ୟମାନ । ପ୍ରାକ୍ ବୈଦିକ ସମୟରୁ ହିଁ ଭାରତୀୟମାନଙ୍କ ମନରେ ଶକ୍ତି ଉପାସନାର ସ୍ୱରୂପ ଦେଖିବାକୁ ମିଳେ । କ୍ରମଶଃ ପୂର୍ବୋକ୍ତ ମାତୃ-ଉପାସନା ଶକ୍ତି ଆରାଧନାରେ ପରିଣତ ହୋଇଛି । ଖ୍ରୀଷ୍ଟପୂର୍ବ ୩୦୦୦ ବର୍ଷ ପୂର୍ବରୁ ପୁଣ୍ୟତୋୟା ବୈତରଣୀ ତଟରେ ଆରାଧିତା ଦେବୀ ବିରଜାଙ୍କୁ ପ୍ରାରମ୍ଭିକ ପର୍ଯ୍ୟାୟରେ ପୃଥିବୀ ଦେବୀ ରୂପରେ ପୂଜା କରାଯାଉଥିବାର ପ୍ରମାଣ ସଂସ୍କୃତ ମହାଭାରତରୁ ଉପଲବ୍ଧ ହୁଏ । ପୁରାଣ ବର୍ଣ୍ଣନାନୁସାରେ ଦେବୀ କଶ୍ୟପଙ୍କ ସ୍ତୁତିରେ ସନ୍ତୁଷ୍ଟା ହୋଇ ଲାବଣ୍ୟମୟୀ ରୂପରେ ଆବିର୍ଭୂତା ହୋଇଥିଲେ । 'କାଳିକା ପୁରାଣ'ରେ କୁହାଯାଇଛି 'ଓଡ୍ରାଖ୍ୟଂ ପ୍ରଥମ ପୀଠଂ ଦ୍ୱିତୀୟଂ ଜାଳଶୈଳକମ୍ / ତୃତୀୟଂ ପୂର୍ଣ୍ଣପୀଠନ୍ତୁ କାମରୂପଂ ଚତୁର୍ଥକମ୍ ।' 'ଉଡ୍‌ଡୀୟାନ୍ ତନ୍ତ୍ର'ରେ ଉଲ୍ଲେଖ ଅଛି - ଉଡ୍ଡୀୟାନ୍ ପରଂପୀଠଂ ଯତ୍ର ବୈତରଣୀ ନଦୀ / ଉଡ୍ରଭୂମୀ ମହାକୈଳ ଯାବତ୍ ମହେନ୍ଦ୍ର ପର୍ବତେ ।' ସେହିପରି ଆରଣ୍ୟକର (ତୈତ୍ତରୀୟ) ନାରାୟଣ ଉପନିଷଦରେ ଭୂଦେବୀ ଧରିତ୍ରୀ ଓ ଶ୍ରୀଦେବୀ ଦୁର୍ଗାଙ୍କର ସ୍ପଷ୍ଟ ଉଲ୍ଲେଖ ଅଛି, ଯଥା- 'ତାମଗ୍ନି ବର୍ଣ୍ଣାଂ ତପସା ଜ୍ୱଳନ୍ତୀଂ ବୈରୋଚନୀ କର୍ମ ଫଳେଷୁଜୁଷ୍ଟାମ୍ / ଦୁର୍ଗାଦେବୀଂ ଶରଣଂ ମହଂ ପ୍ରପଦ୍ୟେ ସୁତରସି ତରସେନମଃ' ଠିକ୍ ସେହିପରି ଦେବୀ ଭାଗବତ ଓ ଖିଳ ହରିବଂଶରେ ଦେଖାଯାଏ, ଯଥା- ତ୍ୱଂହି ଦୁର୍ଗେ ମହାବୀର୍ଯ୍ୟେ ଦୁର୍ଗେ ଦୁର୍ଗ ପରାକ୍ରମେ / ସକଳୋ ନିଷ୍କଳ ଶ୍ଚୈବ କଳାତୀତ ନମୋସ୍ତୁତେ । / ଯୋଗାଧିପୋ ଯୋଗ ଗମ୍ୟୋ ଯୋଗାତ୍ମା ଯୋଗ ସମ୍ଭବଃ / ରମସେ ଦେବୀ ଦୁର୍ଗେଷୁ ଦୁର୍ଗେଶ୍ୱରୀ ନମୋସ୍ତୁତେ ।' (ଦେବୀ ପୁରାଣ, ୮୩, ୬୨-୬୩) । ଶକ୍ତି ଉପାସନାରେ ମାତୃଦେବୀ ବା ଶକ୍ତି ଦେବୀଙ୍କର ପ୍ରାଚୀନ ଧାରା ଲକ୍ଷ୍ୟ କଲେ ମୁଖ୍ୟତଃ ଦୁଇଟି ଧାରା ସ୍ପଷ୍ଟ ହୋଇଥାଏ । ଗୋଟିଏ ହେଉଛି ଶସ୍ୟ ପ୍ରସବିନୀ ପାର୍ବତୀ ବା ଉମା ଆରାଧନା ଧାରା । ଧରିତ୍ରୀଙ୍କ ପୂଜାରୁ ଜାତ ହୋଇଛି ଶସ୍ୟ ଦେବୀ ପୂଜା ଏବଂ ଏହି ପୂଜାର ମିଶ୍ରଣ ଘଟିଛି ମହାଦେବୀ ଦୁର୍ଗାଙ୍କ ସହ । ବାଜସନେୟୀ ସଂହିତା ଓ ତୈତ୍ତିରୀୟ ବ୍ରାହ୍ମଣରେ ରୁଦ୍ରଙ୍କର ଭଗିନୀ ରୂପେ ଏବଂ ତୈତ୍ତିରୀୟ ଆରଣ୍ୟକରେ ରୁଦ୍ରଙ୍କର ପତ୍ନୀ ରୂପରେ ଅମ୍ବିକାଙ୍କର ଉଲ୍ଲେଖ ରହିଛି । କାଠକ ସଂହିତା ଓ ତୈତ୍ତିରୀୟ ବ୍ରାହ୍ମଣରେ ଅମ୍ବିକାଙ୍କୁ ଶରତ ଶାରଦା ବୋଲି କୁହାଯାଇଛି । ଶାରଦୀୟ ଦେବୀ ଦୁର୍ଗା ପୂଜା ମୂଳରେ ବୋଧହୁଏ ଶସ୍ୟ ଦେବୀ ପୂଜା ରହିଥିବାରୁ ଷଷ୍ଠୀ ପରେ ଦେବୀଙ୍କର ପ୍ରତୀକ ଶସ୍ୟବଧୂ ବା ନବପଲ୍ଲବର ପତ୍ରିକାର ପୂଜା କରାଯାଏ । ଶସ୍ୟ ଦେବୀ ବା ଶସ୍ୟବଧୂ ଧରିତ୍ରୀର ରୂପଭେଦ ହୋଇଥିବାରୁ ମହାଦେବୀ ଦୁର୍ଗାଙ୍କ ପୂଜାର୍ଚ୍ଚନା ମଧ୍ୟରେ ଧରିତ୍ରୀ ପୂଜା ମିଳିଯାଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ପୌରାଣିକ ଯୁଗରେ ପାର୍ବତୀ ଉମାଙ୍କ ସହ ଅଭିନ୍ନତା ଲାଭ କରି ବ୍ରାହ୍ମଣ୍ୟ ଧର୍ମରେ ଦୁର୍ଗାଙ୍କର ପ୍ରତିଷ୍ଠା ହୋଇଥିବ ବୋଲି ମନେ କରାଯାଏ । କାରଣ ମହାଭାରତରେ ଯୁଧିଷ୍ଠିର ଓ ଅର୍ଜୁନଙ୍କର ଦୁର୍ଗାସ୍ତବ ଏବଂ ଅଖିଳ ହରିବଂଶ ପୁରାଣରେ ଭବତାରିଣୀ ଦେବୀ ଦୁର୍ଗାଙ୍କର ସ୍ତବଗାନ ଥିଲେ ମଧ୍ୟ ସେତେବେଳେ ସେ ବ୍ରାହ୍ମଣ୍ୟ ଧର୍ମରେ ଦୃଢ଼ ପ୍ରତିଷ୍ଠା ଲାଭ କରିପାରିନଥିଲେ । ମହାଭାରତରେ ପାର୍ବତୀ ଉମା ବିଶେଷତଃ ଶିବ ପତ୍ନୀ ରୂପେ ପରିଚିତା, କିନ୍ତୁ ଦେବୀ ରୂପରେ ସେତେବେଳେ ତାଙ୍କର ସ୍ୱାତନ୍ତ୍ର୍ୟ ଓ ପ୍ରାଧାନ୍ୟ ପ୍ରତିଷ୍ଠିତ ହୋଇ ନଥିଲା । ପାର୍ବତୀଉମା ପ୍ରଥମେ ଦେଖୁଁ ରାଜନନ୍ଦିନୀ କନ୍ୟା ରୂପେ, ଅନିନ୍ଦ୍ୟ ରୂପଲାବଣ୍ୟ ସମ୍ପନ୍ନା ହୈମବ (ହିମାଳୟ ଦୁହିତା) ରୂପେ । କିନ୍ତୁ ପାର୍ବତୀଉମା ପରବର୍ତ୍ତୀ କାଳରେ ଯେ ଦୁର୍ଗା ନାମରେ ପ୍ରସିଦ୍ଧି ଲାଭ କରିଛନ୍ତି ଏଥିରେ ସନ୍ଦେହ ନାହିଁ ।

ବେଦରେ ଦେବୀତତ୍ତ୍ୱ ପ୍ରକୃତି ଦେବୀ ଓ ଧରିତ୍ରୀ ଦେବୀ ଭିନ୍ନ ନୁହେଁ ଅଭିନ୍ନ । ସମଗ୍ର ପୃଥିବୀ ଓ ପ୍ରକୃତି ଦେବୀ ତତ୍ତ୍ୱରୁ ହିଁ ଏ ସଚରାଚର ସୃଷ୍ଟି ସମ୍ଭବ ଦେବୀ ଶବ୍ଦ ଦେବପତ୍ନୀ ଅଥବା ଦେବସ୍ତ୍ରୀ ଅର୍ଥରେ ପ୍ରଯୁକ୍ତ । ଏଣୁ ଇଡ଼ା, ପିଙ୍ଗଳା, ଭାରତୀ, କାତ୍ୟାୟନୀ ତଥା ସରସ୍ୱତୀ ଇତ୍ୟାଦି ସମସ୍ତେ ବ୍ୟାପକ ଅର୍ଥରେ ହିଁ ଦେବୀ, ମାତ୍ର ସରସ୍ୱତୀ ଦେବୀତମା ଅଟନ୍ତି । ଋଗ୍ ବେଦରେ ଦେବପତ୍ନୀ ଇନ୍ଦ୍ରାଣୀ, ଆଗ୍ନେୟୀ, ଅଗ୍ନାୟୀ, ଅଶ୍ୱିନୀ, ରୋଦସୀ ତଥା ବରୁଣାନୀଙ୍କୁ ଦେବୀ ରୂପେ ବର୍ଣ୍ଣନା କରାଯାଇଛି ଅନ୍ୟତ୍ର ଦେବପତ୍ନୀମାନଙ୍କ ସହିତ ପୃଥିବୀ ତଥା ଆପଃ ସହିତ ସମ୍ବନ୍ଧ ଥିବା ଦେବୀମାନଙ୍କର ଉଲ୍ଲେଖ ଅଛି । ଋଗ୍ ବେଦ ଅନୁସାରେ କେବଳ ପୃଥିବୀ ଏବଂ ଦ୍ୟୁଦେବୀ ନୁହନ୍ତି, ପୃଥିବୀ ସ୍ୱୟଂ ଦେବୀ, ଦେବ-ପୁତ୍ରୀ ଅଟନ୍ତି । 'ଦେବୀ' ଶବ୍ଦର ପ୍ରୟୋଗ 'ରୋଦସୀ' ପାଇଁ ମଧ୍ୟ ପ୍ରଯୁଜ୍ୟ, ଯାହାଙ୍କ ଦ୍ୱାରା ପୃଥିବୀ ଅର୍ଥରେ ପ୍ରୟୋଗ କରାଯାଇଛି । ସମୟେ ସମୟେ ରୁଦ୍ର ପତ୍ନୀ ବୋଲି ରୋଦସୀଙ୍କୁ କୁହାଯାଏ । ଯାସ୍କ ମଧ୍ୟ ଉଷା, କଳା, ଉର୍ବଶୀ ତଥା ରୋଦସୀ ଇତ୍ୟାଦିଙ୍କର ଚର୍ଚ୍ଚା କରିଛନ୍ତି । ଋକ୍ ବେଦରେ ମାତୃଶକ୍ତିମାନଙ୍କର ଉଲ୍ଲେଖ ଅନେକ ନାମରେ ଦେଖିବାକୁ ମିଳେ । ସ୍ତ୍ରୀ ଲିଙ୍ଗ ଶବ୍ଦଗୁଡ଼ିକ ସ୍ତ୍ରୀ ଦେବୀ ବଦଳାଇ ଦେବୀ ରୂପରେ ଆବିର୍ଭୂତା ହୁଅନ୍ତି । ଉକ୍ତ ବର୍ଣ୍ଣନା ତଥା ଆଲୋଚନାରୁ ସ୍ୱତଃ ମନରେ ପ୍ରଶ୍ନ ଉଠେ ଯେ, ସର୍ବତ୍ର ଓ ସର୍ବଦା 'ଦେବୀ'ଙ୍କୁ ଶକ୍ତି କୁହାଯାଇଛି କି ? ଉଦାହରଣ

ସ୍ୱରୂପ କୁହାଯାଇପାରେ ଯେ କ'ଣ ସୂର୍ଯ୍ୟ, ଉଷା, ବରୁଣାନୀ, ଅଶ୍ୱିନୀ ଆଦିରେ ସ୍ତ୍ରୀ ପ୍ରତ୍ୟୟ ଯୋଗ କରିଦେଲେ ଜଣେ ଦେବୀ ହୋଇଯାଆନ୍ତି, ତେବେ କଣ ପ୍ରତ୍ୟେକ ଦେବୀ ଏବଂ ଦେବତା ମଧ୍ୟରେ ଶକ୍ତି ରହିବା ଅନିବାର୍ଯ୍ୟ ? ଏ ସମସ୍ତ ପ୍ରଶ୍ନର ଉତ୍ତର ପାଇବାକୁ ହେଲେ ଆମେ ଦେବୀ ତତ୍ତ୍ୱ ଉପରେ ବିଚାର ବିମର୍ଷ କରିବା ଉଚିତ୍ ।

ବିଭିନ୍ନ ଦେବତାମାନଙ୍କର ପରିବର୍ତ୍ତିତ ରୂପ ଦେବୀତତ୍ତ୍ୱ ରୂପରେ ବିକଶିତ ହୋଇଥାଏ ଏହି ଉକ୍ତି ସେହି ଦୈବୀ ସଂସଦ ଉପରେ ହିଁ ଚରିତାର୍ଥ ହୋଇଥାଏ ।ଯେଉଁଥିରେ କି ସମସ୍ତ ବୈଦିକ ଦେବତା ଆସିଯାଆନ୍ତି । ଜୈମିନୀୟ ଉପନିଷଦର ବ୍ରାହ୍ମଣରେ ଦୈବୀ ସଂସଦ କଥା ବର୍ଣ୍ଣନା କରାଯାଇ କୁହାଯାଇଛି ଯେ ବ୍ରହ୍ମାଣ୍ଡ, ଅଗ୍ନି, ଚନ୍ଦ୍ର, ଆଦିତ୍ୟ, ଦିଗ ଏବଂ ବାୟୁପିଣ୍ଡରେ କ୍ରମଶଃ ବାଣୀ, ମନ, ଚକ୍ଷୁ, ଶ୍ରୋତା ତଥା ପ୍ରାଣ ହୋଇ ପ୍ରବିଷ୍ଟ ହୋଇଯାଏ, ଯେଉଁଥିରେ ଦୈବୀ ପରିଷଦ ଦୈବୀ ସତ୍ତା ବା ଦୈବୀ ସଂସଦ ସୃଷ୍ଟି ହୋଇଥାଏ । ସେହି ଦେବତାମାନଙ୍କ ମଧ୍ୟରୁ ଯେକୌଣସି ଦେବତାଙ୍କୁ ନିଆଗଲେ ମଧ୍ୟ ଆମେ ଜାଣିପାରିବା ପ୍ରତ୍ୟେକ ଦେବତାଙ୍କର ଜଣେ ଜଣେ ଶକ୍ତି ଅଛନ୍ତି । ଯାହା ଦ୍ୱାରା ସେମାନେ ନିଜର ଦେବତା ବା ଦେବତତ୍ତ୍ୱକୁ ବ୍ୟକ୍ତ କରିଥାନ୍ତି । ଶ୍ରୋତାଦିରେ ଶ୍ରବଣ ଶକ୍ତି ଥିଲା ପରି ଆଦିତ୍ୟରେ ପ୍ରକାଶନ ଆଦି ଶକ୍ତି ରହିଥାନ୍ତି । ଜଣେ ଅନ୍ୟ ଜଣଙ୍କର ଦୃଷ୍ଟିରେ ପିଣ୍ଡ ମଧ୍ୟରେ ସମସ୍ତେ ଦେବ ଆତ୍ମାର ଅଶଂାବତାର ମାତ୍ର । କାହିଁକି ନା ତାହାଙ୍କର ଚେତନା ଶକ୍ତିକୁ ଲାଭ କରି ହିଁ ସେମାନେ ଦେବତା ଅଥବା ସେମାନଙ୍କ ଶକ୍ତି ତାଙ୍କର ଶ୍ରବଣାଦି ଶକ୍ତିର କାମ କରିଥାଏ । ଏହି କଥା ବ୍ରହ୍ମାଣ୍ଡର ଦେବଶକ୍ତି ବିଷୟରେ ମଧ୍ୟ କୁହାଯାଇଥାଏ । ସେ ଶକ୍ତି ମଧ୍ୟରୁ ପ୍ରତ୍ୟେକ ଦେବତା ନିଜ ନିଜ ପ୍ରକାଶ ଶକ୍ତି ଦ୍ୱାରା ବ୍ୟକ୍ତ ହୋଇଥାନ୍ତି । କେତେକ ଦୈବୀ ସାଧକ ଓ ସାଧାରଣ ମନୁଷ୍ୟମାନଙ୍କ ମଧ୍ୟରେ ମଧ୍ୟ ନିଜ ଶରୀରର ବାହ୍ୟବଳୟରେ ଇଲେକ୍ଟ୍ରୋନ୍ ଓ ପ୍ରୋଟନ କଣିକାର ସମିଶ୍ରଣ ପ୍ରକ୍ରିୟାରୁ କାବ୍ୟ ପ୍ରକାଶ ପୁଣି ଦୃଷ୍ଟିଗୋଚର ହୁଏ । କିନ୍ତୁ ପିଣ୍ଡପ୍ରାଣରେ ସାଦୃଶ୍ୟ ଆଧାର ଉପରେ ସେହି ସବୁ ଶକ୍ତିମାନଙ୍କ ସ୍ରୋତ ମଧ୍ୟ କଳ୍ପନା କରାଯାଏ । ଅତଃ ପିଣ୍ଡ ଏବଂ ବ୍ରହ୍ମାଣ୍ଡ ଦୁଇଟି ମଧ୍ୟରେ ଯିଏ ହେଉ ଶ୍ରବଣ, ପ୍ରକାଶନ ଆଦି ଶକ୍ତି ଦ୍ୱାରା ଅଭିବ୍ୟକ୍ତ କରୁଥାଏ । ଯେପରିକି ଗୌତମବୁଦ୍ଧ ଓ ଶ୍ରୀଚୈତନ୍ୟଙ୍କ କ୍ଷେତ୍ରରେ ଅଲୌକିକ ଦେବତ୍ୱଭାବ ପ୍ରକାଶ ଘଟିଥିଲା । ତାହାଙ୍କୁ ବସ୍ତୁତଃ ଜଣେ ଦେବଙ୍କର ଦେବତ୍ୱ ବା ଦେବତା ହିଁ କୁହାଯାଏ । ଏସବୁ ଦୃଷ୍ଟିକୋଣରୁ ଆମେ ଅରଣ୍ୟକୁ ଦେଖି ସେଠାରେ ଥିବା ପକ୍ଷୀମାନଙ୍କର କଳରବରେ, ପଶୁମାନଙ୍କର ଚିତ୍କାରରେ, ବୃକ୍ଷମାନଙ୍କର ଜର୍ଜରେ କଳରବ, ପଶୁମାନଙ୍କର ଚିତ୍କାରରେ, ବୃକ୍ଷମାନଙ୍କର ଫଳପୁଷ୍ପରେ ଆମେ କୌଣସି ନା କୌଣସି ଶକ୍ତିର ପ୍ରଭାବକୁ ଅନୁଭବ କରିଥାଉ । ଯେପରି ପେଟ ଭିତରେ ଥିବା ଗ୍ରନ୍ଥିମାନଙ୍କର ରକ୍ତସ୍ରାବ ଯୋଗୁଁ ଅନ୍ତନାଡ଼ିମାନଙ୍କର ଗତି ଯୋଗୁଁ, ଆମେ ଜାଣୁ ଯେ ନିଶ୍ଚୟ ପ୍ରଚ୍ଛନ୍ନ ଭାବେ ଅଲୌକିତ କୌଣସି ଶକ୍ତିର ସହାୟତାରେ ଏସବୁ ସମ୍ଭବ ହେଉଅଛି । ଆମେ ଚାହିଁଲେ ଅରଣ୍ୟର କୌଣସି ଦେବତାଙ୍କୁ ମାନି ନେଇ ସେଠାରୁ ବ୍ୟକ୍ତ ହେଉଥିବା କୌଣସି ଶକ୍ତିକୁ ଅରଣ୍ୟାନି କହିପାରୁ ଅଥବା ବ୍ରହ୍ମାଣ୍ଡର ସେହି ଏକମାତ୍ର ପରମ ପୁରୁଷ ଦେବତାଙ୍କ ଅଂଶ ଅବତାରଙ୍କୁ ମାନି କରି ତାଙ୍କର ଆଂଶିକ ଶକ୍ତିକୁ ଅଭିବ୍ୟକ୍ତ କରିପାରୁ । ନାନା ରୂପରେ ସ୍ୱ ସ୍ୱ କ୍ଷେତ୍ରରେ ବ୍ୟକ୍ତ ହେଉଥିବା ଶକ୍ତିମାନଙ୍କ ମଧ୍ୟରେ ଏକତା ସ୍ଥାପନ କରି ଏକ ହିଁ ସମଷ୍ଟିଗତ ଶକ୍ତିର କଳ୍ପନା ସମ୍ଭବ ଅଟେ । ଯାହାକୁ ରାଷ୍ଟ୍ରୀ, ବାକ୍, ଅଦିତି ଇତ୍ୟାଦି କୁହାଯାଏ । ସମସ୍ତ ଦେବୀମାନଙ୍କର ସମୀକରଣ ବାକ୍ ସହିତ ହୋଇଅଛି ଏବଂ ସମ୍ବତ୍ସର ପ୍ରଜାପତିଙ୍କର ପତ୍ନୀ ଉଷାଙ୍କୁ ଏବଂ ବାକ୍ ଏକତ୍ର କୁହାଯାଇଛି । ବାକ୍ ସୂତ୍ରରେ ବାଗ୍‌ଦେବୀଙ୍କଠାରେ ଯେଉଁ ଅଲୌକିକତା, ବ୍ୟାପକତା, ସର୍ବାତ୍ମକତା ତଥା ସର୍ବ ଶକ୍ତି ମଧ୍ୟ ଦେଖିବାକୁ ମିଳେ, ତାହା ସଂପୂର୍ଣ୍ଣ ରୂପେ ସାର୍ଥକ ଅଟେ । ଅନେକ ଶକ୍ତିମୟୀ ଦେବୀ ଅଛନ୍ତି ଓ ଦେବୀଙ୍କର ରୂପାନ୍ତର ସ୍ୱରୂପ ଅନ୍ୟଶକ୍ତି ମଧ୍ୟ ବିଦ୍ୟମାନ ଅଛନ୍ତି । ଏପରି ଭାବେ ଯେଉଁସବୁ କଳ୍ପନା ପୁରାଣରେ ତଥା ଆଗମନରେ ଦେଖିବାକୁ ମିଳେ, ତାହାର ସ୍ୱରୂପ ଆମେ ଋଗ୍ ବେଦରେ ପାଇଥାଉ । ଏହା କେବଳ ପରବର୍ତ୍ତୀ ସମୟରେ କୁହାଯାଇଥିବା ଦଶମ ମଣ୍ଡଳରେ ନୁହେଁ ଅପିତୁ ଅନ୍ୟ ସ୍ଥଳମାନଙ୍କରେ ମଧ୍ୟ ସ୍ପଷ୍ଟ ରୂପରେ ପ୍ରାପ୍ତ ହୋଇଥାଏ ।

ଆଜିକାଲିର ଶିକ୍ଷିତ ବ୍ୟକ୍ତିଙ୍କ ପକ୍ଷେ ଏହା ଆଶ୍ଚର୍ଯ୍ୟର କଥା ହୋଇପାରେ, ମାତ୍ର ଗାଁ ଗହଳରେ, ଜଙ୍ଗଲରେ,ନିଘଞ୍ଚ ଅରଣ୍ୟାନୀ ପାହାଡ଼ିଆ ଅଞ୍ଚଳରେ ବସବାସ କରୁଥିବା ଅଶିକ୍ଷିତ ଲୋକମାନଙ୍କ ମଧ୍ୟରେ ଏ ପ୍ରକାର ଲୋକ ଅଛନ୍ତି ଯେଉଁମାନେ କି ଜଳ, ସ୍ଥଳ, ଆକାଶ, ପବନ, ବୃକ୍ଷଲତା, ଏପରିକି ମନରେ ବିଭିନ୍ନ ପଦାର୍ଥରେ ଦୈବୀ ଶକ୍ତି ପ୍ରାପ୍ତ ଏକତାର ଭାବନା ନଥାଉ ପଛେ, କିନ୍ତୁ ସେଥିରେ କୌଣସି ନା କୌଣସି ଦେବୀ ବା ଦେବୀ ଶକ୍ତିର ଭାବନା ଅବଶ୍ୟ ଅଛି । ସମ୍ଭବତଃ ଏହି ପୃଥକ୍ ପୃଥକ୍ ଦେବୀଶକ୍ତିର କଳ୍ପନା ବିକଶିତ ହୋଇ ସମଷ୍ଟିଗତ ଦେବୀ ରୂପରେ ରୂପାନ୍ତର ଏଥିରେ ସନ୍ଦେହ ନାହିଁ ଯେ, ଋଗ୍ ବେଦରେଏପରି ଏକ ଦେବୀତତ୍ତ୍ୱର କଳ୍ପନା କରାଯାଇଛି ଯାହାର ରୂପାନ୍ତର ପ୍ରକୃତିର ଅନ୍ୟକ୍ଷେତ୍ରରେ ମଧ୍ୟ ପ୍ରକାଶମାନ କରୁଥାଏ । ସେହି ରୂପାନ୍ତର ମଧ୍ୟରୁ କୌଣସି ଜଣକୁ ଦେଇ ସମସ୍ତ ଦେବୀ ତତ୍ତ୍ୱଙ୍କ ସ୍ତୁତି କରାଯାଇପାରେ, ଉଦାହରଣ ସ୍ୱରୂପ ପାର୍ଥିବ ଦେବୀ, ଜଳୀୟ ଦେବୀ ତଥା ଦେବପତ୍ନୀ ସହିତ ଇନ୍ଦ୍ରାଣି, ଅଗ୍ନାୟୀ ଅଶ୍ୱିନୀ, ରାଟ, ରୋଦସୀ ଏବଂ ବରୁଣାନୀ ଆଦିଙ୍କ ଉଲ୍ଲେଖ ପଶ୍ଚାତ୍ ଏହିସବୁ ଦେବୀମାନଙ୍କୁ 'ଋତୁର୍ଜନୀନାମ' କୁହାଯାଇ ଏସବୁର ସ୍ରୋତ ଏକ ହେବା କଥା ସ୍ପଷ୍ଟ ସଙ୍କେତ କରାଯାଇଥାଏ ।

ଏଣୁ ଏହା କହିବା ଅନୁଚିତ ହେବ ନାହିଁ ଯେ, ଋଗ୍ ବେଦରେ ପରମ ସତ୍‌ଶକ୍ତି ରୂପରେ ମୂଳତଃ ଏକମାତ୍ର ଦେବୀତତ୍ତ୍ୱ ଅଛି । ଯାହାକି ଅନେକ ରୂପରେ ଥିଲେ ସୁଦ୍ଧା ଅନେକ ଦେବୀ ରୂପରେ ଦେଖା

ଦେଇଥାନ୍ତି । ସ୍ୱାଭାବିକ୍ ରୂପେ ଏହା ଯେ ଯେପରି ଜଣେ ଦେବତାରୁ ଅନେକ ଦେବ ହୋଇପାରନ୍ତି, ସେହିପରି ଜଣେ ଦେବୀ ଅନନ୍ତ କୋଟି ଦେବୀ ରୂପରେ ରୂପାନ୍ତର ହୋଇପାରନ୍ତି । ଉଦାହରଣ ସ୍ୱରୂପ ସୂର୍ଯ୍ୟାସ୍ତ ସୂକ୍ତରେ ନିଆଯାଉ । ସାଧାରଣତଃ ସୂର୍ଯ୍ୟ ଆକାଶରେ ଜାଜ୍ୱଲ୍ୟମାନ ହେଉଥିବା ସୂର୍ଯ୍ୟଙ୍କ ସହିତ ମୂଳତଃ ସମ୍ବନ୍ଧିତ କିନ୍ତୁ ସୂର୍ଯ୍ୟସୂକ୍ତରେ କେବଳ ବାହ୍ୟ ଜଗତର ସୂର୍ଯ୍ୟ ନୁହେଁ ବରଂ ଏପରି ମଧ୍ୟ ସୂର୍ଯ୍ୟ ଯାହାକି ବଳଦ ଆଦି ସମସ୍ତ ପିଣ୍ଡରେ ମିଳିଥାଏ । ସେହିପରି ରାତ୍ରୀରେ ଯେଉଁ ସୂକ୍ତ ଅଭିବ୍ୟକ୍ତି ହୋଇଅଛି, ତାହାରି ମୂଳରେ ଜଣେ ଦେବୀ ଅଛନ୍ତି, ତାହା ଉଷା ରୂପେ ଅଭିବ୍ୟକ୍ତ ହୋଇଅଛି । ଏ ମଧ୍ୟରୁ ଯାହାକୁ ନେଇ ଉଷା ବା ରାତ୍ରୀ ପର୍ଯ୍ୟନ୍ତ ପହଞ୍ଚିଯାଇ ହୁଏ । ଯାହା ଆମ ପିଣ୍ଡରେ ଅଭିବ୍ୟକ୍ତ ହୋଇଥାଏ । ଏହାର ସୁନ୍ଦର ଉଦାହରଣ ଋଗ୍ ବେଦରେ ରାତ୍ରୀ ସୂକ୍ତରେ ଦେଖିବାକୁ ମିଳେ । ଏପରି ଭାବେ ହୋମ, ଯଜ୍ଞ, ଦକ୍ଷିଣା, ସ୍ୱାହା ଏବଂ ସ୍ୱଧା ବାହ୍ୟତଃ କୌଣସି ସାଧାରଣ ପ୍ରକାର ଅଭିବ୍ୟକ୍ତି ଉପଲବ୍ଧ ହେଉଥିବା ଶକ୍ତି ମଧ୍ୟରେ ଦେବୀ ରୂପ ଦେଖିବା ପରେ ସେହି ବ୍ରହ୍ମ ସମ୍ଭୂତା ବା ବ୍ରହ୍ମ ଦୁହିତା ହୋଇ, ବାକ୍ ଆଦିତି ରୂପରେ ସମତା କରି ନିଅନ୍ତି । ଅତଃ ଆମେ କହିପାରୁ ଋଗ୍ ବେଦ ଦେବୀତତ୍ତ୍ୱରେ ପୌରାଣିକ ଦେବୀତତ୍ତ୍ୱର ବୀଜମନ୍ତ୍ର ବିଦ୍ୟମାନ । ଠିକ୍ ସେହିପରି ତନ୍ତ୍ରସାଧକମାନେ ତନ୍ତ୍ର ଉପାସନାର ଆଦ୍ୟପର୍ବରେ ଶ୍ରୀଯନ୍ତ୍ରକୁ ଆଧାର କରି କେନ୍ଦ୍ରସ୍ଥଳରେ ରାତ୍ରୀ ଦେବୀଙ୍କୁ ଆରାଧନା କରିବା ପାଇଁ ମଧ୍ୟସ୍ଥଳରେ ସୂକ୍ଷ୍ମବିନ୍ଦୁକୁ ସ୍ଥାପନା କରି ମାତୃଶକ୍ତିକୁ ତୁଷ୍ଟ କରି ମୋକ୍ଷମାର୍ଗରେ ପରିଚାଳିତ ହୋଇଥାନ୍ତି । ଉପାସନା ଓ ଆରାଧନାର ସମଷ୍ଟି ହିଁ ଉପାସକମାନଙ୍କର ମୂଳ ଆଧାର । ତ୍ରିଭୁଜାକାର କକ୍ଷ ମଧ୍ୟରେ ଠିକ୍ ମଧ୍ୟସ୍ଥଳରେ ସୂକ୍ଷ୍ମ ବିନ୍ଦୁ ହିଁ ଆତ୍ମାପୁରୁଷ ଶିବ ଓ ଶକ୍ତିର ମିଳନ ସ୍ଥଳ ବିହାର । ବାହ୍ୟ ଭାଗ ପୃଥିବୀତତ୍ତ୍ୱ ଓ ଆକାଶତତ୍ତ୍ୱ ହିଁ ବିଶ୍ୱ ଆଧାର ମୂଳ ଭୂତ ରୂପାନ୍ତର ।

ସାଧବ ନିଳୟ
ମଙ୍ଗଳାବାଗ, କଟକ-୧

## ଓଡ଼ିଶାରେ ଆଉ ତିନିଗୋଟି ଇସ୍ପାତ ପ୍ରକଳ୍ପ ପ୍ରତିଷ୍ଠା ନିମନ୍ତେ ଉଚ୍ଚସ୍ତରୀୟ କମିଟିର ଅନୁମୋଦନ ଲାଭ କରିଛି

- ଇସ୍ପାତ ଓ ଖଣି ମନ୍ତ୍ରୀ ଶ୍ରୀ ବେହେରା

ଓଡ଼ିଶା ସରକାରଙ୍କ ଉଚ୍ଚସ୍ତରୀୟ ଅନୁମୋଦନ କମିଟିରେ ଆଉ ତିନିଗୋଟି ଇସ୍ପାତ ପ୍ରକଳ୍ପ ପ୍ରତିଷ୍ଠା କରାଯିବାକୁ ନିଷ୍ପତ୍ତି ଗ୍ରହଣ କରାଯାଇଛି ବୋଲି ଇସ୍ପାତ ଓ ଖଣି ମନ୍ତ୍ରୀ ଶ୍ରୀ ପଦ୍ମନାଭ ବେହେରା ପ୍ରକାଶ କରିଛନ୍ତି ।

ଏହି ନିଷ୍ପତ୍ତି ଅନୁଯାୟୀ ରୁଂଗ୍‌ଟା ମାଇନ୍‌ସ ଲିମିଟେଡ ବାର୍ଷିକ ୨ ମିଲିୟନ ଟନ୍ ଇସ୍ପାତ ପ୍ରକଳ୍ପ ଦୁଇ ପର୍ଯ୍ୟାୟରେ ସୁନ୍ଦରଗଡ଼ ଜିଲ୍ଲାର କମାଣ୍ଡୋ ଏବଂ ଢେଙ୍କାନାଳ ଜିଲ୍ଲାର ଝାରବନ୍ଧଠାରେ ପ୍ରତିଷ୍ଠା ନିମନ୍ତେ ରାଜିନାମା ସ୍ୱାକ୍ଷର କରିବ । ଏହାର ସମୁଦାୟ ପ୍ରକଳ୍ପ ମୂଲ୍ୟ ୨୨୭୫ କୋଟି ଟଙ୍କା ହେବ । ଠିକ୍ ସେହିପରି ଭୂଷଣ ଷ୍ଟିଲ୍ ଆଣ୍ଡ ଷ୍ଟିପ୍‌ସ ଲିମିଟେଡ୍, ଢେଙ୍କାନାଳ ଜିଲ୍ଲାର ମେରାମଣ୍ଡଳୀଠାରେ ବାର୍ଷିକ ୩.୧ ମିଲିୟନ୍ ଟନ୍ ଇସ୍ପାତ ଉତ୍ପାଦନ ପାଇଁ ୬୮୨୮.୦୬ କୋଟି ଟଙ୍କା ପ୍ରକଳ୍ପ ମୂଲ୍ୟରେ ପ୍ରତିଷ୍ଠା ପାଇଁ ରାଜିନାମା ଓଡ଼ିଶା ସରକାରଙ୍କ ସହ ସ୍ୱାକ୍ଷର କରିବ । ଜିନ୍ଦଲ ଷ୍ଟିଲ ଆଣ୍ଡ ପାୱାର ଲିମିଟେଡ୍ ପୂର୍ବରୁ ସ୍ୱାକ୍ଷର କରିଥିବା ରାଜିନାମାକୁ ସଂଶୋଧନ କରି ୨ ମିଲିୟନ୍ ଟନ୍‌ରୁ ବାର୍ଷିକ ୬ ମିଲିୟନ୍ ଟନ୍ ଇସ୍ପାତ୍ ପ୍ରକଳ୍ପ ଅନୁଗୋଳ ଜିଲ୍ଲାର କେରଜଂଗାଠାରେ ପ୍ରତିଷ୍ଠା ପାଇଁ ରାଜିନାମା ସ୍ୱାକ୍ଷର କରିବ । ଏହି ପ୍ରକଳ୍ପର ମୂଲ୍ୟ ୧୩୧୩୫.୦୨ କୋଟି ଟଙ୍କା ଅଟେ ।

ଏହାବ୍ୟତୀତ ଟିଟାନିୟମ୍ ମିନେରାଲ ପ୍ରଡକ୍ଟସ୍ ଲିମିଟେଡ୍ ୧୦୦୩ କୋଟି ଟଙ୍କା ପ୍ରକଳ୍ପ ମୂଲ୍ୟରେ ଗଂଜାମ ଜିଲ୍ଲା ଛତ୍ରପୁର ନିକଟ ଶ୍ରୀରାମଚନ୍ଦ୍ରପୁରଠାରେ ଏକ ଟିଟାନିୟମ୍ କମ୍ପ୍ଲେକ୍ସ ପାଇଁ ରାଜିନାମା ସ୍ୱାକ୍ଷର କରିବ ବୋଲି ମନ୍ତ୍ରୀ ଶ୍ରୀ ବେହେରା କହିଛନ୍ତି ।

# ଶିବଶକ୍ତି ଆରାଧନା : ପରମ୍ପରା ଓ ଦର୍ଶନ

ଡକ୍ଟର ବିଦ୍ୟୁତ୍‌ଲତା ରାୟ

ହିନ୍ଦୁଧର୍ମର ବିଭିନ୍ନ ଶାଖା ମଧ୍ୟରେ ଶୈବ, ଶାକ୍ତ, ବୈଷ୍ଣବ ଓ ତନ୍ତ୍ର ପୂଜାର ବୈଶିଷ୍ଟ୍ୟ ରହିଛି । ସର୍ବୋପରି ଶିବ ଓ ଶକ୍ତି ପୂଜାର ମହାତ୍ମ୍ୟ ସବୁଠାରୁ ପୁରାତନ । ଏ ପରିପ୍ରେକ୍ଷୀରେ ନବମ ଶତାବ୍ଦୀରେ ଖନନ ହୋଇଥିବା ମହେଞ୍ଜୋଦାରୋ ଓ ହରପ୍ପା ଏକ ଜ୍ୱଳନ୍ତ ଉଦାହରଣ । ସେଠାରେ କୌଣସି ଦେବ ଓ ଦେବୀଙ୍କ ମୂର୍ତ୍ତି ମିଳିନାହିଁ । ଯେଉଁ ମୂର୍ତ୍ତିଟି ମିଳିଛି ତାହାର ଶିବଲିଙ୍ଗ ସହିତ ସାମଞ୍ଜସ୍ୟ ରହିଛି । ସିନ୍ଧୁ ଉପତ୍ୟକାରୁ ମିଳିଥିବା ଟେରାକୋଟା ମୂର୍ତ୍ତିଟି ଦେବୀ ଶାକମ୍ଭରୀଙ୍କ ସହ ସାମଞ୍ଜସ୍ୟ ରହିଛି ବୋଲି ବହୁ ବିଦ୍ୱାନ ମତ ଦିଅନ୍ତି ।

ପରମ ଆରାଧିତ ଦେବଦେବୀଙ୍କ ମଧ୍ୟରେ ଶିବ ଓ ଶକ୍ତି ହେଉଛନ୍ତି ବହୁ ପୁରାତନ । ଏହା କୌଣସି ପ୍ରମାଣ ଦରକାର କରେ ନାହିଁ । ଋଗ୍‌ବେଦ ମନ୍ତ୍ରରେ ମଧ୍ୟ ଏହାର ଦୃଷ୍ଟାନ୍ତ ରହିଛି । ମହାଭାରତ, ରାମାୟଣ ଓ ପୁରାଣ ପ୍ରଭୃତିରେ ଶିବ ଓ ଶକ୍ତି ଯେ ଏକ ଓ ଅଭିନ୍ନ ତା'ର ଧାରଣା ରହିଛି । ଏଥିରେ ଶିବଙ୍କୁ ଅର୍ଦ୍ଧ ନାରୀଶ୍ୱର ଭାବେ ବର୍ଣ୍ଣନା କରାଯାଇଛି । କିନ୍ତୁ କାର୍ଯ୍ୟରେ ଉଭୟେ ଓଲଟା । ଶିବ ସ୍ଥିର କିନ୍ତୁ ଶକ୍ତି ସୃଷ୍ଟି ତଥା ସଂରକ୍ଷଣର ଏକ ମହାନ୍ ବଳ ଭାବେ କାର୍ଯ୍ୟ କରନ୍ତି । ଯେଉଁଥି ପାଇଁ ଆଜି ବିଶ୍ୱର ସ୍ଥିତି ଉପଲବ୍ଧ । ପ୍ରଳୟଙ୍କରୀ ବଳ ଏ ବିଶ୍ୱକୁ ରକ୍ଷା କରନ୍ତି । ମାର୍କଣ୍ଡେୟ ପୁରାଣରେ ଶକ୍ତିଙ୍କର ନ'ଟି ରୂପର ଅବତାରଣା କରାଯାଇଛି । ଶକ୍ତି ସଂଗମ ତନ୍ତ୍ରରେ ମାତୃଦେବୀଙ୍କୁ ଦଶମହାବିଦ୍ୟା ଭାବେ ବର୍ଣ୍ଣନା କରାଯାଇଛି । ସେଗୁଡ଼ିକ ହେଲେ - ତାରା, ଷୋଡ଼ଶୀ, ତ୍ରିପୁରା, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳା (ବଗଳା-ମୁଖୀ), ମାତଙ୍ଗୀ ଓ କମଳାମ୍ବିକା (କମଳା) ଦେବୀ । ଭାଗବତ ମହାପୁରାଣ ଶକ୍ତିଙ୍କର ଏକ ସହସ୍ର ରୂପର ଉଲ୍ଲେଖ କରିଛି । ପ୍ରତ୍ୟେକ ରୂପର ବିଶେଷତ୍ୱ ରହିଛି । ପୁନଶ୍ଚ ମାର୍କଣ୍ଡେୟ ପୁରାଣରେ ପ୍ରତ୍ୟେକ ଈଶ୍ୱରଙ୍କର ଏକ ଶକ୍ତିର ନାମ ବ୍ୟକ୍ତ କରାଯାଇଛି, ଯଥା- ବ୍ରହ୍ମାଣୀ, ବୈଷ୍ଣବୀ, ମାହେଶ୍ୱରୀ, ଇନ୍ଦ୍ରାଣୀ, କୌବେରୀ ଇତ୍ୟାଦି । ଯଦିଓ ଏମାନେ ଏକ ମହାନ୍ ଉତ୍ସରୁ ସଂଭୂତା, ତଥାପି କାର୍ଯ୍ୟରେ ପ୍ରତ୍ୟେକ ଅନ୍ୟଠାରୁ ଭିନ୍ନ ।

ପୁରାଣଗୁଡ଼ିକ ଶକ୍ତିର ଗୌରବ ବର୍ଣ୍ଣନା କରି ତାଙ୍କୁ ସୃଷ୍ଟିକାରିଣୀ, ରକ୍ଷାକାରିଣୀ ତଥା ଧ୍ୱଂସକାରିଣୀ ରୂପେ ପ୍ରତିପାଦନ କରିଛନ୍ତି । ବିଶ୍ୱର ରକ୍ଷା ସମୟରେ ଦେବୀ ବହୁ ବାଧାବିଘ୍ନର ସମ୍ମୁଖୀନ ହୁଅନ୍ତି । ସଂଘର୍ଷରେ ବିଜୟିନୀ ହୋଇ ଦୁଷ୍ଟ ଦାନବମାନଙ୍କୁ ପ୍ରତିହତ କରନ୍ତି । ଦୁଷ୍ଟ ବିନାଶ କରି ସନ୍ଥ ପାଳନ କରନ୍ତି । ମଧୁ, କୈଟଭ, ମହିଷ, ଶୁମ୍ଭ ଓ ନିଶୁମ୍ଭ ପ୍ରଭୃତି ପାଞ୍ଚୋଟି ମୁଖ୍ୟ ଅସୁରଙ୍କ ବଳକୁ ବିନାଶ କରି ଦେବୀ ତାଙ୍କର ମହାନ୍ ଶକ୍ତିର ପରାକାଷ୍ଠା ଦେଖାଇଛନ୍ତି । ପାପକ୍ଷୟ କରି ପୁଣ୍ୟର ପ୍ରତିଷ୍ଠା କରାଇଛନ୍ତି । ଉପରୋକ୍ତ ପଞ୍ଚ ଅସୁର ମାନବର ପଞ୍ଚ ଇନ୍ଦ୍ରିୟର ଚିହ୍ନ ସ୍ୱରୂପ । ମାନବ ଏହି ପଞ୍ଚ ଇନ୍ଦ୍ରିୟକୁ ନିଜ ଅକ୍ତିଆରରେ ରଖିପାରିଲେ, ସୁଖ ଶାନ୍ତିରେ ରହିପାରିବ ।

ତନ୍ତ୍ରାନୁସାରେ ଶକ୍ତି ଓ ଶିବ ଅଭିନ୍ନ । ଏମାନେ ହେଉଛନ୍ତି ବ୍ରହ୍ମନ୍‌ଙ୍କର ଦୁଇଟି ଆକାର ସଦୃଶ ।(୧) ପୁରୁଷ ଓ ପ୍ରକୃତି (୨) ଦେବୀ ଶକ୍ତିର ଚଳନଶୀଳ ପ୍ରକୃତି ହେଉଛନ୍ତି ଶକ୍ତି (୩) ସତ୍ୱ, ରଜଃ ଓ ତମଃ ଗୁଣଧାରୀ ବ୍ରହ୍ମନ୍‌ଙ୍କ ସଂପୂର୍ଣ୍ଣ ପରିପ୍ରକାଶ ହେଉଛନ୍ତି ମହାଶକ୍ତି ।(୪) ମହାଶକ୍ତି ହେଉଛନ୍ତି ସମସ୍ତ ଶକ୍ତିର (Energy) ଉତ୍ସ । ଅପରପକ୍ଷରେ ଶିବ ହେଉଛନ୍ତି ସମସ୍ତ ଧ୍ୱଂସକାରିଣୀ ବଳର ଲେଲିହାନ ଶିଖା । ସୃଷ୍ଟି, ସ୍ଥିତି ଓ ପ୍ରଳୟ ଏ ବିଶ୍ୱର ବଳତ୍ରୟ । ସୃଷ୍ଟି ଥିଲେ ପ୍ରଳୟ ଅଛି । ପ୍ରଳୟ ପରେ ପୁଣି ସୃଷ୍ଟିର ସମ୍ଭାବନା ସୁସ୍ପଷ୍ଟ । ଶକ୍ତି ସୃଷ୍ଟିର ନିଦର୍ଶନ ହେଲେ ଶିବ ପ୍ରଳୟର ପ୍ରତୀକ । ଉଭୟେ କିନ୍ତୁ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଗୋଟିଏ ବିନା ଅନ୍ୟର ସ୍ଥିତି ଉପଲବ୍ଧ ନୁହେଁ । ଏଣୁ ଦୈବୀଶକ୍ତିର ଗୋଟିଏ ଅଂଶ ମଧ୍ୟ ପ୍ରଳୟ ବା ଧ୍ୱଂସ । ଜାଳେଣୀରେ ଅଗ୍ନି ସଂଯୋଗରେ ହିଁ ବିରାଟ ଅଗ୍ନିଶକ୍ତିର ଆବିର୍ଭାବ ହୁଏ । ଜାଳେଣୀ ଧ୍ୱଂସ ପାଇଯାଏ କିନ୍ତୁ ଉଦ୍‌ଭବ ହୁଏ ଏକ ମହାନ୍ ଶକ୍ତି, ଯାହାକି ସୃଷ୍ଟିର ସ୍ଥିତିକୁ ବଜାୟ ରଖିବାରେ ବ୍ୟବହୃତ ହୋଇଥାଏ । ଏଣୁ ସୃଷ୍ଟି, ସ୍ଥିତି ଓ ପ୍ରଳୟ ଭିତରେ ଏ ବିଶ୍ୱ ଆତଯାତ ।

ଶାକ୍ତ ତନ୍ତ୍ରରେ ପରାଶକ୍ତିକୁ ସର୍ବୋଚ୍ଚ ସ୍ଥାନ ଦିଆଯାଇଛି, ଶିବ ଓ ଶକ୍ତିର ସମନ୍ୱୟ ହେଉଛି 'ପରା' । ସମସ୍ତ ତତ୍ତ୍ୱର ଉତ୍ସ ହେଉଛନ୍ତି ଶକ୍ତି । ପୁଣି ସମସ୍ତତତ୍ତ୍ୱ ସଂଗଠିତ ହୋଇଛି - ଶକ୍ତିଙ୍କଠାରେ । ଶକ୍ତିଙ୍କର ଦୁଇଟି ଅବସ୍ଥା ବିଦ୍ୟମାନ । ଗୋଟିକରେ ସେ ଶିବଙ୍କ ସହ ସମତୁଲ୍ୟ ଓ ଅନ୍ୟଟିରେ ସର୍ବତତ୍ତ୍ୱର ସମନ୍ୱୟର ପ୍ରତୀକ ସେ (୫) ଶକ୍ତି ହେଉଛନ୍ତି ଶିବଙ୍କର ସଚେତନ ମନର ପ୍ରତିଫଳନ ଯାହାଙ୍କ ସାହାଯ୍ୟରେ ଶିବ ଏ

ମର୍ତ୍ତ୍ୟମଣ୍ଡଳର ସୃଷ୍ଟିରେ ସକ୍ଷମ ହୋଇଛନ୍ତି । ଶିବଙ୍କର ପରାପ୍ରକୃତି ହେଉଛନ୍ତି ଶକ୍ତି । ସେ ହେଉଛନ୍ତି ସମସ୍ତ ଜ୍ଞାନର ଉତ୍ସ । ସେ ସମସ୍ତ ରୂପ ବା ଆକାରର ଅଧିକାରିଣୀ । ପୁଣି ତାଙ୍କର କୌଣସି ଆକାର ନାହିଁ ।(୬) ବ୍ରହ୍ମନ୍‌ଙ୍କର ନିର୍ଦ୍ଦେଶରେ ଶକ୍ତି, ସୃଷ୍ଟି, ସ୍ଥିତି, ପ୍ରଳୟ ଘଟାଇ ଥାଆନ୍ତି ।(୭) ଅନ୍ୟପକ୍ଷରେ ଶିବ ଶକ୍ତିଙ୍କ ମାଧମରେ ସୃଷ୍ଟି, ସ୍ଥିତି, ପ୍ରଳୟର କାର୍ଯ୍ୟ ସଂପାଦନ କରନ୍ତି ।(୮) 'ମାୟା' ମାଧମରେ ଶକ୍ତି ବିଭିନ୍ନ ଆକାର ଧାରଣ କରନ୍ତି ଯଦିଓ ସେ ନିଜେ ଆକାର ବିହୀନ । ଅତଏବ ସୃଷ୍ଟିର ସାଂଖ୍ୟ ମତବାଦ ସହିତ ଶକ୍ତିବାଦର ପୂର୍ଣ୍ଣ ସଂଯୋଗ ରହିଛି ।(୯) ବ୍ରହ୍ମନ୍ ନିଜେ ପରମେଶ୍ୱର । ସେ ମଧ ପରମେଶ୍ୱରୀ ଉପନିଷଦାନୁଯାୟୀ ଶିବ ଓ ଜୀବ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ମାୟା ହେଉଛି ଜୀବ । କିନ୍ତୁ ତାହା ଶିବରେ ପରିଣତ ହୁଏ ଯେତେବେଳେ 'ଶିବୋହମ୍' (ମୁଁ ଶିବ ଅଟେ) ଚିନ୍ତାଧାରା ଜନ୍ମେ ।(୧୦) ଶାକ୍ତ ମତବାଦ ଅନୁସାରେ ଶକ୍ତି ଓ ପୁରୁଷଙ୍କ ମଧ୍ୟରେ ନିବିଡ଼ ସଂପର୍କ ରହିଛି ଯାହାକି ଏ ସୃଷ୍ଟିର ମୂଳମନ୍ତ୍ର । ବେଦାନ୍ତ ମତ ପରି ସମମତ ପୋଷଣ କରି ତନ୍ତ୍ରଗୁଡ଼ିକ ମଧ ଶିବଙ୍କର ଦ୍ୱୈତ ଚରିତ୍ର ଯଥା- ସଗୁଣ ଓ ନିର୍ଗୁଣର ସମାହାର ବିଷୟ ଉଲ୍ଲେଖ କରିଛନ୍ତି । ଆହୁରି ମଧ କୁହାଯାଇଛି ଯେ ସଗୁଣ ଶିବ ସତ୍, ଚିତ୍ ଓ ଆନନ୍ଦର ସମନ୍ୱୟ, ଯେଉଁଠୁ ଶକ୍ତି ଉଦ୍‌ଭବ । ଅତଏବ ଶିବ ଓ ଶକ୍ତି ଏକ ଏବଂ ଅଭିନ୍ନ ।

**ସହାୟକ ଗ୍ରନ୍ଥସୂଚୀ :**


୧. ମହାନିର୍ବାଣ ତନ୍ତ୍ର (୧.୧)
୨. D.N. Bose and Maldar, Tantras; Their Philosophy, p.74.
୩. ମହାନିର୍ବାଣ ତନ୍ତ୍ର, ୪. (୧୦-୧୧)
୪. ଦେବୀ ଭାଗବତ, ୧.୨ (୫-୮)
୫. ଶକ୍ତି ସଂଗମ ତନ୍ତ୍ର କାଳିଖଣ୍ଡ, ୧.୧୧୨-୧୧୬
୬. ମହାନିର୍ବାଣ ତନ୍ତ୍ର, ୫. (୧୦-୧୫)
କାଳିତନ୍ତ୍ର, ୯.୨୨
୭. ମହାନିର୍ବାଣ ତନ୍ତ୍ର, ୪. (୩୦-୩୪)
୮. ତତ୍ରୈବ, ୪.(୨୩-୨୭)
୯. Sinha, J.N. A History of Indian Philosophy, vol.-II, p.746.
୧୦. କୁଳାର୍ଣ୍ଣବ ତନ୍ତ୍ର, ୯-୪୨


'ଦିବ୍ୟଦ୍ୟୁତି'
ଦେବୋତ୍ତର କଲୋନୀ, ନୟାଗଡ଼-୭୫୨୦୬୯

---

# ଆବାହନୀ

ସବିତା ରଥ

ସୁନ୍ଦର ଏ ପୃଥିବୀରେ
ଅଧିକ ମଧୁର ଲାଗେ
ତୁମର ଏ ଆବାହନୀ ପୂଜା ।

ଚେତନାର ଚିତ୍ତ ଚିରି
ଉଦ୍‌ଭ୍ରାନ୍ତ ଆତ୍ମାରେ
ଉଡ଼େ ମମତାର ଧ୍ୱଜା ।

ଏବେ ବି ସରିନି ତୁମ
ସଂହାରର ପର୍ବ,
ଏବେ ବି ମେରୁ ପର୍ବତ
ଫାଟିପଡ଼େ ମହିଷାର ଅଟ୍ଟହାସ୍ୟେ
ଲାଗେ ଆଉ ସବୁ ନୀରବ ନୀରବ ।

ଏବେ ବି କାମାସୁର
ଦଳିଯାଏ କଅଁଳ କଢ଼ିକୁ
ଗର୍ବ, ଦର୍ପ, ଅହଂକାରେ
ଆହ୍ୱାନୁଛି ଆପଣା ମାଆକୁ ।

ହେ ! ଜଗତ କଲ୍ୟାଣମୟୀ
ଶରତର ଏ ବିମଳ ପ୍ରଭାତେ
ନିଜ ଭାଗ୍ୟ ନିଜେ ଗଢ଼ିବାକୁ
ନାରୀକୁ କରିଦେ ମା' ଚିରଶକ୍ତିମୟୀ ।

ଦୋଳମଣ୍ଡପ ସାହି
ହାବେଳି ଗଳି, ପୁରୀ



# ଓଡ଼ିଶାର ଅଷ୍ଟଚଣ୍ଡୀ ଓ କାକଟପୁରର ମଙ୍ଗଳା

ଶ୍ରୀନିବାସ ଆଚାର୍ଯ୍ୟ

ନିଖିଳ ବ୍ରହ୍ମାଣ୍ଡକୁ ପାପଭାରାରୁ ମୁକ୍ତି କରିବା ପାଇଁ ପ୍ରତ୍ୟେକ ଯୁଗରେ ବିଭିନ୍ନ ରୂପରେ ଦେବାଦେବୀମାନେ ଧରାପୃଷ୍ଠରେ ଆବିର୍ଭୂତ ହୋଇଥାଆନ୍ତି । ଯୁଗ ପରେ ଯୁଗ ଅତିବାହିତ ହୋଇଯାଇଥିଲେ ମଧ୍ୟ ଦେବାଦେବୀଙ୍କ ପୀଠ ଓ ମହିମା ସଦାସର୍ବଦା ଲୋକଲୋଚନରେ ଲିପିବଦ୍ଧ ହୋଇ ରହିଥାଏ । ଆଜି ଦେବାଦେବୀଙ୍କ ଦ୍ୱାରା ଘଟି ଯାଇଥିବା ଘଟଣାଗୁଡ଼ିକର ସତ୍ୟାସତ୍ୟ ତଥା ଦୁଷ୍ଟ ଦଳନ ଓ ସନ୍ଥ ପାଳନ କିମ୍ବଦନ୍ତୀ ବିଭିନ୍ନ ଧର୍ମଶାସ୍ତ୍ରରେ ଲିପିବଦ୍ଧ । ସେଗୁଡ଼ିକ ହେଲା ମହାଭାରତ, ରାମାୟଣ, ଭାଗବତ, ଗୀତା, ପୁରାଣ, ବାଇବେଲ ଓ କୋରାନ୍ ଇତ୍ୟାଦି । ଆଉ ମଧ୍ୟ ତତ୍କାଳୀନ ସମୟରୁ ବିଭିନ୍ନ ପବିତ୍ର ଓ ଧର୍ମପୀଠରେ ପୃଥିବୀର ଶାନ୍ତି କାମନା ନିମନ୍ତେ ବିଧିବିଧାନ ସହିତ ଶଙ୍ଖ, ହରିବୋଲ ଓ ହୁଳହୁଳିର ଆଧ୍ୟାତ୍ମିକ ବାଣୀ ନିନାଦିତ ହୁଏ ମନ୍ଦିର, ମଠ, ଆଶ୍ରମ, ଧର୍ମପୀଠ, ଗାଦୀ, ମସ୍‌ଜିଦ୍ ଓ ଗୀର୍ଜା ଇତ୍ୟାଦିରେ । ମା' ଦେବୀ ବିଭିନ୍ନ ନାମରେ ସୁମଣ୍ଡିତ ହୋଇଥାନ୍ତି । ଓଡ଼ିଶାର ଶକ୍ତି ଉପାସନାର ପରମ୍ପରା ଅତି ପ୍ରାଚୀନ ଓ ମହାନ୍ । ଶୈବ ଓ ବୈଷ୍ଣବ ମତବାଦର ମିଳନ ଯୋଗୁଁ ସୃଷ୍ଟି ହୋଇଥାଏ ଶକ୍ତି ବା ଶାକ୍ତପୀଠ । ଦୁର୍ଗାଙ୍କର ସହସ୍ରନାମ ମଧ୍ୟରୁ ଅଷ୍ଟଚଣ୍ଡୀଙ୍କ ନାମ ଅନ୍ୟତମ । ଦକ୍ଷଯଜ୍ଞର କାହାଣୀ ଅନୁସାରେ ଭଗବାନ ବିଷ୍ଣୁ ସୁଦର୍ଶନ ଚକ୍ରଦ୍ୱାରା ପତିନିନ୍ଦା ଶ୍ରବଣରେ ଶିବପତ୍ନୀ ସତୀର ମୃତ ଦେହକୁ ଖଣ୍ଡ ଖଣ୍ଡ କରି ପକାଇଥିଲେ । ସତୀଙ୍କ ଦେହାଂଶଗୁଡ଼ିକ ଯେଉଁ ଯେଉଁ ସ୍ଥାନରେ ପଡ଼ିଥିଲା, ସେହି ସ୍ଥାନଗୁଡ଼ିକ ଶକ୍ତି ବା ଶାକ୍ତପୀଠଭାବେ ପରିଚିତ ହେଲା । ମାତୃଶକ୍ତି ହେଉଛି ସର୍ବ ଶକ୍ତିଶାଳୀ, ବଳଶାଳୀ ଓ ତ୍ରିଲୋକ ବିଜୟିନୀ । ସମସ୍ତ ଦେବତା ତଥା ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ସୂର୍ଯ୍ୟ, ଚନ୍ଦ୍ର ଓ ଯମ ଇତ୍ୟାଦିଙ୍କ ବଳଠାରୁ ମାତୃରୂପିଣୀ ଓ ଦୁର୍ଗତିନାଶିନୀ ମା' ଦୁର୍ଗାଙ୍କର ଶକ୍ତି ଅଧିକ । ପ୍ରତ୍ୟେକ ଶକ୍ତିପୀଠରେ ଶାରଦୀୟ ପୂଜାର ନିଜସ୍ୱ ବିଶେଷତ୍ୱ ପରିଲକ୍ଷିତ ହେଉଛି । ଅଷ୍ଟଚଣ୍ଡୀଙ୍କ ପୀଠରେ ମଧ୍ୟ ପ୍ରତିବର୍ଷ ଏହି ପୂଜା ଭକ୍ତିପୂତ ଓ ପବିତ୍ରତା ସହିତ ନୀତି ଓ ପରମ୍ପରାରେ ପାଳନ କରାଯାଇଥାଏ । କେଉଁଠି ମା' ଦେବୀ ଦ୍ୱିଭୁଜା ତ ଅନ୍ୟକେଉଁଠି ଅଷ୍ଟଭୁଜା । କେଉଁଠି ପରମ ବୈଷ୍ଣବୀ ତ ଅନ୍ୟକେଉଁଠି କାତ୍ୟାୟନୀ । କେଉଁଠି ଷୋଡଶୀ ତ୍ରିପୁର ସୁନ୍ଦରୀ ତ ଆଉ କେଉଁଠି ନରମୁଣ୍ଡମାଳିନୀ । ଏହି ବିଭିନ୍ନତା ହିଁ ଓଡ଼ିଶାର ସମୃଦ୍ଧ ଶାକ୍ତ ପରମ୍ପରାର ବିଶେଷତ୍ୱ ।

ତ୍ରେତୟା ଯୁଗରେ ମାୟାବୀ ଅସୁର ମହିଷାସୁରର ଅତ୍ୟାଚାରରେ ମାନବ ସମାଜ ତ ଦୂରର କଥା ଦେବତାମାନଙ୍କର ଆସନ ମଧ୍ୟ ଟଳମଳ ହୋଇଥିଲା । ଦୁର୍ଦ୍ଦାନ୍ତ ମହିଷାସୁରର ଅତ୍ୟାଚାରଜନିତ ତାଡ଼ନାରେ ଦେବତାମାନେ ଭୟଭୀତ ହୋଇ ଲୁକ୍କାୟିତ ଭାବରେ କାଳାତିପାତ କରୁଥିଲେ । ଏପରିକି ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତ୍ରିଭୁବନ ତା'ର ଦୌରାତ୍ମ୍ୟର ଶୀକାର ହେଉଥିଲେ । ସେ ଥିଲା ପ୍ରବଳ ପ୍ରତାପୀ ଦାନବ, କୁଶଳୀ ଓ ମାୟାବୀ । ମାୟାବଳରେ ସେ ଥିଲା ସମସ୍ତ ଦେବତାଙ୍କଠାରୁ ମହାଶକ୍ତିଶାଳୀ । ତା'ରି ଅତ୍ୟାଚାରରେ ଅତିଷ୍ଠ ହୋଇ ଓ ଦୁର୍ଗତିରୁ ରକ୍ଷା ପାଇବା ପାଇଁ ସମସ୍ତ ଦେବତା ମା' ଦୁର୍ଗତିନାଶିନୀ ଦେବୀଦୁର୍ଗାଙ୍କୁ ଆରାଧନା କରିଥିଲେ । ବିଶ୍ୱର ସୃଷ୍ଟି, ସ୍ଥିତି ଓ ପ୍ରଳୟର ମୂଳ ଉତ୍ସ ହେଉଛନ୍ତି ମାତୃରୂପୀ ମା' ଦୁର୍ଗା । ମା' ଦୁର୍ଗା ସମସ୍ତ ଦେବତାମାନଙ୍କର ଶକ୍ତି, ତେଜ, ଅସ୍ତ୍ର ଓ ଭୁଜା ଧାରଣ କରି ମହାପ୍ରତାପ ଦୁର୍ଦ୍ଦାନ୍ତ ମହିଷାସୁରକୁ ବଧ କରି ଧରାପୃଷ୍ଠରେ ଶାନ୍ତି ଫେରାଇ ଆଣିଥିଲେ । ଆଶୀର୍ବାଦ ଦାୟିନୀ ମା' ଦୁର୍ଗାଙ୍କର ଅନ୍ୟନାମ ହେଉଛି ଶ୍ରୀଚଣ୍ଡୀ । ଶୁମ୍ଭାସୁରର ସେନାନୀ ଚଣ୍ଡ ଓ ମୁଣ୍ଡଙ୍କୁ ହତ କରି ଏହି ଦେବୀ ଚଣ୍ଡୀ ନାମରେ ଅଭିହିତ ହୋଇଥିଲେ । ଏହି ଚଣ୍ଡୀ ପୁଣ୍ୟମୟୀ ଓଡ଼ିଶା ଭୂମିରେ ବିଭିନ୍ନ ପୀଠରେ ବିଚିତ୍ରମୟୀ ଶରୀରଗଠନ, ବେଶ, ପୋଷାକ, ଅଳଙ୍କାର ଇତ୍ୟାଦି ପରିଧାନ କରି ପରମ୍ପରାର ରୀତିନୀତିରେ ବିରାଜିତା । ସେ ହେଉଛନ୍ତି ଦୟା ଓ କ୍ଷମାର ସାଗର । ଶ୍ରୀମଙ୍ଗଳା ମହାପୁରାଣରେ ଓଡ଼ିଶାର ପ୍ରଧାନ ପ୍ରଧାନ ଆଠଟି ପୀଠରେ ବିଗ୍ରହ ପୂଜା ପାଉଥିବାର ଉଲ୍ଲେଖ ଅଛି ।

'ବାଣପୁରରେ ଭଗବତୀ, ଶ୍ରୀକ୍ଷେତ୍ରେ ବିମଳା,
କାକଟପୁରରେ ରହିଲୁ ନାମ ତୋ ମଙ୍ଗଳା ।
ଝଙ୍କଡେ ଶାରଳା ନାମ ଅଟଇ ତୋହର,
ବିରଜାଈ ନାମେ ବିଜେ କଲୁ ଯାଜପୁର ।
ବାଙ୍କିରେ ନାମ ତୋହର ଅଟେ ଚର୍ଚ୍ଚିକାଇ,
ସମ୍ବଲପୁରରେ ନାମ ରହିଲୁ ସମଲାଇ ।
ତାଳଚେରରେ ହିଙ୍ଗୁଳା ନାମ ତୋ'ର ମାଆ,
ଏହିପରି ଖ୍ୟାତ ତୋ'ର ଆଠଗୋଟି ନାଆଁ ।।'

**ବାଣପୁରର ଭଗବତୀ ପୀଠ -** ଓଡ଼ିଶାର ସମୃଦ୍ଧ ଶାକ୍ତ ପରମ୍ପରାରେ ବାଣପୁରର ମା' ଭଗବତୀଙ୍କର ବିଶେଷ ମହିମା ରହିଛି । ମା' ଭଗବତୀଙ୍କୁ ମଧ୍ୟ ଶ୍ମଶାନ ବାସିନୀ, ଅରଣ୍ୟବାସିନୀ ବୋଲି ବର୍ଣ୍ଣନା କରାଯାଇଛି । କେହି କେହି ଏହି ପୀଠକୁ ଏକ ତାନ୍ତ୍ରିକ ପୀଠ ବୋଲି କହିଥାନ୍ତି । ଶାରଦୀୟ ଦୁର୍ଗାପୂଜା ବିଭିନ୍ନ ବିଧିବିଧାନ, ନୀତି ଓ ପରମ୍ପରାରେ ଷୋହଳ ଦିନ ବ୍ୟାପୀ ହୋଇଥାଏ । ପ୍ରଥମ ସାତଦିନ ସାତଟି ବଖରା ଘରେ ପୂଜା ହୋଇଥିଲାବେଳେ ଅନ୍ୟ ନଅଦିନ ପୂଜା ଭଗବତୀଙ୍କ ପୀଠରେ ହୋଇଥାଏ । ମା' ଭଗବତୀଙ୍କୁ ଏଠାରେ ପରମ ବୈଷ୍ଣବୀ ଭାବେ ପରିକଳ୍ପନା କରାଯାଇଅଛି । ତେଣୁ ପ୍ରତ୍ୟହ ଦଶଟି ଗୁଆ ଓ ମହାପ୍ରସାଦ ଖଟଣୀ ପରେ ପୂଜା କାର୍ଯ୍ୟ ଆରମ୍ଭ ହୋଇଥାଏ । ଆଉ ମଧ୍ୟ ଏହି ପୀଠରେ ତୁଳସୀପତ୍ର ଲାଗି ହେବାର ବ୍ୟବସ୍ଥା ଅଛି । ଏହି ପୀଠର ବୈଶିଷ୍ଟ୍ୟ ହେଲା ଯେ ମା'ଙ୍କର ଅଷ୍ଟଭୁଜା ମହିଷମର୍ଦ୍ଦିନୀ ମୂର୍ତ୍ତି ସର୍ବସାଧାରଣରେ ଭକ୍ତଙ୍କ ଦର୍ଶନ ପାଇଁ ଉଦ୍ଦିଷ୍ଟ ନୁହନ୍ତି । ଯେଉଁ ପ୍ରତିମାକୁ ପୂଜା କରାଯାଏ, ତା'ର ପଛପଟେ ବସ୍ତ୍ର ଦ୍ୱାରା ଆବୃତ ହୋଇ ମୂଳ ବିଗ୍ରହଟି ରଖାଯାଇଥାଏ । ସେହି ପ୍ରାଚୀନ ପରମ୍ପରାକୁ ଜୀବନ୍ତ ରଖିବା ପାଇଁ 'ବଳିଯେନା' ନାମରେ ନୀତି ପାଳନ କରାଯାଉଅଛି ।

**ଶ୍ରୀକ୍ଷେତ୍ରର ବିମଳା ପୀଠ**

ଓଡ଼ିଶାର ବଡ଼ଠାକୁର ତଥା ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ପୀଠରେ ମହାମୟୀ ବିମଳାଙ୍କ ପୀଠ ଅବସ୍ଥିତ । ଶ୍ରୀଜଗନ୍ନାଥଙ୍କ ଧାମ ଶ୍ରୀକ୍ଷେତ୍ରରେ ମା' ବିମଳାଙ୍କ ଷୋହଳ ଦିନ ପୂଜା ସମଗ୍ର ଭାରତବର୍ଷରେ ବିରଳ । ଏକାଧାରରେ ଏହି ପୀଠକୁ ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମର କେନ୍ଦ୍ର ପୀଠସ୍ଥଳୀ ବୋଲି କୁହାଯାଇଥାଏ । ଶାରଦୀୟ ଷୋହଳ ଦିବସୀୟ ପୂଜାରେ ମା' ବିମଳା ମହାପ୍ରଭୁ ପରଂବ୍ରହ୍ମ ପରମେଶ୍ୱର ଶ୍ରୀଜଗନ୍ନାଥଙ୍କ ସହିତ ଦୁର୍ଗା ମାଧବ ନାମରେ ପୂଜା ପାଆନ୍ତି । ଏଠାରେ ରାଧାରାଣୀ ଦୁର୍ଗା (ବିମଳା ବା ସୁଭଦ୍ରା)ଙ୍କ ସହ କୃଷ୍ଣରୂପୀ (ମାଧବ ବା ଶ୍ରୀଜଗନ୍ନାଥଙ୍କୁ) ପରିକଳ୍ପନା କରାଯାଇ ପୂଜା କରାଯାଉଅଛି । ଆଉ ମଧ୍ୟ କାଳିକା ପୁରାଣରେ ଉଡ୍‌ଡୀୟାନ ପୀଠର ଭୈରବୀ ବିମଳା ଓ ଭୈରବ ନୀଳାଚଳ ଶ୍ରୀଜଗନ୍ନାଥଙ୍କୁ ଉଲ୍ଲେଖ କରାଯାଇଛି । ଶ୍ରୀଜଗନ୍ନାଥଙ୍କ ପ୍ରସାଦ ମା' ବିମଳାଙ୍କ ପାଖକୁ ଅଣାଯାଇ ପୁନର୍ବାର ମା'ଙ୍କ ପାଖରେ ସମର୍ପିତ ହେଲେ, ତାହା ମହାପ୍ରସାଦ ହୋଇଥାଏ । ବିମଳାଙ୍କ ନିକଟରେ ଷୋହଳ ଦିନ ପୂଜାରେ କୋଠଭୋଗ, ପିଠା, ଖେଚେଡି ଇତ୍ୟାଦି ଷୋଡଶ ଉପଚାରରେ ପବିତ୍ର ପରମ୍ପରା ସହିତ ପୂଜା କରାଯାଇଥାଏ । ମା'ଙ୍କ ନିକଟରେ କୌଣସି ମାନସିକ ବଳି ପଡ଼େ ନାହିଁ । ବଳି ସବୁ କାକୁଡ଼ି ଖାଇ ଠାକୁରାଣୀଙ୍କ ପାଖରେ ପଡ଼ିଥାଏ । ଯେହେତୁ ମା' ବିମଳାଙ୍କ ପୀଠ ବିଶ୍ୱର ଏକ ଆଧ୍ୟାତ୍ମିକ ଧାମ ତଥା ପବିତ୍ର ଧର୍ମ ପୀଠ ନାମରେ ସୁବିଦିତ, ତେଣୁ ଏହାର ଦୈନନ୍ଦିନ ପୂଜା ପଦ୍ଧତି ଓ ଶାରଦୀୟ ପୂଜାର ରୀତିନୀତି, ମେଳା, ମହୋତ୍ସବ, ପରମ୍ପରା ଓ ସଂସ୍କୃତିର ଐତିହ୍ୟ ଅତି ମହାନ୍ ଓ ପବିତ୍ର ଅଟେ ।

**ଝଙ୍କଡ଼ର ଶାରଳା ପୀଠ**

ଝଙ୍କଡ଼ବାସିନୀ ମା' ଶାରଳାଙ୍କ ପୀଠ ହେଉଛି ଶାକ୍ତ ଓ ବୈଷ୍ଣବ ଧର୍ମ ଓ ପରମ୍ପରାର ମହାନ କ୍ଷେତ୍ର । ଏହି ପୀଠ ସମଗ୍ର ଭାରତବର୍ଷରେ ଏକ ତନ୍ତ୍ରପୀଠ ଭାବରେ ଖ୍ୟାତି ଲାଭ କରିଛି । କଥିତ ଅଛି ଆଦିକବି ସାରଳା ଦାସ ମା' ଶାରଳାଙ୍କ କୃପା ଲାଭ କରି ମହାଭାରତ ଲେଖିବାରେ ସମର୍ଥ ହୋଇଥିଲେ । ମା' ଶାରଳା ହେଲେ ଅଷ୍ଟଭୁଜା ଓ ସିଂହବାହିନୀ । ମା'ଙ୍କ ସହିତ ଏହି ପୀଠରେ ଜୟଦୁର୍ଗା ଓ ବନଦୁର୍ଗା ଦୁଇଟି ବିଗ୍ରହ ପୂଜା ପାଉଛନ୍ତି । ଏହି ପୀଠରେ ଉଭୟ ବ୍ରାହ୍ମଣ ଓ ଶୂଦ୍ର ଜାତିର ପୂଜକ ପୂଜା କରିବାର ବିଧିବିଧାନ ଅଛି । ଶାରଦୀୟ ଷୋହଳ ଦିନ ପୂଜାରେ ଏଠାରେ ମହାନ୍ ପରମ୍ପରା ଓ ବିଧିବିଧାନ ସହିତ ପୂଜା କରାଯାଇଥାଏ । ମା'ଙ୍କୁ ବିରିପିଠା ବଳି ଦିଆଯିବା ସଂଗେସଂଗେ କଂସା ପାତ୍ରରେ ପଇଡ଼ପାଣି ନୈବେଦ୍ୟ ଲାଗି କରାଯାଇଥାଏ । ଷୋହଳଦିନ ପୂଜା ଭିତରେ ଅଷ୍ଟମୀ ତିଥିରେ ରାତିରେ ଜାକଜମକରେ ପୂଜା କରିବା ସଂଗେସଂଗେ ବିରିପିଠା ବଳି ଦିଆଯାଇଥାଏ । ଆଉ ମଧ୍ୟ ଏଠାରେ ପ୍ରତ୍ୟହ ପ୍ରସାଦ ସମର୍ପଣ କରାଯିବାର ବିଧିବିଧାନ ଅଛି ।

**ଯାଜପୁରର ବିରଜା ପୀଠ**

ଐତିହାସିକ ପ୍ରସିଦ୍ଧ ଯାଜପୁରର ପୁଣ୍ୟତୋୟା ବୈତରଣୀ ନଦୀତଟସ୍ଥ ଗଙ୍ଗବଂଶୀୟ ରାଜତ୍ୱର ମୂକସାକ୍ଷୀ ଅଶ୍ୱମେଧ ଘାଟ ସମୀପରେ ମା' ବିରଜାଙ୍କ ପୀଠ ବିରାଜିତ । ଏହା ଏକ ଆଦିଶକ୍ତି ପୀଠ ଭାବରେ ଭାରତ ଇତିହାସ ଓ ପୌରାଣିକ ଦୃଷ୍ଟିକୋଣରୁ ସୁବିଖ୍ୟାତ ଲାଭ କରିଅଛି । ପଣ୍ଡିତ ଭୁପତି ମିଶ୍ରଙ୍କ ମତରେ ମା'ଙ୍କର ନାଭି ଏଠାରେ ପଡ଼ିଥିବାରୁ ବିରଜା ପୀଠ ଏକ ଶକ୍ତି ପୀଠ ଭାବରେ ମଧ୍ୟ ସୁବିଦିତ । ଏହି ବିଗ୍ରହଟିର ମସ୍ତକରେ ପାଞ୍ଚଟି ମୁଦ୍ରା ଗଣେଶ, ବାସୁକୀ, ଯୋନି, ଲିଙ୍ଗ ଓ ଚନ୍ଦ୍ର ଶୋଭା ପାଇବା ସଂଗେସଂଗେ ଷୋଡଶୀ ତ୍ରିପୁର ସୁନ୍ଦରୀ ଭାବେ ପରିକଳ୍ପନା କରାଯାଇଛି । ଷୋଡଶ ଉପଚାର ପୂଜାରେ ବଳିପଡ଼ିବାର ବ୍ୟବସ୍ଥା ନାହିଁ । ତଥାପି ଏଠାରେ

ଅଷ୍ଟମୀ ଦିନ ଛାଗବଳୀ ଓ ମହାନବମୀ ଦିନ ମହାପଶୁବଳି ଦିଆଯାଇଥାଏ । ସେ ବାମହସ୍ତରେ ମହିଷକୁ ଧରି ଦକ୍ଷିଣ ହସ୍ତରେ ଶୂଳଭେଦ କରୁଛନ୍ତି । ମହାନବମୀ ଦିନ ମଧ୍ୟରାତ୍ରିରେ ବିଗ୍ରହକୁ ଲାଖବିନ୍ଧା ନାମକ ଏକ ପଡ଼ିଆକୁ ନିଆଯାଇ ମହାଆଡ଼ମ୍ବରପୂର୍ଣ୍ଣ ଭାବରେ ପୂଜା କରାଯାଇଥାଏ ଓ ଚାରି ଦିଗକୁ ଚାରୋଟି ଶର ବିନ୍ଧା ଯିବାର ବ୍ୟବସ୍ଥାମାନ ଅଛି । ଏଠାରେ ଷୋଡ଼ଶ ପୂଜାର ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇଅଛି । ପ୍ରତିପଦାଠାରୁ ନବମୀ ଦିନ ପର୍ଯ୍ୟନ୍ତ ମା'ଙ୍କୁ ରଥରେ ବସାଇ ବେଢ଼ା ଭିତରେ ଭ୍ରମଣ କରାଯାଇଥାଏ । ଏହି ପୀଠରେ ଲକ୍ଷ ଲକ୍ଷ ଭକ୍ତ ପିଣ୍ଡଦାନ କରି ପିତୃଲୋକଙ୍କର ମୁକ୍ତି କାମନା କରିବା ସଂଗେସଂଗେ ଆଶୀର୍ବାଦ ଭିକ୍ଷା କରିଥାନ୍ତି । ଏକାଧାରରେ ଏହା ଏକ ଧର୍ମ ପୀଠ, ଯଜ୍ଞ ପୀଠ, ପିଣ୍ଡ ପୀଠ, ପୌରାଣିକ ପୀଠ ଓ ଐତିହାସିକ ପୀଠ ଭାବରେ ଖ୍ୟାତି ଲାଭ କରିଛି ।

**ବାଙ୍କିର ଚର୍ଚ୍ଚିକା ପୀଠ**

ମହାନ ଓ ପବିତ୍ର ମହାନଦୀର ତଟଦେଶରେ ବାଙ୍କିର ରଚିକ ପାହାଡ଼ର ଶୀର୍ଷ ଭାଗରେ ମା' ଚର୍ଚ୍ଚିକାଙ୍କ ପୀଠ ଓଡ଼ିଶାର ଅନ୍ୟତମ ଶକ୍ତି ପୀଠ ଭାବରେ ସୁପ୍ରସିଦ୍ଧି ଲାଭ କରିଅଛି । ଆଉ ମଧ୍ୟ କେହି କେହି ଏହି ପୀଠକୁ ଚାମୁଣ୍ଡା ପୀଠ ଭାବରେ ଅଭିହିତ କରିଥାଆନ୍ତି । କଥିତ ଅଛି, ବୀର ପର୍ଶୁରାମ ଏହି ପୀଠରେ ମା'ଙ୍କୁ ପୂଜାକରି ସିଦ୍ଧିଲାଭ କରିଥିଲେ । ମହାଆଡ଼ମ୍ବରପୂର୍ଣ୍ଣ ରୀତିନୀତିରେ ଓ ପରମ୍ପରାରେ ଏଠାରେ ଷୋଡ଼ଶ ଉପଚାର ଶାରଦୀୟ ପୂଜା ପାଳନ କରାଯାଇଥାଏ । ମା' ଚର୍ଚ୍ଚିକା ତାଙ୍କ ଅଷ୍ଟଭୁଜାରେ ଖଡ଼୍ଗ, ତ୍ରିଶୂଳ, ସର୍ପ, ଅଙ୍କୁଶ, ଅକ୍ଷମାଳ ଛିନ୍ନମସ୍ତକ, ଡମ୍ବରୁ ଓ ନରମୁଣ୍ଡମାଳ ଧାରଣ କରି ଉଲଗ୍ନ ଅବସ୍ଥାରେ ଶିବଙ୍କ ଉପରେ ବିରାଜମାନ କରିଥାନ୍ତି । ମହାଅଷ୍ଟମୀ ଓ ନବମୀ ଦିନ ଏଠାରେ ବଳି ପଡ଼ିବାର ବ୍ୟବସ୍ଥା ଅଛି । ସେହି ବଳିର ରକ୍ତ ମା'ଙ୍କ ପାଖରେ ନୈବେଦ୍ୟ କରାଯାଇଥାଏ । ଏହି ପୀଠର ପୂଜା କାର୍ଯ୍ୟ ରାଜଗୁରୁଙ୍କ ଦ୍ୱାରା କରାଯାଇଥାଏ । ଏହି ପୀଠର ଅନ୍ୟତମ ବୈଶିଷ୍ଟ୍ୟ ହେଉଛି କେବଳ ବାଙ୍କିର ରାଜା ଓ ପୁରୀ ଗଜପତି ମହାରାଜାଙ୍କ ବ୍ୟତୀତ ଅନ୍ୟ ବ୍ୟକ୍ତିମାନଙ୍କୁ ମନ୍ଦିରର ଗମ୍ଭୀରା ଭିତରକୁ ପ୍ରବେଶ ନିଷିଦ୍ଧ ଅଟେ ।

**ସମ୍ବଲପୁରର ସମଲାଈ ପୀଠ**

ଓଡ଼ିଶାରେ ଥିବା ଶକ୍ତି ପୀଠ ମଧ୍ୟରେ ସମ୍ବଲପୁରର ସମଲାଇ ପୀଠ ସମଗ୍ର ଭାରତରେ ପ୍ରସିଦ୍ଧି ଲାଭ କରିଅଛି । ଏଠାକାର ପୂଜା ପରମ୍ପରାର ପଦ୍ଧତି ସ୍ୱତନ୍ତ୍ର ଅଟେ । ଏଠାରେ 'ପିଠାବଳି'ର ବ୍ୟବସ୍ଥା ଅଛି । ଏହି ବଳି କନ୍ଧ ସମ୍ପ୍ରଦାୟର ଭକ୍ତମାନେ ଦିଅନ୍ତି । ତେଣୁ ଏଠାରେ ବ୍ରାହ୍ମଣ ପୂଜକ ପରିବର୍ତ୍ତେ ଅନ୍ୟଜାତିର ପୂଜକ ପୂଜା କରନ୍ତି । ଏହି ବିଗ୍ରହକୁ ବୈଷ୍ଣବୀ ତନ୍ତ୍ରରେ ପୂଜା କରାଯାଇଥାଏ । ମନ୍ଦିରର ଚତୁଃପାର୍ଶ୍ୱରେ ଓ କାନ୍ଥରେ ଦଶ ମହାବିଦ୍ୟାଙ୍କ ଶୋଭା ମଣ୍ଡନ କରିଛି । ଗମ୍ଭୀରା ଭିତରେ ଚଣ୍ଡୀ, ଚାମୁଣ୍ଡୀ, ଛତ୍ରବାଉଟି, ଉଗ୍ରତାରା, ଦୁର୍ଗା, ମଙ୍ଗଳା, ଜ୍ୱଳାମୁଖୀ, ବନଦୁର୍ଗା, ବରାହୀ, ଛିନ୍ନମସ୍ତା ରାମଚଣ୍ଡୀ ଓ କାଳୀ ପୂଜା ପାଉଛନ୍ତି । ଏଠାରେ ପାଳିତ ହେଉଥିବା ପର୍ବ ମଧ୍ୟରେ ଦଶହରା ପର୍ବ ପ୍ରଧାନ ଅଟେ । ଶାରଦୀୟ ପୂଜା ସମୟରେ ଏଠାକାର ଆଖଡା ଖେଳ ଲକ୍ଷ ଲକ୍ଷ ଭକ୍ତମାନଙ୍କୁ ଆକୃଷ୍ଟ କରିଥାଏ । ସିଂହବାହିନୀ ତଥା ଶକ୍ତି ସ୍ୱରୂପିଣୀ ଆଦିଶକ୍ତି ମା' ସମଲେଶ୍ୱରୀ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଲାଭ ଆଶୀର୍ବାଦ ଦେଇଥିବାର ବିଶ୍ୱାସଭାଜନ ହୋଇପାରିଛନ୍ତି । ସମ୍ବଲପୁରର ଅଧିଷ୍ଠାତ୍ରୀ ଦେବୀ ମା' ସମଲେଶ୍ୱରୀଙ୍କ ପାଖରେ ନୂଆଖାଇ ଭୋଗ ଲାଗିବା ପରେ ଅନ୍ୟମାନେ ନୂଆ ଖାଆନ୍ତି । ପଶ୍ଚିମ ଓଡ଼ିଶା ଜନସାଧାରଣଙ୍କ ପାଇଁ ନୂଆଖାଇ ଏକ ପ୍ରସିଦ୍ଧ ପର୍ବ ।

**ତାଳଚେରର ହିଙ୍ଗୁଳା ପୀଠ**

ଆଶୀର୍ବାଦ ଦାୟିନୀ ଓ ଶାନ୍ତି କାମିନୀ ମା' ହିଙ୍ଗୁଳାଙ୍କ ପୀଠ ତାଳଚେରଠାରେ ପ୍ରସିଦ୍ଧିଲାଭ କରିଅଛି । ମା' ହିଙ୍ଗୁଳା ହେଉଛନ୍ତି ସାଂପ୍ରଦାୟିକ ସଦ୍‌ଭାବର ପ୍ରତୀକ । ଏହି ଦେବୀଙ୍କୁ ଉଭୟ ହିନ୍ଦୁ ଓ ମୁସଲମାନ ଏବଂ ସ୍ତ୍ରୀ ପୁରୁଷ ପୂଜା କରିବାର ବିଧିବିଧାନ ଅଛି । ଏଠାରେ ଷୋଡ଼ଶ ଉପଚାର ପୂଜା ମହାଆଡ଼ମ୍ବରପୂର୍ଣ୍ଣ ଓ ଜାକଜମକରେ ପାଳନ କରାଯାଏ । ପୁରାଣର କାହାଣୀ ଅନୁସାରେ ପୁରୀ ଶ୍ରୀଜଗନ୍ନାଥଙ୍କର ଛପନ ପଉଟି ଭୋଗ ସୁସ୍ୱାଦ ହେବାପାଇଁ ଗଜପତି ମହାରାଜାଙ୍କୁ ସ୍ୱପ୍ନାଦେଶ ହେଲା ଯେ, ହିଙ୍ଗୁଳା ଦେବୀଙ୍କ ଆଶୀର୍ବାଦରେ ମହାପ୍ରସାଦ ସୁସ୍ୱାଦ ହେବ । ତେଣୁ ଗଜପତି ମହାରାଜା ହିଙ୍ଗୁଳାଙ୍କ ଶରଣାପନ୍ନ ହୋଇ ଶବରରାଜାଙ୍କ ପରାମର୍ଶକ୍ରମେ ମା' ଦେବୀଙ୍କୁ ଶ୍ରୀକ୍ଷେତ୍ର ଆଣିବାରେ ସମର୍ଥ ହୋଇଥିଲେ । ସେହିଦିନଠାରୁ ଜଗନ୍ନାଥଙ୍କ ରୋଷ ପୀଠକୁ ହିଙ୍ଗୁଳା ପୀଠ କୁହାଯାଏ । ପ୍ରତ୍ୟହ ମହାପ୍ରସାଦର ପ୍ରସ୍ତୁତିକରଣର ଅଗ୍ନି ସଂଯୋଗ ପୂର୍ବରୁ ସେହି ପୀଠରେ ହିଙ୍ଗୁଳାଙ୍କ ହୋମ ଓ ପୂଜା ଇତ୍ୟାଦି ହୋଇଥାଏ । ଠାକୁରାଣୀଙ୍କ ଚଳନ୍ତି ପ୍ରତିମାକୁ ଆଳମ କହନ୍ତି । ଏହା ରୂପାରେ ନିର୍ମିତ । ମା'ଙ୍କର ପୂଜକଙ୍କୁ ଦେହୁରୀ କୁହାଯାଏ । ଏଠାରେ ସ୍ତ୍ରୀମାନେ ପୂଜା କରିବାରେ ବିଧି ଥିବାରୁ ଏହି ପୀଠକୁ ମଧ୍ୟ ସ୍ତ୍ରୀପୀଠ କୁହାଯାଇଥାଏ ।

**କାକଟପୁରର ମଙ୍ଗଳା ପୀଠ**

ଅଷ୍ଟଚଣ୍ଡୀଙ୍କ ମଧ୍ୟରୁ ଅନ୍ୟତମ ହେଉଛନ୍ତି କାକଟପୁରର ମଙ୍ଗଳଦାୟିନୀ ମା' ମଙ୍ଗଳା । ଦୁର୍ଗତିନାଶିନୀ ମା' ଦୁର୍ଗାଙ୍କର ଅନ୍ୟନାମ ଅଟେ ମା' ମଙ୍ଗଳା । ଅସୁର ମହିଷାସୁର ସହିତ ଯୁଦ୍ଧ ସମୟରେ ମା' ଦୁର୍ଗା ହାଲିଆ ହୋଇଯାଇଥିଲେ । ସମୁଦ୍ର ମଝିକୁ ଦୁର୍ଗାଙ୍କୁ ନେଇ ପାଣିରେ ବୁଡ଼ାଇ ବୁଡ଼ାଇ ମାରିବାକୁ ଉଦ୍ୟମ କରିଥିଲେ । ମା' ଦୁର୍ଗା ଅଣନିଃଶ୍ୱାସୀ ହୋଇ ଦୀର୍ଘ ନିଃଶ୍ୱାସ ତ୍ୟାଗ କରିଥିଲେ । ସେହି ନିଃଶ୍ୱାସରୁ ଜନ୍ମଲାଭ କରିଥିଲେ ମା'ମଙ୍ଗଳା । ଅସୁରର ଗୋଟିଏ ପାଖ ମଙ୍ଗଳା ଓ ଅନ୍ୟ ପାଖଟି ଦୁର୍ଗା ଧରି ଧରି ଉପରକୁ ନେଇ ଆସିଥିଲେ । ଆଶ୍ୱସ୍ତ ଲାଭ

କରି ମା' ଦୁର୍ଗାଦେବୀ ପ୍ରସନ୍ନ ହୋଇ କହିଥିଲେ ବିପଦ ସମୟରେ ମଙ୍ଗଳ ସାଧନ କରିଥିବାରୁ ତୁମର ନାମ ମଙ୍ଗଳା ହେଲା ।

ପ୍ରାଚୀନ ଯୁଗରେ କାକଟେଈ ନାମକ ଏକ ଦେବୀ ପୁଣ୍ୟତୋୟା ପ୍ରାଚୀ ନଦୀ କୂଳରେ ବିରାଜିତ ହୋଇଥିଲେ । ସେହି ଦେବୀଙ୍କ ନାମ ଅନୁସାରେ ସେହି ସ୍ଥାନର ନାମ କାକଟପୁର ହୋଇଅଛି । ଆଜି ମଙ୍ଗଳା ମନ୍ଦିରର ଉତ୍ତର ଦ୍ୱାରରେ ଛୋଟ ମନ୍ଦିରଟିରେ କାକଟେଈ ଠାକୁରାଣୀ ପୂଜା ପାଇ ଆସୁଛନ୍ତି ।

ସର୍ବଶକ୍ତି ଦାୟିନୀ ମା' ମଙ୍ଗଳାଙ୍କ ଆବିର୍ଭାବ ସମ୍ପର୍କରେ ବିଭିନ୍ନ ପ୍ରକାର କିମ୍ବଦନ୍ତୀମାନ ଅଛି । କଥିତ ଅଛି, ପ୍ରଥମେ ମା' ମଙ୍ଗଳା ସିଂହଳ ଦ୍ୱୀପରେ ପୂଜା ପାଉଥିଲେ । ତତ୍କାଳୀନ ସମୟରେ ଓଡ଼ିଶା ସାଧବ ପୁଅମାନେ ବୋଇତ ବାଣିଜ୍ୟ କରିବାକୁ ସିଂହଳ ଦ୍ୱୀପକୁ ଯାଉଥିଲେ । ଦଧିବାମନ ନାମକ ଜଣେ ବଣିକ ଏହି ମୂର୍ତ୍ତି ଆଣି ଏଠାରେ ସ୍ଥାପନ କରାଇଥିଲେ । ମଙ୍ଗଳାଙ୍କ ମହିମା ଓ ଆଶୀର୍ବାଦ ଫଳରେ କେତେଗୁଡ଼ିଏ ଭକ୍ତଙ୍କର ମାନସିକ ପୂରଣ ହୋଇଥିଲା । ଭକ୍ତମାନଙ୍କର ଉଦ୍ୟମ ଓ ଦାନ ଫଳରେ ମନ୍ଦିର ନିର୍ମାଣ ଓ ଜମିଖଞ୍ଜା ହୋଇପାରିଛି ।

ଅନ୍ୟ ଗୋଟିଏ କିମ୍ବଦନ୍ତୀରୁ ଜଣାଯାଏ କଳା ପାହାଡ଼ ଓଡ଼ିଶା ଆକ୍ରମଣ କଲାବେଳେ ମା' ମଙ୍ଗଳା ତା'ର ଅତ୍ୟାଚାର ସହ୍ୟ କରି ନପାରି ପ୍ରାଚୀ ନଦୀରେ ଲୁଚି ରହିଥିଲେ । ବହୁବର୍ଷ ପରେ ଜଣେ ସାଧବ ପୁଅ ବୋଇତ ନେଇ ପ୍ରାଚୀ ନଦୀରେ ଯାଉଥିବାବେଳେ ଏକ ଗଣ୍ଡରେ ବୋଇତଟି ଅଟକି ଗଲା । ରାତିରେ ଦେବୀ ସାଧବଙ୍କୁ ସ୍ୱପ୍ନାଦେଶ ହୋଇ ସମସ୍ତ ବିବରଣୀ ଜଣାଇଥିଲେ । ସାଧବପୁଅ ଦେବୀଙ୍କୁ ପାଣିରୁ ଆଣି ପୁଣ୍ୟତୋୟା ପବିତ୍ର ପ୍ରାଚୀ ନଦୀକୂଳରେ ମନ୍ଦିର ସ୍ଥାପନ କରି ଦେବୀଙ୍କୁ ପ୍ରତିଷ୍ଠା କରାଇଥିଲେ ।

ପ୍ରଧାନ ମନ୍ଦିରର ଉଚ୍ଚତା ପଚାଶ ଫୁଟ ଓ ଦୈର୍ଘ୍ୟ, ପ୍ରସ୍ଥ ସତେଇଶି ଫୁଟ । ଜଗମୋହନର ଭିତର ପଶ୍ଚିମ କାନ୍ଥକୁ ଲାଗି ଗୋଟିଏ ପଥର ସିଂହାସନ ଉପରେ ପଡ଼ିଥିବା ଏକ ପଦ୍ମ ଆସନ ଉପରେ ଛଅଫୁଟ ଉଚ୍ଚତା ଓ ସାଢ଼େ ଚାରିଫୁଟ ପ୍ରସ୍ଥର କଳା ମୁଗୁନି ପଥରରେ ନିର୍ମିତ ମଙ୍ଗଳ ଦାୟିନୀ ମା' ମଙ୍ଗଳାଙ୍କ ପ୍ରତିମା ବିରାଜିତ । ପ୍ରତିମାଙ୍କ ଉପରେ ଦୁଇ ତିନି ହାତ ଉଚ୍ଚତା ବିଶିଷ୍ଟ 'କନକମଣ୍ଡପ' ନାମରେ ଏକ କାଠର ବିମାନ ଚାରୋଟି ପଥର ଖମ୍ବ ଉପରେ ଅବସ୍ଥାପିତ ହୋଇଅଛି । ଦେବୀ ବସିଥିବା ସିଂହାସନକୁ ଲଳିତାସନ କୁହାଯାଏ । ଏହାର ଉତ୍ତର ଦିଗ କାନ୍ଥରେ ଗୋଟିଏ ପାଦୁକା ନଳା ଓ ପୂର୍ବ ଦିଗରେ ଗୋଟିଏ ଦ୍ୱାର ଅଛି । ଦେବୀଙ୍କ ଉପରି ଭାଗରେ ଦୁଇ ଦିଗରେ ଦୁଇଟି ପରୀ ପୁଷ୍ପମାଳା ଧରି ରହିଛନ୍ତି । ଦେବୀଙ୍କ ଦକ୍ଷିଣ ହସ୍ତ ଉପରି ଭାଗରେ ପୂର୍ଣ୍ଣଚନ୍ଦ୍ର ଓ ନିମ୍ନଭାଗରେ ସତେଇଶିଗୋଟି କଣ୍ଢି ବିଶିଷ୍ଟ ଜପାମାଳା ଶୋଭା ପାଉଅଛି । ଠିକ୍ ସେହିପରି ବାମହସ୍ତର ଉପରି ଭାଗରେ ପଦ୍ମକଢ଼ି ଓ ନିମ୍ନଭାଗରେ ଜପ କରିବାର ସୂଚନା ମିଳୁଛି । ଦେବୀଙ୍କ ପାଦଦେଶରେ ଏକ ଧାଡ଼ି ନାରୀ ମୂର୍ତ୍ତି ହାତଯୋଡ଼ି ଠିଆ ହୋଇଛନ୍ତି । ଦେବୀଙ୍କ ଶୀର ଦେଶରେ ଏକ କିରୀଟ ଓ ଦୁଇ କାନରେ କର୍ଣ୍ଣଫୁଲ ଶୋଭା ମଣ୍ଡନ କରୁଅଛି । ଏତଦ୍‌ବ୍ୟତୀତ ରୂପାରେ ନିର୍ମିତ ମହିଷାସୁର ମର୍ଦ୍ଦିନୀ ମା' ମଙ୍ଗଳା ଓ କନକ ଦୁର୍ଗା ନାମକ ତିନୋଟି ମୂର୍ତ୍ତି ସିଂହାସନ ଉପରେ ଉପବେଶନ ହୋଇଛନ୍ତି ।

ଜଗମୋହନ ପୀଠର ପୂର୍ବ ଦିଗରେ ଅର୍ଥାତ୍ ସମ୍ମୁଖରେ ତିରିଶ ଫୁଟ ଦୈର୍ଘ୍ୟ, ସତେଇଶ ଫୁଟ ପ୍ରସ୍ଥ ଓ ପଇଁତାଳିଶ ଫୁଟ ଉଚ୍ଚତା ବିଶିଷ୍ଟ ଏକ ମୁଖଶାଳା ଅଛି । ମନ୍ଦିର ବେଢ଼ା ଭିତରେ ଭୋଗ ମଣ୍ଡପ, ରୋଷ ମଣ୍ଡପ, ଅଚିନ୍ତା ମଣ୍ଡପ, ବିଶ୍ରାମ ମଣ୍ଡପ, ସ୍ନାନ ମଣ୍ଡପ ଇତ୍ୟାଦି ବିରାଜମାନ । ଆଉ ମଧ ଏହା ଭିତରେ ଥିବା ଛୋଟ ଛୋଟ ମନ୍ଦିରରେ ବିଭିନ୍ନ ସ୍ଥାନରେ ନବଗ୍ରହ, ରାଧାକୃଷ୍ଣ, ବାମନ ଅବତାର, ଭାଗବତ ଗାଦି, ଗଣେଶ, ଦୁଇଟି ମାଧବାନନ୍ଦ, ଦୁର୍ଗା, ନୃସିଂହ ଓ ପତିତପାବନ (ଜଗନ୍ନାଥ) ପ୍ରତିମାଗୁଡ଼ିକ ପ୍ରତୀୟମାନ ।

ଶୁଭକାମିନୀ ତଥା ଆଶୀର୍ବାଦଦାୟିନୀ ମା' ମଙ୍ଗଳାଙ୍କର ମହିମା ଯେପରି ରହସ୍ୟମୟ, ତାଙ୍କର ପୂଜା ପଦ୍ଧତି, ରୀତିନୀତି, ପରମ୍ପରା, ସଂସ୍କୃତି ଇତ୍ୟାଦି ସେପରି ରହସ୍ୟମୟ । ମା' ମଙ୍ଗଳାଙ୍କର ନିବିଡ଼ ସମ୍ପର୍କ ନିହିତ ଅଛି ବିଶ୍ୱପ୍ରସିଦ୍ଧ ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ସହିତ । ଅସୀମ କରୁଣାର ସାଗର ତଥା ପରଂବ୍ରହ୍ମ ଜଗନ୍ନାଥଙ୍କର ପ୍ରତି ବାରବର୍ଷରେ ନବକଳେବର ହେବାର ବିଧିବିଧାନ ଅଛି । ଏଥିପାଇଁ ନୂତନ ଦାରୁ (କାଠ) ଏକାନ୍ତ ଦରକାର । କେଉଁଠାରେ ଦାରୁ ଅଛି, ତା'ର ଆଜ୍ଞା ଦେବୀ ମଙ୍ଗଳା ସ୍ୱପ୍ନରେ ଦଇତାପତିଙ୍କୁ ଜଣାଇ ଦିଅନ୍ତି । ତେଣୁକରି ନବକଳେବର ଯେଉଁ ବର୍ଷ ପଡ଼ିଥାଏ, ସେହି ବର୍ଷ ଚୈତ୍ରମାସ ଶୁକ୍ଳ ଦଶମୀ ଦିନ ଜଗନ୍ନାଥଙ୍କ ଦଇତାପତିମାନେ ଶ୍ରୀମନ୍ଦିରରୁ ଆଜ୍ଞାମାଳ ନେଇ ମଙ୍ଗଳା ପୀଠକୁ ଯାତ୍ରା କରିଥାନ୍ତି । ସେଠାରେ ବଡ଼ପଣ୍ଡା ଯଥାରୀତି ମା' ମଙ୍ଗଳାଙ୍କୁ ପୂଜା କରିଥାନ୍ତି ଓ ଦଇତାପତିମାନେ ଗୁହାରିଆ ପଡ଼ିଥାନ୍ତି । ମଙ୍ଗଳାଙ୍କ ସ୍ୱପ୍ନାଦେଶ ଦ୍ୱାରା ଦଇତାପତିମାନେ ଦାରୁର ସନ୍ଧାନ ଜାଣିପାରନ୍ତି । ପ୍ରତି ଏକାଦଶୀରେ ଶ୍ରୀଜଗନ୍ନାଥଙ୍କର ମହାପ୍ରସାଦ ମଙ୍ଗଳାଙ୍କ ପାଖକୁ ଆସିବାର ବିଧିବିଧାନ ଖଞ୍ଜା ହୋଇଛି । ଆଉ ମଧ ମା' ମଙ୍ଗଳା ପ୍ରତ୍ୟହ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଶ୍ରୀକ୍ଷେତ୍ର ଯିବାର ପ୍ରବାଦ ଅଛି ।

ଏହି ପୀଠର ପ୍ରଧାନ ବିଶେଷତ୍ୱ ହେଲା ଚୈତ୍ରମାସ ପ୍ରତି ମଙ୍ଗଳବାରର ଉତ୍ସବ ଓ ଶେଷ ମଙ୍ଗଳବାରର ଝାମୁଯାତ୍ରା । ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷରୁ ଲକ୍ଷ ଲକ୍ଷ ଭକ୍ତ ଚୈତ୍ରମାସର ମଙ୍ଗଳବାର ଦିନ ମା'ଙ୍କ ପାଖରେ ସମବେତ ହୋଇ ସେମାନଙ୍କର ବ୍ରତ ବା ମାନସିକ ପୂରଣ କରିବା ପାଇଁ ଭକ୍ତିପୂତ ଭାବରେ ଶୁଦ୍ଧପୂତ ମନରେ ପବିତ୍ରତା ସହିତ ପ୍ରାର୍ଥନା କରିଥାନ୍ତି । ମା' ମଙ୍ଗଳାଙ୍କର ଦୈନିକ ଭୋଗ ଅତି ବିଚିତ୍ରମୟ ଓ ଆନନ୍ଦଦାୟକ । ସନ୍ଧ୍ୟା ଆଳତି ସମୟରେ ଘଣ୍ଟ, ଘଣ୍ଟା, ଢୋଲ, ମୃଦଙ୍ଗ, ଗିନି, ଝାଞ୍ଜ, ଶଙ୍ଖ ଓ କାହାଳୀର ନାଦ ଜାଗ୍ରତ

କରିଥାଏ ଭକ୍ତମାନଙ୍କ ମନରେ ଐଶ୍ୱରୀକ ଭାବଧାରା । ଦିନ ତମାମ ଖଞ୍ଜା ହୋଇଥିବା ବିଭିନ୍ନ ପୂଜାପଣ୍ଡାଙ୍କ ଦ୍ୱାରା ସ୍ନାନ, ସକାଳ ବେଶ, ଭୋଗ, ଆଳତି ପବିତ୍ରତାର ସହିତ ସମ୍ପାଦନା ହେବା ସଂଗେସଂଗେ ୧୦ଟା ବେଳେ ଖେଚେଡ଼ି, ତରକାରୀ, ଭଜା ଭୋଗ, ଦ୍ୱିପ୍ରହରର ଧୂପ, ଭଣ୍ଡାଧୂପ, ସନ୍ଧ୍ୟା ଆଳତି, ରାତ୍ରଧୂପ ଓ ବଡ଼ସିଂହାର ହୋଇ ରାତି ୧୧ଟାରେ ପହଡ ପଡ଼ିଥାଏ ।

ଏହି ପବିତ୍ର ପୀଠରେ ମା'ଙ୍କୁ ପରମ ବୈଷ୍ଣବୀ ଭାବେ ପୂଜା କରାଯାଇଥାଏ । ଶାରଦୀୟ ପୂଜାରେ ଷୋହଳ ଦିନ ଷୋଡଶ ଉପଚାର ପୂଜା ପଦ୍ଧତିରେ ପୂଜାର୍ଚ୍ଚନା କରାଯାଇଥାଏ । ଲୋକମାନଙ୍କର ଧାରଣା ଯେ, ଯେହେତୁ ମା' ମଙ୍ଗଳା ଚଣ୍ଡୀ ଅଟନ୍ତି, ସେହେତୁ ଏଠାରେ ବଳି ପଡ଼ିବାର ବ୍ୟବସ୍ଥାମାନ ଅଛି । କିନ୍ତୁ ମା'ଙ୍କ ପାଖରେ ବଳି ପଡ଼େ ନାହିଁ କି ବଳି ସମର୍ପଣ ହୋଇନଥାଏ । ସମସ୍ତ ବଳି ମା' ମଙ୍ଗଳାଙ୍କ ଅନତି ଦୂରରେ ଥିବା ଦକ୍ଷିଣ ଚଣ୍ଡୀଙ୍କ ନିକଟରେ ପଡ଼ିଥାଏ । ଶାରଦୀୟ ପର୍ବ ଷୋହଳ ଦିନଯାକ ଚଣ୍ଡୀ ପୁରାଣ ପାଠ, ହୋମ ଯଜ୍ଞ, ପୂଜାପାଠ ବିଭିନ୍ନ ରକମର ଭୋଗ ବିଧିବିଧାନ ସହିତ ପାଳିତ ହୋଇଥାଏ ।

ଓଡ଼ିଶାରେ ମାତୃଶକ୍ତି ଆରାଧନାର ପ୍ରଚଳନ ଆଦିମ କାଳରୁ ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ସାନ ଓ ବଡ଼ର ଭେଦଭାବ ଭୁଲି ପାଳନ କରାଯାଉଅଛି । ଆଜି ଓଡ଼ିଶାର ଏହି ପୂଜା ଭାରତ କାହିଁକି ସମଗ୍ର ମାନବ ଜାତିକୁ ନୂତନ ପଥପ୍ରଦର୍ଶନ କରିବା ସଂଗେସଂଗେ ଶୁଦ୍ଧପୂତ ମନରେ ଭକ୍ତିଭାବ ସୃଷ୍ଟି କରିପାରିଛି ।

ଯା ଦେବୀ ସର୍ବଭୂତେଷୁ,
ମାତୃ ରୂପେଣ ସଂସ୍ଥିତା ।

ଘ.ନଂ- ଟୁ.ଆର୍.ଏ-୩୫/୭
୮ ନମ୍ବର, ଭୁବନେଶ୍ୱର

---

## ରାଜ୍ୟରେ ବ୍ଲକ୍‌ମାନଙ୍କରେ ତିଆରି ହୋଇଥିବା ୨୯୩ଟି ଗୋଦାମ ଘରେ ୫୧୧୪୦ ମେଟ୍ରିକ୍ ଟନ୍ ଖାଦ୍ୟଶସ୍ୟ ରଖାଯାଇ ପାରିବ

ଜନସାଧାରଣଙ୍କୁ ଅନୁଦାନ ଓ ସାଧାରଣ ବଣ୍ଟନ ବ୍ୟବସ୍ଥା ଜରିଆରେ ମିଳୁଥିବା ଖାଦ୍ୟଶସ୍ୟ ଓ ଅନ୍ୟାନ୍ୟ ସାମଗ୍ରୀଗୁଡ଼ିକୁ ମହଜୁଦକରି ରଖିବା ପାଇଁ ବ୍ଲକ୍ ସ୍ତରରେ ତିଆରି ହୋଇଥିବା ୨୯୩ ଗୋଟି ଗୋଦାମ ଘରମାନଙ୍କରେ ୫୧୧୪୦ ମେଟ୍ରିକ୍ ଟନ୍ ଖାଦ୍ୟଶସ୍ୟ ମହଜୁଦ କରି ରଖାଯାଇ ପାରିବ ।

ରାଜ୍ୟରେ ବ୍ଲକ୍ ସ୍ତରରେ ୨୯୭ ଗୋଟି ଗୋଦାମ ଘର ତିଆରି କରିବା ପାଇଁ ଅର୍ଥ ମଂଜୁର କରାଯାଇଥିବା ବେଳେ ଅଗଷ୍ଟ ମାସ ଶେଷସୁଦ୍ଧା ୨୯୩ଗୋଟି ଗୋଦାମ ଘରର କାର୍ଯ୍ୟ ସଂପୂର୍ଣ୍ଣ ହୋଇ ପାରିଛି । ବଲାଙ୍ଗୀର ଜିଲ୍ଲାରେ ଗୋଟିଏ, ବରଗଡ଼ ଜିଲ୍ଲାରେ ଗୋଟିଏ, ଗଜପତି ଜିଲ୍ଲାରେ ଗୋଟିଏ ଏବଂ କଳାହାଣ୍ଡି ଜିଲ୍ଲାରେ ଗୋଟିଏ ଗୋଦାମ ଘରର ନିର୍ମାଣ କାର୍ଯ୍ୟ ଚାଲୁ ରହିଛି ବୋଲି ପଞ୍ଚାୟତିରାଜ ବିଭାଗ ସୂତ୍ରରୁ ଜଣାଯାଇଛି । ମୟୂରଭଞ୍ଜ ଜିଲ୍ଲା ପାଇଁ ବ୍ଲକ୍ ସ୍ତରରେ ସର୍ବାଧିକ ୨୬ ଗୋଟି ଗୋଦାମ ଘର ତିଆରି କରିବା ପାଇଁ ଅର୍ଥ ମଂଜୁର କରାଯାଇଥିବା ବେଳେ ବୌଦ ଜିଲ୍ଲା ଏବଂ ଦେଓଗଡ଼ ଜିଲ୍ଲା ପାଇଁ ୩ ଗୋଟି ଲେଖାଏଁ ଗୋଦାମ ଘର ନିର୍ମାଣ ନିମନ୍ତେ ଅର୍ଥ ମଂଜୁର କରାଯାଇଛି ।

## ୨୦୦୫-୦୬ ଆର୍ଥିକ ବର୍ଷରେ ଅଗଷ୍ଟ ମାସ ସୁଦ୍ଧା ଜାତୀୟ ଖାଦ୍ୟ ପାଇଁ କାମ ଯୋଜନାରେ ୧୮ ଗୋଟି ଜିଲ୍ଲାରେ ୭୧୫୧.୩୮ ଲକ୍ଷ ଟଙ୍କା ଖର୍ଚ୍ଚ

ରାଜ୍ୟରେ ୧୮ ଗୋଟି ଜିଲ୍ଲାରେ କାର୍ଯ୍ୟକାରୀ କରାଯାଉଥିବା ଜାତୀୟ ଖାଦ୍ୟ ପାଇଁ କାମ ଯୋଜନାରେ ଜଳ ସଂରକ୍ଷଣ, ମରୁଡ଼ି ନିରାକରଣ, ବନ୍ୟା ନିୟନ୍ତ୍ରଣ ଓ ଗ୍ରାମ୍ୟ ସଂଯୋଗୀକରଣ ଆଦି ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ କାର୍ଯ୍ୟକାରୀ କରାଯିବାରେ ୨୦୦୫-୦୬ ଆର୍ଥିକ ବର୍ଷରେ ଅଗଷ୍ଟ ମାସ ସୁଦ୍ଧା ୭୧୫୧.୩୮ ଲକ୍ଷ ଟଙ୍କା ବିନିଯୋଗ କରାଯାଇଛି ।

ଏହି ଯୋଜନାରେ ବଲାଙ୍ଗୀର ଜିଲ୍ଲାରେ ୨୦୨.୩୩ ଲକ୍ଷ ଟଙ୍କା, ବୌଦ ଜିଲ୍ଲାରେ ୨୫୭.୩୫, ଦେଓଗଡ଼ ଜିଲ୍ଲାରେ ୨୩୩.୦୮, ଢେଙ୍କାନାଳ ଜିଲ୍ଲାରେ ୩୫୭.୮୧, ଗଂଜାମ ଜିଲ୍ଲାରେ ୭୨୭.୩୫, ଝାରସୁଗୁଡ଼ା ଜିଲ୍ଲାରେ ୧୯୯.୦୦, କଳାହାଣ୍ଡି ଜିଲ୍ଲାରେ ୨୯୬.୬୩, କେନ୍ଦୁଝର ଜିଲ୍ଲାରେ ୧୯୧.୪୫, କୋରାପୁଟ ଜିଲ୍ଲାରେ ୫୮୫.୯୬, ମାଲକାନାଗିରି ଜିଲ୍ଲାରେ ୩୭୧.୧୩, ମୟୂରଭଞ୍ଜ ଜିଲ୍ଲାରେ ୩୨୮.୬୦, ନବରଂଗପୁର ଜିଲ୍ଲାରେ ୮୬୩.୧୨, ନୂଆପଡ଼ା ଜିଲ୍ଲାରେ ୨୭୯.୩୯, ଫୁଲବାଣୀ ଜିଲ୍ଲାରେ ୫୧୬.୮୨, ରାୟଗଡ଼ା ଜିଲ୍ଲାରେ ୪୬୭.୩୭, ସମ୍ବଲପୁର ଜିଲ୍ଲାରେ ୩୩୪.୯୧, ସୁବର୍ଣ୍ଣପୁର ଜିଲ୍ଲାରେ ୧୮୧.୦୦ ଓ ସୁନ୍ଦରଗଡ଼ ଜିଲ୍ଲାରେ ୭୫୮.୫୮ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇପାରିଛି ବୋଲି ପଞ୍ଚାୟତିରାଜ ବିଭାଗ ସୂତ୍ରରୁ ଜଣାଯାଇଛି ।

# ଆଶ୍ୱିନରେ ମା'ବିରଜା କ୍ଷେତ୍ରର ରଥଯାତ୍ରା ଓ ଯାତ୍ରୀ

କାଶୀନାଥ ବାରିକ

ଓଡ଼ିଶାରେ ଶହ ଶହ ବର୍ଷ ଧରି ହୋଇ ଆସୁଥିବା ରଥଯାତ୍ରା ବିଶ୍ୱବାସୀଙ୍କୁ ଆକର୍ଷିତ କରିଅଛି । ଭଗବାନ ବୁଦ୍ଧଙ୍କର ରଥଯାତ୍ରା, ଜଗନ୍ନାଥଙ୍କର ଆଷାଢ଼ ମାସର ରଥଯାତ୍ରା ବିଶ୍ୱବାସୀଙ୍କ ପାଇଁ ଯେଭଳି ଆକର୍ଷଣର କାରଣ ହୋଇଅଛି, ସେହିପରି ଶକ୍ତିଙ୍କର ରଥଯାତ୍ରା କେତେକ ସ୍ଥଳରେ ଭକ୍ତମାନଙ୍କୁ ଭକ୍ତିରସରେ ଅବଗାହନ କରାଉଛି । ବିରଜା କ୍ଷେତ୍ରରେ ଦୁଇପ୍ରକାର ରଥଯାତ୍ରା ମଧ୍ୟରୁ ଭଗବାନ ବୁଦ୍ଧଙ୍କର ରଥଯାତ୍ରା ଓ ଜଗତରନାଥ ଜଗନ୍ନାଥଙ୍କର ରଥଯାତ୍ରା ଅପେକ୍ଷା ଆଶ୍ୱିନ ମାସର ମା' ବିରଜା ଦେବୀଙ୍କର ରଥଯାତ୍ରା ସେ ଅଞ୍ଚଳ ସହିତ ସମଗ୍ର ଶକ୍ତି ପୀଠ ମଧ୍ୟରେ ଗୁରୁତ୍ୱ ବଢ଼ାଇ ଦେଇଛି ।

ପ୍ରତିବର୍ଷ ଆଶ୍ୱିନ ମାସରେ ଭାରତର ସବୁ ଶକ୍ତିପୀଠ ମଧ୍ୟରେ ଯାଜପୁର ଜିଲ୍ଲାର ବିରଜାକ୍ଷେତ୍ରରେ ଯେଉଁ ରଥଯାତ୍ରା କରାଯାଇଥାଏ, ତାହା ଦକ୍ଷଯଜ୍ଞକାଳର ସତୀଦେବୀଙ୍କର ଦେହାବଶେଷ ଉପରେ ସ୍ମରଣ କରାଇ ଦେଇଥାଏ । ଦକ୍ଷରାଜାଙ୍କର କନ୍ୟା ସତୀଦେବୀ ଶ୍ମଶାନବାସୀ ମହାଯୋଗୀ ଶିବଙ୍କର ପାଣିଗ୍ରହଣ କଲାପରେ ତାଙ୍କରି ଯଜ୍ଞକାଳରେ ବିଭିନ୍ନ ଦେବତା, ମୁନିଋଷିମାନଙ୍କୁ ଆମନ୍ତ୍ରଣ କରି ମହାଯୋଗୀ ଶିବଙ୍କୁ ଅପମାନିତ କରାଯାଇଥିବା ହେତୁ, ତାହାରି ଫଳସ୍ୱରୂପ ତାଙ୍କ ଶ୍ୱଶୁର ଦକ୍ଷରାଜାଙ୍କ ମଧ୍ୟରେ ପ୍ରଥମେ ସଂଗ୍ରାମ ହୋଇଥିଲା । ଫଳରେ ଭୈରବ ରୂପରେ ମହାଯୋଗୀ ଶିବ ଦକ୍ଷଙ୍କ ମୁଣ୍ଡକାଟ କରି, ଯଜ୍ଞକୁଣ୍ଡରୁ ସତୀଦେବୀଙ୍କର ଦଗ୍ଧ ଶରୀରକୁ ତାଙ୍କର ସ୍କନ୍ଧରେ ବୋହି ସୃଷ୍ଟିଧ୍ୱଂସକାରୀ ଯେଉଁ ନୃତ୍ୟ କରିଥିଲେ, ବିଷ୍ଣୁଙ୍କର ଚକ୍ରରେ ସତୀଙ୍କର ଦଗ୍ଧ ଶରୀର ଛେଦିତ ହୋଇଥିଲା । ସେହି ଶରୀରର ଯେଉଁ ଅବଶେଷ ଯାଜପୁରର ବିରଜା କ୍ଷେତ୍ରରେ ପଡ଼ିଥିଲା, ସେହିଦିନୁ ସେହିକ୍ଷେତ୍ରଟି ଏକ ମହାଶକ୍ତିପୀଠ ହିସାବରେ ପରିଗଣିତ ହୋଇଅଛି ।

ସେ ଯାହାହେଉ ଏବେ ଯାଜପୁରରେ ସତୀଦେବୀଙ୍କର ଦ୍ୱିଭୁଜା ରୂପ ପୂଜିତ ହେଉଅଛି । ଆଉ ମହାଯୋଗୀ ଶିବଙ୍କର ଉଗ୍ରରୂପ ଭୈରବ ପ୍ରତିମା ମନ୍ଦିରର ପଛପଟେ ପୂଜା ହେଉଅଛି । ତେବେ ପାର୍ବଣର ରଥଯାତ୍ରା ପାଇଁ ଦେବୀଙ୍କର ବାସ୍ତବ ପ୍ରତିମାକୁ ଆଣି ଭକ୍ତମାନଙ୍କ ଆଗରେ ପ୍ରଦର୍ଶନ କରାଇବା ପରିବର୍ତ୍ତେ ତାଙ୍କର ଧାତବ ମୁଖାକୁ



ମା' ବିରଜା ମନ୍ଦିରରେ ପୂଜିତ ଭଗବାନ ଭୈରବ (ଫଟୋ : ଶର୍ବାଣୀ)

ରଥ ଉପରେ ସ୍ଥାପନ କରି ଯାତ୍ରା କରାଯାଉଅଛି । ଶ୍ରୀକ୍ଷେତ୍ର ପୁରୀଠାରେ ଜଗନ୍ନାଥଙ୍କର ପ୍ରତିନିଧି ଭାବରେ ଶ୍ରୀ ମଦନମୋହନ ଯେଭଳି ବିଭିନ୍ନ କାର୍ଯ୍ୟରେ ଅଂଶ ଗ୍ରହଣ କରିଥାଆନ୍ତି, ସେହିପରି ଯାଜପୁରର ବିରଜାକ୍ଷେତ୍ରରେ ମା' ବିରଜାଦେବୀଙ୍କର ପ୍ରତିନିଧି ଭାବରେ ତାଙ୍କର ମୁଖାକୁ ରଥରେ ସ୍ଥାପନ କରାଯାଇ ରଥଯାତ୍ରା କରାଯାଉଅଛି । ଏହାର ପରିଚାଳନା ପାଇଁ ଆଞ୍ଚଳିକ ଭକ୍ତମାନଙ୍କର ସହଯୋଗ ସହିତ କଟକର ଏଣ୍ଡୋମେଣ୍ଟ ବିଭାଗର ସହଯୋଗ ରହୁଅଛି ।

ତାତ୍ତ୍ୱିକ ମତରେ ମା' ବିରଜାଦେବୀ ସତ୍ତ୍ୱ, ରଜ, ତମଗୁଣ ମଧ୍ୟରୁ ସତ୍ତ୍ୱ ଗୁଣରେ ବିଭୂଷିତା । ସେ ପବିତ୍ରା ଓ ପରମ ବୈଷ୍ଣମୀ ଅଟନ୍ତି । ରଜୋଗୁଣ ତାଙ୍କର ବିଗତ ହୋଇଅଛି । ଏହି ଦେବୀଙ୍କର ପ୍ରାଚୀନ ପୀଠଟି ଆଗରୁ କଳସପୁରରେ ଥିଲା । ସ୍ୱର୍ଗତଃ ଜମିଦାର ଚୌଧୁରୀ ସୁଦର୍ଶନ ମହାପାତ୍ରଙ୍କ ଦ୍ୱାରା ଦେବୀ ଆବିଷ୍କୃତ ହେବାପରେ ଏକ ପ୍ରାଚୀନ ମନ୍ଦିରଟିଏ ନିର୍ମାଣ କରାଯାଇଥିଲା । ପ୍ରାୟ ୧୨୫ ବର୍ଷ ତଳର ଏହି ଘଟଣା ଉଦ୍ଧାର କଲାବେଳେ, ଦେହରେ ରୋମାଞ୍ଚ ଜାତ ହୋଇଥାଏ । ଦକ୍ଷଯଜ୍ଞ କାଳର ଏହି ଦେବୀ ପୀଠଟି ଚୌଧୁରୀ ମହାପାତ୍ରଙ୍କ ଦ୍ୱାରା ପୁନରୁଦ୍ଧାର ସହିତ ମନ୍ଦିର ହୋଇଥିଲେ ସୁଦ୍ଧା, ତାହାର ଦୁଇ କିଲୋମିଟର ଦୂରରେ ବର୍ତ୍ତମାନର ମନ୍ଦିରଟିଏ ଯାଜପୁରରେ ନିର୍ମାଣ କରାଯାଇଥିଲା । ସେହି ଅଞ୍ଚଳରେ ଏବେ ନିତ୍ୟାଦି

ଓ ପର୍ବାଣି ନୀତିମାନ ପାଳନ କରାଯାଉଛି । ନିତ୍ୟାଦି କାର୍ଯ୍ୟକ୍ରମ ପାଇଁ ପ୍ରତ୍ୟହ ସକାଳ ୬ ଘଣ୍ଟା ବେଳେ ମନ୍ଦିର ଫାଟକ ଖୋଲାଯାଉଥିଲାବେଳେ, ପର୍ବାଣି ପାଇଁ ଆବଶ୍ୟକୀୟ ପଦକ୍ଷେପମାନ ନିଆଯାଉଛି । ରଥଯାତ୍ରାଟି ବାର୍ଷିକ ପର୍ବାଣି ନୀତି ମଧ୍ୟରେ କରାଯାଉଅଛି । ଏହି ସମୟରେ ମହାଦେବୀଙ୍କର ପୂଜା ହେବା ସମୟରେ ପାର୍ଶ୍ୱଦେବତା ଭାବରେ ପୂଜିତ ହେଉଥିବା ଭଗବାନ ଭୈରବଙ୍କଠାରେ ମେଷ ଓ ମହିଷବଳିମାନ ଦିଆଯାଉଛି । ଭୈରବ ଏକ ତନ୍ତ୍ରଦେବତା ଭାବରେ ପୂଜିତ । ଭୈରବ ପୂଜା ଦୁର୍ଗାପୂଜା ବା ପାର୍ବଣ ସମୟରେ କରାଯିବାବେଳେ, ମୟୂରଭଞ୍ଜର ଛଉନୃତ୍ୟ ଶିଳ୍ପୀମାନେ ତାନ୍ତ୍ରିକମତରେ ପୂଜା କରି ଶପଥ ଗ୍ରହଣ କରିଥାଆନ୍ତି । ମାତ୍ର ରଥଯାତ୍ରା ପାଇଁ ଭୈରବଙ୍କ ପୀଠରେ କୌଣସି ଆୟୋଜନ ହୁଏ ନାହିଁ । ଅଥବା ଦେବୀଙ୍କ ଉଦ୍ଦେଶ୍ୟରେ ରଥଯାତ୍ରା କରାଯାଏ ନାହିଁ । କେବଳ ବିରଜା କ୍ଷେତ୍ରରେ ହିଁ ରଥଯାତ୍ରାର ପରମ୍ପରା ସୃଷ୍ଟି ହୋଇଅଛି । ଏଣୁ ଅନ୍ୟାନ୍ୟ ଶକ୍ତିପୀଠ ଅପେକ୍ଷା ବିରଜାକ୍ଷେତ୍ର ଯାଜପୁର ରଥଯାତ୍ରା ବିଭିନ୍ନ ଅଞ୍ଚଳର ଭକ୍ତ ତଥା ପର୍ଯ୍ୟଟକମାନଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ ହୋଇଅଛି ।

ଯାଜପୁରରେ ମା' ବିରଜାଙ୍କର ରଥଯାତ୍ରା ପାଇଁ ରାଜ୍ୟ ସରକାରଙ୍କର ପ୍ରଶାସନ ବିଭାଗ ତତ୍ପର ହୋଇ ଉଠିଥାଆନ୍ତି । ରଥ ନିର୍ମାଣ, ଯାତ୍ରା ପାଇଁ ଦେବୋତ୍ତର ବିଭାଗ ଯେଉଳି ଆବଶ୍ୟକୀୟ ପଦକ୍ଷେପ ନେଇ ଥାଆନ୍ତି, ସେହିପରି ଜିଲ୍ଲାର ଜିଲ୍ଲାପାଳ, ପୋଲିସ ଅଧୀକ୍ଷକ ସେ ଅଞ୍ଚଳର ଶୃଙ୍ଖଳା ରକ୍ଷା ପାଇଁ ବ୍ୟାପକ ପୋଲିସ ମୁତୟନ କରିଥାଆନ୍ତି । ଉଭୟ ପୁରୁଷ ଓ ମହିଳା ପୋଲିସ ବାହିନୀ ପୁରୁଷ ଓ ମହିଳା ଯାତ୍ରୀମାନଙ୍କର ଶୃଙ୍ଖଳା ରକ୍ଷା କରିବା ଦିଗରେ ପଦକ୍ଷେପ ନେଇଥାଆନ୍ତି । ଦୋକାନ ବଜାର ଧାଡ଼ିକି ଧାଡ଼ି ମନ୍ଦିର ପାଖରେ ବସିଥାଏ । ଏହି ସମୟରେ ଭୋଗାଦି ପାଇଁ କେତେକ ନିୟମ ସହ ମନ୍ଦିର ମଧ୍ୟରେ ବିକ୍ରୟ ପାଇଁ ସୁଯୋଗ ଦିଆଯାଉଥିଲାବେଳେ ବାହାରେ ଦୋକାନୀମାନଙ୍କର କ୍ରୟ ବିକ୍ରୟ ପାଇଁ ସୁବିଧା କରାଯାଇଥାଏ । ସ୍ୱେଚ୍ଛାସେବୀମାନେ ଓ ମନ୍ଦିର ସେବକମାନେ ସଂହତିମୂଳକ ପଦକ୍ଷେପ ନେଇଥାଆନ୍ତି ।

ବିରଜାକ୍ଷେତ୍ରର ରଥଯାତ୍ରା ପାଇଁ ଯାତ୍ରୀମାନଙ୍କର ଭିଡ଼ ହେଉଥିବା ହେତୁ ସେଠା ପାନ୍ଥଶାଳାରେ ଭିଡ଼ ଜମେ । ଏହି ପାନ୍ଥଶାଳାଟିରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟଧର୍ମୀ ପର୍ଯ୍ୟଟକ ଓ ଭକ୍ତମାନେ ରହିବା ପାଇଁ ଅଗ୍ରୀମ ପଦକ୍ଷେପ ନେଇଥାଆନ୍ତି । ପାନ୍ଥଶାଳାର ତତ୍ତ୍ୱାବଧାରୀଙ୍କଠାରୁ ଜଣାଯାଇଛି ଯେ, ପାନ୍ଥଶାଳାର ଛାତ କୋଠରୀ ଅପେକ୍ଷା ତଳକୋଠରୀରେ ପର୍ଯ୍ୟଟକମାନେ ରହିବା ପାଇଁ ବେଶୀ ପସନ୍ଦ କରିଥାଆନ୍ତି । ଶୀତତାପ ନିୟନ୍ତ୍ରିତ କୋଠରୀ ସଂଖ୍ୟା କମ୍ ଥିବା ହେତୁ ଗବେଷକ ଓ ପର୍ଯ୍ୟଟକମାନେ କ୍ଷଣକାଳ ରହି ଅନ୍ୟତ୍ର ରହିବାକୁ ପସନ୍ଦ କରିଥାଆନ୍ତି । ବାହାର ଲୋକମାନଙ୍କର ଅବାଧ ଗତିହେତୁ ପାନ୍ଥଶାଳର ପରିବେଶ ଦୂଷିତ ହେଉଥିବାର କେତେକ ପର୍ଯ୍ୟଟକ ଅଭିଯୋଗ କରିଥିଲେ ସୁଦ୍ଧା ତାହାର ପ୍ରତିକାର ବାହୁଲ୍ୟମାତ୍ର । ସେ ଯାହାହେଉ ଆଞ୍ଚଳିକ ସ୍ୱେଚ୍ଛାସେବୀମାନଙ୍କର ସାହାଯ୍ୟ ବିନା ଉଭୟ ପାନ୍ଥଶାଳା ଓ ବିରଜା ଦେବୀଙ୍କର ଉନ୍ନୟନ ଅସମ୍ଭବ ବୋଲି ଅନୁମାନ କରାଯାଇଛି ।

ପାନ୍ଥଶାଳାରେ କେବୁଲ ଟିଭିଟିଏ ସ୍ଥାପନ କରାଯାଇ ପାରିଥିଲେ, ମୁସଲମାନ ଓ ଖ୍ରୀଷ୍ଟଧର୍ମୀ ଭକ୍ତମାନଙ୍କୁ ସେ ଅଞ୍ଚଳରେ କଳା ଓ ସଂସ୍କୃତି ସମ୍ବନ୍ଧରେ ଆକର୍ଷଣ କରାଇବା ସମ୍ଭବ ହୋଇ ପାରନ୍ତା । ସେଠାରେ ବୌଦ୍ଧକୀର୍ତ୍ତି, ମୁସଲମାନ ମସ୍‌ଜିଦ୍ ପ୍ରଭୃତି ସହିତ ଖ୍ରୀଷ୍ଟଧର୍ମର କେତେକ ସ୍ଥଳକୁ ସୁଟିଂକରି କେବୁଲ୍ ଟିଭି ମାଧ୍ୟମରେ ପାନ୍ଥଶାଳାରେ ପ୍ରଦର୍ଶିତ କରାଯାଇ ପାରିଲେ, ସବୁ ଧର୍ମିଲୋକ ମା' ବିରଜାଙ୍କ ରଥଯାତ୍ରା, ମନ୍ଦିର ପରିବେଶ ସହିତ ଅନ୍ୟାନ୍ୟ ଧର୍ମର କୀର୍ତ୍ତିଗୁଡ଼ିକ ସହଜରେ ଜାଣି ଅନ୍ୟ ଅଞ୍ଚଳରେ ବିସ୍ତାର କରିପାରନ୍ତେ । ଏବେ ହିନ୍ଦୁଭକ୍ତ ଓ ପର୍ଯ୍ୟଟକମାନଙ୍କର ଭିଡ଼ ଯେତେବେଶୀ ହେଉଅଛି, ସେହି ଅନୁସାରେ ଅନ୍ୟାନ୍ୟ ଧର୍ମର ଭକ୍ତ ଓ ପର୍ଯ୍ୟଟକମାନେ ବିରଜା କ୍ଷେତ୍ର ଅପେକ୍ଷା ଅନ୍ୟ ଅଞ୍ଚଳକୁ ଗମନ କରୁଅଛନ୍ତି ।



ଯାଜପୁର ମା' ବିରଜା ମନ୍ଦିରର ପ୍ରବେଶ ଦ୍ୱାର (ଫଟୋ : ଶର୍ବାଣୀ)

ଅନୁସନ୍ଧାନରୁ ପୁଣି ଜଣାଯାଇଛି ଯେ, ପାନ୍ଥଶାଳାର ବାର୍ଷିକ ଖର୍ଚ୍ଚ ଚାଳିଶ ହଜାର ଟଙ୍କା ହେଉଥିଲାବେଳେ, ସେଠାରୁ ରୋଜଗାର ହୋଇଥାଏ - ତାହାର ଅଧାଅଧି । ରାଜ୍ୟ ସରକାର ପର୍ଯ୍ୟଟନ ବିଭାଗରୁ ବାକି ଖର୍ଚ୍ଚ ଭରଣା କରିଥାଆନ୍ତି । ସେହି ଅଞ୍ଚଳର ସଂସ୍କୃତି ଉଚ୍ଚକୋଟୀର ଯେ, ବିଶ୍ୱଦରବାରର ପର୍ଯ୍ୟଟକ ଓ ଗବେଷକମାନଙ୍କୁ ଆକର୍ଷଣ କରାଯାଇପାରିଲେ, ରାଜକୋଷଟି ମା' ବିରଜାଙ୍କର ରଥଯାତ୍ରା ସହିତ ଅନ୍ୟାନ୍ୟ ଅଞ୍ଚଳର କୀର୍ତ୍ତି ପାଇଁ ନିଅଣ୍ଟ ଖର୍ଚ୍ଚ ଭରଣା କରି ଅଧିକ ଟଙ୍କା ଅନ୍ୟାନ୍ୟ ପର୍ଯ୍ୟଟନ କ୍ଷେତ୍ରରେ ବିନିଯୋଗ କରାଯାଇପାରନ୍ତା ।

ଏହି ଅଞ୍ଚଳରେ ଦେଶ ବିଦେଶର ବିଭିନ୍ନ ଧର୍ମୀ ଭକ୍ତ ଓ ପର୍ଯ୍ୟଟକମାନଙ୍କର ବର୍ଷ ତମାମ ଭିଡ଼ ଲାଗି ରହୁଥିବା ହେତୁ, ସେମାନଙ୍କୁ ଆଧାତ୍ମିକ ଓ ସାଂସ୍କୃତିକ ରଜ୍ଜୁରେ ବାନ୍ଧି ରଖିବା ପାଇଁ ଏକ ସଂଗ୍ରହାଳୟର ଆବଶ୍ୟକତା ରହୁଅଛି । ଓଡ଼ିଶାର ୧୩ଟି ଜିଲ୍ଲାରୁ ୩୦ ଗୋଟି ଜିଲ୍ଲା ହେବା ପରେ ବିରଜା କ୍ଷେତ୍ରର ସୀମା ସଂକୁଚିତ ହୋଇଯାଇଅଛି ସତ, କିନ୍ତୁ ସଂସ୍କୃତିର ପରିସୀମା ଅତୀତ ଅପେକ୍ଷା ଅଧିକ ବୃଦ୍ଧି ଘଟିଅଛି । ଗମନାଗମନର ସୁବିଧା ସବୁ ସାଂସ୍କୃତିକ ଅଞ୍ଚଳକୁ ଯିବା ପାଇଁ ସମ୍ଭବ ହେଉ ନଥିବା ହେତୁ, ସେସବୁ ଅଞ୍ଚଳର ଫଟୋ, ଭିଡିଓ ଫଟୋ ଉକ୍ତ ସଂଗ୍ରହାଳୟ ଓ ପାନ୍ଥଶାଳାର ଅତିଥିମାନଙ୍କୁ ଆକର୍ଷିତ କରିପାରିବ ବୋଲି ବିଶ୍ୱାସ କରିଯାଉଛି ।

ଗତ ତା.୩.୪.୨୦୦୫ରିଖ ଧର୍ମଶାଳାର ବିଧାୟକ ଶ୍ରୀ କଳ୍ପତରୁ ଦାସ, ଯାଜପୁର ବିଧାୟକ ଶ୍ରୀ ପରମେଶ୍ୱର ସେଠୀ, ଲୋକସଭା ସଦସ୍ୟ ଶ୍ରୀ ମୋହନ ଜେନା, ଜିଲ୍ଲା ପରିଷଦ ଅଧକ୍ଷ ଶ୍ରୀ ଗୌତମ ରାୟ ପ୍ରମୁଖ ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ ସଭାରେ ଯେଉଁ ଉଦ୍‌ବୋଧନ ଦେଇଥିଲେ, ସେଥିରେ ଯାଜପୁର ଜିଲ୍ଲାର ଅତୀତ କୀର୍ତ୍ତି ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ଆସିଥିବା ପ୍ରତିନିଧିମାନଙ୍କୁ ଆଲୋକିତ କରିଥିଲା । ଜନହିତକର ପାଇଁ ଆସୁଥିବା ପାଣ୍ଠିକୁ ସଦ୍‌ବିନିଯୋଗରେ ଲଗାଯାଇ ପାରିଲେ ଆଞ୍ଚଳିକ ତଥା ବର୍ହିଭକ୍ତମାନେ ଉପକୃତ ହୋଇପାରନ୍ତେ । ଏକ ସ୍ମରଣିକା ପ୍ରକାଶନ ହେତୁ ସେହି ସମୟରେ ସମସ୍ତେ ଯାଜପୁର ସମ୍ପର୍କରେ ଅନେକ ତଥ୍ୟ ଜାଣିବାର ସୁଯୋଗ ପାଇଥିଲେ । ରଥଯାତ୍ରା ପାଇଁ ଯଥା ପଦକ୍ଷେପ ନିଆଯାଇପାରିଲେ, ଅନ୍ୟାନ୍ୟ ଅଞ୍ଚଳରେ ଶକ୍ତିପୀଠଗୁଡ଼ିକ ପାର୍ବଣ ବା ଆଶ୍ୱିନ ମାସରେ କେବଳ ପୂଜା ଆରାଧନା ସହିତ ଦୁର୍ଗାଙ୍କର ସମସ୍ତ ଘଟଣାବଳୀକୁ ଚିତ୍ରିତ କରି ରଥଯାତ୍ରା ପାଇଁ ଆଗେଇ ଆସନ୍ତେ । ବାରିପଦାଠାରେ ଆନ୍ତର୍ଜାତିକ ମହିଳା ବର୍ଷରେ ପ୍ରଥମ କରି ମହିଳାମାନେ ମା' ସୁଭଦ୍ରା ରଥଟିକୁ ଟାଣିଲେ । ପରବର୍ତ୍ତୀ କାଳରେ ମହିଳାମାନଙ୍କର ଆଗ୍ରହ ବଢ଼ିଲା ଓ ଅନ୍ୟାନ୍ୟ ରଥଯାତ୍ରା ପାଇଁ ସ୍ୱତନ୍ତ୍ର ପଦକ୍ଷେପ ନିଆଗଲା । ସେହିପରି ମା' ବିରଜା ଦେବୀଙ୍କର ଦ୍ୱିଭୁଜା ଦୁର୍ଗାଙ୍କର ପ୍ରତିନିଧି ମୁଖାର ରଥଯାତ୍ରାର ଆକର୍ଷଣ ବଢ଼ାଯାଇପାରିଲେ, ରଥଯାତ୍ରାର ପରମ୍ପରା ନୂତନ ସ୍ୱାକ୍ଷର ବହନ କରି ଅନ୍ୟାନ୍ୟ ଭକ୍ତମାନଙ୍କୁ ସେ ଅଞ୍ଚଳକୁ ଗମନ ପାଇଁ ଶକ୍ତିଙ୍କର ଡୋର ଛନ୍ଦି ହୋଇପଡ଼ନ୍ତା ।

୩୫୫, ଶହୀଦ ନଗର
ଭୁବନେଶ୍ୱର

---

## ଫ୍ରେଜର ବାଳିକା ପ୍ରାଥମିକ ବିଦ୍ୟାଳୟର ମାତୃ ଶିକ୍ଷକ ସଂଘର ସଫଳତାର ଆଲେଖ୍ୟ

କେନ୍ଦ୍ରାପଡ଼ାର ସହରତଳି ବସ୍ତିଟିଏ । ସାହିନ୍, ପରବିନ୍, ଆୟେଶା, ନଗ୍‌ମା, ଶେହନାଜ୍, ସାଇବୁନ୍, ରୋଜିଦା ପରି ଅନେକ ଛୋଟ ଛୋଟ ଝିଅ ରୁହନ୍ତି ଏହି ବସ୍ତିରେ । ଏମାନଙ୍କର ଦିନ ଆରମ୍ଭ ହୁଏ ସହରର ଗଳି କନ୍ଦି ବୁଲି କାଚ, ପ୍ଲାଷ୍ଟିକ ଗୋଟାଇବାରେ । ପାଠ ପଢ଼ିବା, ସ୍କୁଲଯିବା ଏମାନଙ୍କ ପାଇଁ ସ୍ୱପ୍ନ । ଏମିତି ଦିନ ଗଡ଼ି ଚାଲିଥାଏ । ଏହି ସମୟରେ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ତରଫରୁ ଏହି ବସ୍ତି ଅଞ୍ଚଳର ପିଲାମାନଙ୍କୁ ସାକ୍ଷର କରିବାର ବ୍ୟବସ୍ଥା କରାଗଲା । ମିଳିତ ପ୍ରଚେଷ୍ଟାରେ ପିଲାମାନେ ନିର୍ଦ୍ଦିଷ୍ଟ ସମୟ ପାଇଁ ଶିକ୍ଷାର କ୍ଷୀଣ ଆଲୋକ ଦେଖିଲେ । ତା'ପରେ ପୁଣି ଫେରିଗଲେ ସେହି ଅନ୍ଧାର ଭିତରକୁ । ଆଶା ତାଙ୍କର ମଉଳିଗଲା । ଏହାର କିଛିଦିନ ପରେ ନିକଟସ୍ଥ ଫ୍ରେଜର ବାଳିକା ପ୍ରାଥମିକ ବିଦ୍ୟାଳୟରେ ମାତୃ ଶିକ୍ଷକ ସଂଘ ଗଠନ କରାଗଲା ଏବଂ ସେମାନଙ୍କର ଦାୟିତ୍ୱ ତଥା ବାଳିକାମାନଙ୍କ ଶିକ୍ଷା ବିଷୟରେ ସେମାନଙ୍କୁ ଅବଗତ କରାଗଲା । ଏହାର ଫଳ ସ୍ୱରୂପ ମାତୃ ଶିକ୍ଷକ ସଂଘର ଜନୈକ ସଭ୍ୟା ମିନତୀ ସାହୁଙ୍କ ଦୃଷ୍ଟି ପଡ଼ିଲା ଏହି ଅଧିକାରରୁ ବଞ୍ଚିତ ପିଲାମାନଙ୍କ ଉପରେ । ନିୟମିତ ସେହି ପିଲାମାନଙ୍କ ଘରକୁ ଯାଇ ସେ ସେମାନଙ୍କର ବାପା ମା'ମାନଙ୍କୁ ଶିକ୍ଷାର ଆବଶ୍ୟକତା ସମ୍ପର୍କରେ ଜଣାଇଲେ । ନାନା ବାଧାବିଘ୍ନର ସମ୍ମୁଖୀନ ହୋଇ ପିଲାମାନଙ୍କ ବାପା ମା'ମାନଙ୍କୁ ସେ ବୁଝାଇ ପାରିଲେ ଏବଂ ନିକଟସ୍ଥ ଫ୍ରେଜର ବାଳିକା ବିଦ୍ୟାଳୟରେ ଆଣି ନାମ ଲେଖାଇବାକୁ ସମର୍ଥ ହେଲେ । ବର୍ତ୍ତମାନ ଏହି ପିଲାମାନେ ବିଦ୍ୟାଳୟରେ ଅଛନ୍ତି ଏବଂ ସମସ୍ତଙ୍କ ସହ ମିଶି ନିଜ ଅଧିକାର ଉପଭୋଗ କରୁଛନ୍ତି । ଆଶାର ହସ ଫୁଟି ଉଠିଛି ଛୋଟ ଛୋଟ ଝିଅମାନଙ୍କ ମୁହଁରେ ।

# ମହିଷମର୍ଦ୍ଦିନୀ ଦୁର୍ଗା ଉପାସନାର ଉନ୍ମେଷ ଓ ବିକାଶ

ସୁଶାନ୍ତ କୁମାର ସ୍ୱାଇଁ

**ଭା**ରତୀୟ ଧର୍ମ ଓ ସଂସ୍କୃତିରେ ଶକ୍ତି ଉପାସନା ଓ ଶାକ୍ତ ପରମ୍ପରାର ଐତିହ୍ୟ ଅତି ପ୍ରାଚୀନ । ଶକ୍ତିର ବିଭିନ୍ନ ସ୍ୱରୂପ ଥିଲେ ମଧ ସେଥିମଧ୍ୟରୁ ଦେବୀ ଦୁର୍ଗା ଉପାସନା ବହୁମାତ୍ରାରେ ଦେଖାଯାଏ । ସେହିପରି ଦେବୀ ଦୁର୍ଗାଙ୍କର ବିବିଧ ରୂପ ମଧ୍ୟରୁ ମହିଷମର୍ଦ୍ଦିନୀ ଦୁର୍ଗା ଉପାସନା ଭାରତବର୍ଷରେ ଅଧିକ ପ୍ରଚଳିତ । ପ୍ରାକ୍ ବୈଦିକ ଯୁଗରୁ ଶକ୍ତି ଉପାସନା ପ୍ରଚଳିତ ଥିବାର ପ୍ରମାଣ ମିଳୁଥିଲେ ମଧ ଶକ୍ତିର ରୂପ ନଥିଲା । କିନ୍ତୁ ବୈଦିକ ଯୁଗରେ ଋଷିଗଣ ଅପୌରୁଷେୟ ବ୍ରହ୍ମଶକ୍ତି ଏକ ଏବଂ ଅଭିନ୍ନ ସ୍ୱରୂପ ପ୍ରଥମେ ବହୁ ଦେବତା ଆରାଧନା ପୂର୍ବକ ତତ୍‌ପରବର୍ତ୍ତୀ ସମୟରେ ଶକ୍ତିଙ୍କୁ ନାରୀ ରୂପରେ ଉପାସନା କରାଯାଇଛି । ସମୟସ୍ରୋତରେ ମହାମାୟା, ମହାକାଳୀ, ମହାଲକ୍ଷ୍ମୀ ଓ ମହାଭଗବତୀ ରୂପରେ ବର୍ଣ୍ଣନା କରାଯାଇଛି । ଜଗଜ୍ଜନନୀ ଦୁର୍ଗାଙ୍କ ମୂର୍ତ୍ତିରେ ଦୁଇଟି ବୈଶିଷ୍ଟ୍ୟ ଥିବାର ଦୃଷ୍ଟିଗୋଚର ହୁଏ । ଗୋଟିଏ ସୁନ୍ଦର, ସୌମ୍ୟା, ସ୍ମିତହାସ୍ୟ ଓ ଶାନ୍ତ ପରିଲକ୍ଷିତ ହେଉଥିବା ବେଳେ ଅପରଟି ଅତି ଭୟଙ୍କର ଦେବୀ ମହିଷମର୍ଦ୍ଦିନୀଙ୍କ ଦ୍ୱିତୀୟ ପର୍ଯ୍ୟାୟ ଶକ୍ତି ସ୍ୱରୂପ କହିଲେ ଅସଙ୍ଗତ ହେବନାହିଁ ।

ଖ୍ରୀଷ୍ଟପୂର୍ବ ତୃତୀୟ ଶତକରେ ରଚିତ 'ମାର୍କଣ୍ଡେୟ ପୁରାଣ' ଅନୁସାରେ ରାଜା ସୁରଥ ପ୍ରଥମେ ଉତ୍କଳରେ ଦୁର୍ଗାପୂଜା ଆରମ୍ଭ କରିଥିଲେ । ରାଜା ସୁରଥ ହେଉଛନ୍ତି ଚେଦିବଂଶର ମହାମେଘବାହନ ଐରଖାରବେଳଙ୍କ ବଂଶଧର ଖାରବେଳ ଏହି ପୁରାଣ ପ୍ରସିଦ୍ଧ ସୁରଥ ରାଜାଙ୍କର ପଞ୍ଚମ ସୋପାନ ବା ପଞ୍ଚମ ବଂଶାନୁକ୍ରମେ ସମୀଚୀନ ମନେହୁଏ । ଖାରବେଳଙ୍କ ପୂର୍ବଜ ସୁରଥ ହେଉଛନ୍ତି ଚେତି । ଚେତ୍ । ଚୈତ୍ରବଂଶର ଜନୈକ କୌଣସି ରାଜାଙ୍କ ସହ ଯୁଦ୍ଧରେ ପରାସ୍ତ ପୂର୍ବକ ବନରେ ଆତ୍ମଗୋପନ କଲେ । ସେଠାରେ ନିଜ ସ୍ତ୍ରୀ ଓ ପୁତ୍ରଦ୍ୱାରା ପରିତ୍ୟକ୍ତ ସମାଧି ନାମକ ଜନୈକ ନିର୍ଦ୍ଧନ ସାଧବଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଉଭୟ ମେଧସ୍ ଋଷିଙ୍କ ଆଶ୍ରମରେ ଆଶ୍ରୟ ନେଇ ତାଙ୍କର ପରାମର୍ଶକ୍ରମେ ଶରତ ଋତୁରେ ନଦୀତଟରେ ଦେବୀ ଦୁର୍ଗାଙ୍କର ମୃଣ୍ମୟୀ ପ୍ରତିମା ନିର୍ମାଣ ପୂର୍ବକ ପୁଷ୍ପଧୂପ ନୈବେଦ୍ୟ ସମର୍ପଣ କରି ଶ୍ରୀ ଶ୍ରୀ ଦେବୀସୂକ୍ତରେ ମା' ଦୁର୍ଗାଙ୍କୁ ପୂଜାର୍ଚ୍ଚନା କଲେ । ପରବର୍ତ୍ତୀ ସମୟରେ ଏହା ଧରାପୃଷ୍ଠରେ ସର୍ବଜନବିଦିତ ହେଲା ।



ଶରତ ଓ ବସନ୍ତ ଋତୁ ପ୍ରାଣୀମାନଙ୍କ ପକ୍ଷେ ଦୁର୍ଗମ ହେତୁ ଆଶ୍ୱିନ ଓ ଚୈତ୍ର ମାସରେ ମଙ୍ଗଳ କାମନା ପୂର୍ବକ ଦୁର୍ଗାଦେବୀ ଉପାସନା କରାଯାଏ । ଶାରଦୀୟ ଦୁର୍ଗୋତ୍ସବ ଆଶ୍ୱିନ କୃଷ୍ଣ ମୂଳାଷ୍ଟମୀରୁ ଆଶ୍ୱିନ ଶୁକ୍ଳ ମହାଷ୍ଟମୀ ପର୍ଯ୍ୟନ୍ତ ଦେବୀ ପକ୍ଷରେ ଦୁର୍ଗାଦେବୀଙ୍କର ଷୋହଳ ଦିବସ ବ୍ୟାପୀ ମହାପୂଜା ପାଳିତ ହୁଏ । ଏହାକୁ ମହାପାର୍ବଣ କୁହାଯାଏ । ଶରତକାଳୀନ ଓ ବସନ୍ତ କାଳୀନ ମୃଣ୍ମୟୀ ମୂର୍ତ୍ତି ଦୁର୍ଗୋପାସନା ବେଳେ ସାଧାରଣତଃ ଦେବୀ ସିଂହବାହିନୀ ମହିଷମର୍ଦ୍ଦିନୀ ରୂପେ ପୂଜା ପାଇଥାନ୍ତି । ଭୁବନେଶ୍ୱର ବ୍ରହ୍ମେଶ୍ୱର ଗ୍ରାମରେ ଅବସ୍ଥିତ ଅଷ୍ଟମ ଶତାବ୍ଦୀର ନୌବାହିନୀରେ ଅବତୀର୍ଣ୍ଣ ମହିଷାମର୍ଦ୍ଦିନୀ, ସର୍ବପ୍ରାଚୀନ ମହିଷମର୍ଦ୍ଦିନୀ ମା' ବିରଜା (ଯାଜପୁର), ମାର୍କଣ୍ଡେଶ୍ୱର ମନ୍ଦିରର ଚତୁର୍ଭୁଜା ଓ ଦ୍ୱିଭୁଜା ମହିଷାମର୍ଦ୍ଦିନୀ, ଗାରେଡ଼ି ପାଞ୍ଚ ଶିବ ମନ୍ଦିର ଗାତ୍ରରେ ଦ୍ୱିଭୁଜା ମହିଷମର୍ଦ୍ଦିନୀ, ସାଲେପୁର ଶୁକ୍ଳେଶ୍ୱର ଗ୍ରାମର ମାଣିକେଶ୍ୱର ମନ୍ଦିରର ଦ୍ୱିଭୁଜା ମହିଷମର୍ଦ୍ଦିନୀ କେବଳ ଓଡ଼ିଶାରେ ନୁହେଁ, ସମଗ୍ର ଭାରତବର୍ଷରେ ବିଭିନ୍ନ ସ୍ଥାନରେ ଦ୍ୱିଭୁଜଠାରୁ ଆରମ୍ଭ କରି ବିଂଶହସ୍ତ ବିଶିଷ୍ଟ ମହିଷମର୍ଦ୍ଦିନୀ ଦୁର୍ଗା ପରିଲକ୍ଷିତ ହୋଇଥାଏ ।

ତେଣୁ ଏହି ମହିଷମର୍ଦ୍ଦିନୀ ଦୁର୍ଗା ଉତ୍ପତ୍ତି ଓ ଏହାର ବୈଶିଷ୍ଟ୍ୟ ପ୍ରତିପାଦନ କରିବା ଉକ୍ତ ପ୍ରବନ୍ଧର ମୁଖ୍ୟ ଉପଜୀବ୍ୟ ।

ଓଡ଼ିଶାରେ ପ୍ରଥମେ ମୃଣ୍ମୟୀ ମହିଷମର୍ଦ୍ଦିନୀ ଦୁର୍ଗା ଉପାସନା ହୋଇଥିବାରୁ ଏବଂ ଉତ୍କୃଷ୍ଟ କଳାର ଦେଶ ଉତ୍କଳର ମନ୍ଦିର ଗାତ୍ର, ଠଣା, ଭାସ୍କର୍ଯ୍ୟ ଓ ସ୍ଥାପତ୍ୟରେ ବିଭିନ୍ନ ଶୈଳୀରେ ମହିଷମର୍ଦ୍ଦିନୀ ପୂଜା ପାଉଥିବା ଦୃଷ୍ଟିରୁ ବିଚାର କରି ଆଗେ ଓଡ଼ିଶା ପ୍ରସଙ୍ଗ ଉପରେ ଆଲୋଚ୍ୟ କରିବା ଅଧିକ ଯୁକ୍ତିସଂଗତ ।

ପ୍ରାଚୀନ କାଳରେ ଓଡ଼ିଶାର ନୌବାଣିଜ୍ୟ ଭାରତବର୍ଷ ମଧ୍ୟରେ ସୀମିତ ନରହି ବିଶ୍ୱବ୍ୟାପୀ ପ୍ରସାର ଓ ପ୍ରଚାର ହୋଇପାରିଥିଲା । ସାଧବ ପୁଅମାନେ ବହିର୍ବାଣିଜ୍ୟ ଓ ଅନ୍ୟଜାତିର ପୁରୁଷମାନେ ଯୁଦ୍ଧକାର୍ଯ୍ୟ ଓ ମନ୍ଦିର ନିର୍ମାଣରେ ସମୟ ବ୍ୟତିକ୍ରମ କରୁଥିବାବେଳେ ଓଡ଼ିଆ ଘରର ଝିଅ ଓ ନାରୀମାନେ ସାଧାରଣତଃ ଗୃହକର୍ମ ଓ କୃଷିକର୍ମରେ ନିଯୁକ୍ତି ହେଉଥିଲେ । ଏପରିକି ଫସଲ ଅମଳ, ଏହାର ରକ୍ଷଣାବେକ୍ଷଣ ଦାୟିତ୍ୱରେ ସ୍ତ୍ରୀଲୋକେ ସାମିଲ ହେଉଥିଲେ । ମୁଖ୍ୟତଃ ବିଲରେ ଫସଲ କିପରି ସୁରକ୍ଷାରେ ଅଧିକ ଅମଳ ହୋଇପାରିବ ତା'ର ତତ୍ତ୍ୱାବଧାନ ପ୍ରଧାନତଃ ନାରୀମାନଙ୍କ ଉପରେ ନ୍ୟସ୍ତ ଥିଲା । ତେଣୁ ବୀରାମାନଙ୍କୁ ବିବେଚନା କରାଯାଉଥିଲା । ଏହି ବୀରାମାନେ ସାଧାରଣତଃ ଉକ୍ତ କାର୍ଯ୍ୟରେ ନିୟୋଜିତ ହେଲାବେଳେ ବିଭିନ୍ନ ଅସ୍ତ୍ରଶସ୍ତ୍ରମାନ ହସ୍ତରେ ଧାରଣ କରୁଥିଲେ । ଫସଲ କ୍ଷତି କରିବାରେ ପ୍ରଧାନତଃ ବଣହସ୍ତୀ, ଷଣ୍ଢ, ମହିଷ ପ୍ରଭୃତି ଦାୟୀ ଥିଲେ । ତେଣୁ ତାଙ୍କ ସହିତ ବେଳେବେଳେ ଏହି ବୀରାନାରୀମାନଙ୍କୁ ମୁହାମୁହିଁ ସଂଗ୍ରାମ କରିବାକୁ ପଡୁଥିଲା । ଆବଶ୍ୟକ ପଡ଼ିଲେ ଏମାନେ ନିଜର ଅସ୍ତ୍ରଶସ୍ତ୍ର ଦ୍ୱାରା ଏମାନଙ୍କୁ ଆଘାତ କରୁଥିଲେ ନଚେତ୍ ସଂପୂର୍ଣ୍ଣ ନିପାତ କରିବାକୁ ପଡୁଥିଲା । ଏହି ବୀରାମାନଙ୍କ ବୀରତ୍ୱର ପ୍ରତିଛବି ସମୟ ସ୍ରୋତରେ ଦେବୀ ଦୁର୍ଗାର ପ୍ରତିଫଳନର ରୂପ କହିଲେ ସମ୍ଭବତଃ ଭୁଲ ହେବ ନାହିଁ ।

ଦେବୀ ଦୁର୍ଗା ପ୍ରଥମେ ବୃଷଭମର୍ଦ୍ଦିନୀ ଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ମହିଷମର୍ଦ୍ଦିନୀ ହୋଇଛନ୍ତି । ଏହାର ବିଶେଷତ୍ୱ ହେଉଛି ଦେବୀଦୁର୍ଗା ଉତ୍ପତ୍ତି ବେଳେ ଆଦ୍ୟାଶକ୍ତି ରୂପେ ପୂଜା ପାଉଥିଲେ ଏବଂ କାହାର ପତ୍ନୀ ହୋଇନଥିଲେ । କିନ୍ତୁ ସମୟ ସୋପାନରେ ଦେବୀଦୁର୍ଗା ମହାଦେବ ଶିବଶଙ୍କରଙ୍କ ପତ୍ନୀ ରୂପେ ପୂଜା ପାଇଲେ । ଶିବଙ୍କର ବାହନ ବୃଷଭ ଦୃଷ୍ଟିରୁ ଦେବୀଦୁର୍ଗା ବୃଷଭ ନିଧନ କରିବା ଅସଙ୍ଗତ ମନେ ହେଲା । ତତ୍ପରେ ଶିଳ୍ପୀ ପ୍ରସ୍ତର ଗାତ୍ରରେ ଓ ମୃଣ୍ମୟ ଶିଳ୍ପରେ ମହିଷ ନିଧନ କରିବାର ଦିଗ୍‌ଦର୍ଶନ ଦେଲା । ଦେବୀଦୁର୍ଗା ଏକାଧାରରେ ପରମ ବୈଷ୍ଣବୀ ଓ ବିଷ୍ଣୁଙ୍କ ବଲ୍ଲଭୀ ବୋଲି ସାରଳା ଦାସ ଦେବୀ ଭାଗବତ ବା ଚଣ୍ଡିପୁରାଣରେ ଉଲ୍ଲେଖ କରିଛନ୍ତି । ସେ ଯାହାହେଉ ମହିଷମର୍ଦ୍ଦିନୀ ଦୁର୍ଗା ମୂର୍ତ୍ତି ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ଚାରିଶ୍ରେଣୀରେ ବିଭକ୍ତ କରାଯାଇପାରେ । ଯଥା- ୧. ମହିଷ ଶରୀରଯୁକ୍ତ ମହିଷାସୁର ବଧ କରୁଥିବାର ଦେବୀ ଦୁର୍ଗା । ୨. ମନୁଷ୍ୟ ଶରୀର ଓ ମହିଷ ଶିରଯୁକ୍ତ ମହିଷାସୁର ବଧ କରୁଥିବା ଦୁର୍ଗା । ୩. ମସ୍ତକ ବିହୀନ ମହିଷ ଗଣ୍ଡିରୁ ନିଷ୍କ୍ରାନ୍ତ ମନୁଷ୍ୟରୂପୀ ମହିଷାସୁର ବଧ କରୁଥିବା ଦୁର୍ଗା । ୪. ସଂପୂର୍ଣ୍ଣ ମାନବ ଶରୀରଧାରୀ ମହିଷାସୁର ବଧ କରୁଥିବା ଦୁର୍ଗା ।

ଦେବୀ ମହିଷମର୍ଦ୍ଦିନୀଙ୍କୁ ଶାରଦୀୟ ଓ ବାସନ୍ତିକ ସମୟରେ ଆମର ହୃଦୟ ରୂପକ ଦୁର୍ଗରେ ଆସୀନ ହୋଇ ଅସତ୍ୟ, ଅନ୍ୟାୟ, ଅଜ୍ଞାନଭିତ୍ତିକ ଦୁର୍ଗତିକୁ ବିନାଶ କରିଥାନ୍ତି । କେବଳ ସେତିକି ନୁହେଁ, ସମାଜ ମଧ୍ୟରୁ ଆସୁରିକ ଶକ୍ତିକୁ ଦୂର କରିବା ପାଇଁ ଦେବୀ ମହିଷମର୍ଦ୍ଦିନୀଙ୍କୁ ଆରାଧନା କରାଯାଏ । କେବଳ ଓଡ଼ିଶାରେ ନୁହେଁ, ସମଗ୍ର ଭାରତବର୍ଷରେ ଶରତକାଳୀନ ଅକାଳବୋଧନ ବିଜୟାଦଶମୀ ମହାପାର୍ବଣ ଦେବୀପୂଜା ନବଦିନାତ୍ମକ ମହାସମାରୋହରେ ଅନୁଷ୍ଠିତ ହୋଇଥାଏ ।

ଗୌରୀନଗର, ପ୍ଲଟ ନଂ-୪୫୮
ପୁରୁଣା ଭୁବନେଶ୍ୱର-୭୫୧୦୦୨

# ତଥ୍ୟ ଜାଣିବାର ଅଧିକାର

ଓମ୍ ପ୍ରକାଶ ମହାପାତ୍ର

ଜାଣିବାର ଅଧିକାର ବି ଥିଲା ଶିଶୁର
ମା' ପେଟୁ ଜାଣିଥିଲା ଭେଦ ଚକ୍ରବ୍ୟୂହର ।
କାଳକ୍ରମେ ହ୍ରାସ ପାଇ ଲୁଚିଗଲା ଦାଣ୍ଡଦୁଆର
ବ୍ୟଭିଚାରେ ମିଳିଲା ଶାସ୍ତି କେତେ ବାର ବାର ।
ଉପଦେଶ ଗୀତା ଭାଗବତ ସନ୍ଥ ବାଣୀ ମାନିଗଲା ହାର
ଆଇନ କରି ଦଣ୍ଡ ଦେବା ହେଲା ଶ୍ରେୟସ୍କର ।
ଅନ୍ଧାରେ ଅଜ୍ଞଯଜ୍ଞ ଆଣିଥାଏ ଅନିଷ୍ଟ ପ୍ରଚୁର
ହିଂସା ଦୁର୍ନୀତି ଭ୍ରଷ୍ଟାଚାର ହୁଅନ୍ତି ନସର ପସର ।
ଏ ଅଧିକାରେ ପରା ସୁଧୁରିବ ରୂପଗୁଣ ଦୁନିଆର
ମିଳିଛି ସ୍ୱୀକୃତି ଏହାକୁ ସବୁ ଜନତାର ବିଶ୍ୱ ଦରବାର ।
ସ୍ୱଚ୍ଛ ଏକ ରୂପ ସଦା ବନ୍ଦନୀୟ କମନୀୟ ସବୁଠାର
ବୁର୍ଖା ପିନ୍ଧାଇ କଥା କାର୍ଯ୍ୟ ନକର କଦାକାର ।
କାନକୁହା ବେଠିବୁହା ଲୁଚାଲୁଚି କାର୍ଯ୍ୟ ଘୃଣ୍ୟର
ସହି ସହି ମନମହି ହେଲାଣି ବିକଳାଙ୍ଗ କେତେ ଢଙ୍ଗର ।
ସାହସ ବାନ୍ଧି କର ବ୍ୟବହାର ସଳଖିବ ଭାଗ୍ୟ ଆମର
ଏ ତଥ୍ୟ ଜାଣିବାର ଅଧିକାର ।

ଉପଶାସନ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର

# ଓଡ଼ିଶାରେ ଯୋଦ୍ଧୃବେଶୀ ଚତୁର୍ଭୁଜା ଦୁର୍ଗା ଓ ସାମରିକ ଶୋଭାଯାତ୍ରାର ଉତ୍ପତ୍ତି

ଡକ୍ଟର ଜନ୍ମେଜୟ ଚୌଧୁରୀ

**ସ**ମଗ୍ର ଜୀବଜଗତ ମିଶି ସନାତନ ଆର୍ଯ୍ୟ ସଂସ୍କୃତିରେ ଓ ଧର୍ମରେ 'ପୁରୁଷ' ଉଦ୍ଭବ ହୋଇଥିଲା । ଯାହାକୁ ବୈଦେଶିକ ପ୍ରଭାବରେ ଆମେ ହିନ୍ଦୁ ଧର୍ମ ବୋଲି କହିଥାଉ, ତାହା ପ୍ରକୃତରେ କୌଣସି ଧର୍ମ ନୁହେଁ । ସେଥିରେ ଈଶ୍ୱର ଭାବର ମଧ୍ୟ ସ୍ପର୍ଶ କଦାପି ନ ଥିଲା । ପୁରୁଷ ବ୍ରହ୍ମ ହିଁ ଥିଲା ତା'ର ଧ୍ୟେୟ । ସବିତାଙ୍କ ପ୍ରାୟ ତେଜସ୍ୱର ପୁରୁଷ ହିଁ ତା'ର ଆଦର୍ଶ ଥିଲା । କାଳକ୍ରମେ ନିର୍ଗୁଣ ବ୍ରହ୍ମ ହିଁ ଥିଲେ ଶ୍ରୀଜଗନ୍ନାଥ ଯେ କି ବିଶ୍ୱ ସମସ୍ତଙ୍କର ସମନ୍ୱୟ । ନିର୍ବିକାର ବଡ଼ ଅପଣିପାଦ ନିର୍ଗୁଣ । ଭାରତବର୍ଷରେ ଏକାଦଶ ଶତାବ୍ଦୀରେ ମାନସିକ ଦୁର୍ବଳତାରୁ ଭକ୍ତିବାଦ ସୃଷ୍ଟି ହେଲା । କାଳକ୍ରମେ ରାଜା ଓ ଶାସକ ଭକ୍ତି ଭାବରେ ପ୍ରଣୋଦିତ ହୁଅନ୍ତେ ପୁରୁଷ ବା ମାନବିକ ମନୋଭାବ ଉପରେ ଆଘାତ ଆସିଲା । ଉତ୍କଳ ପୁରୁଷ ହୋଇ ବହୁ ଦିନ ଥିଲା । ପ୍ରଚାର ଦ୍ୱାରା ପରବର୍ତ୍ତୀ ସମୟରେ ଶ୍ରୀଜଗନ୍ନାଥଙ୍କୁ ବୈଷ୍ଣବ ଧର୍ମରେ ବିଷ୍ଣୁ କୁହାଗଲା । କିନ୍ତୁ ଐତିହାସିକ ବା ପୌରାଣିକ ବିଷ୍ଣୁ ଏବଂ ବୈଷ୍ଣବମାନଙ୍କ ବିଷ୍ଣୁ ଦୁଇଟି ସ୍ୱତନ୍ତ୍ର ସମସ୍ୟା ହେଲେ ହେଁ ଜାତୀୟ ଅଧୋଗତି ଯୋଗୁଁ ଜଗଦୀଶ ଶ୍ରୀଜଗନ୍ନାଥ କାଳକ୍ରମେ ନାନା ଧର୍ମର କ୍ରୀଡ଼ାପୁତ୍ତଳି ହେଲେ । ମାତ୍ର ସ୍ମାର୍ତ୍ତ ପଦ୍ଧତିକୁ କେହି ହଟାଇ ପାରିଲେ ନାହିଁ । କିନ୍ତୁ ଭକ୍ତିବାଦ ନାନା ଗ୍ରନ୍ଥରେ, ନାନା ପ୍ରଚାରରେ ଶ୍ରୀଜଗନ୍ନାଥଙ୍କୁ ଆପଣାର କରି ନେଲେ । କାଳର ଗତିରେ ଯେଉଁ ସ୍ମୃତି ଶାସ୍ତ୍ର ରଚିତ ହେଲା, ତା' ମଧ୍ୟ ଜାତିକୁ ପଙ୍ଗୁ କରିଚାଲିଲା । ପର୍ବପର୍ବାଣିର ଦିନ ନିର୍ଣ୍ଣୟ, ସ୍ପର୍ଶ ସର୍ଶ୍ୱବିଚାର, ତିଥିବାର ବିଚାର ନିରନ୍ତର କରିବା ଦ୍ୱାରା ପୁରୁଷ ଭାବ ସମାଜରୁ ଦୂର ହୋଇଥିଲା । ଏହି ପରିପ୍ରେକ୍ଷୀରେ ନାଗସ ଗୋତ୍ରଜାତ ରାଜା ରାମଚନ୍ଦ୍ର ଦେବ (୧୫୬୮-୧୬୦୬)ଙ୍କ ରାଜଗୁରୁ ମହାମ୍ବର୍ଦ୍ଧନ ମହାପାତ୍ର 'ପୁରୁଷୀ' ସୃଷ୍ଟି କରି ମାନବିକତାର ସୁରକ୍ଷାରେ ଦୁର୍ଗୋତ୍ସବ ବିଧି ପୁନର୍ବାର ଗଢ଼ିଲେ । ତାଙ୍କର ଏହି ପଦ୍ଧତିରେ ବୈଦିକ 'ପୁରୁଷ' ସଂସ୍କାର ବଦଳରେ ସେ 'ପୁରୁଷୀ'କୁ ଗ୍ରହଣ କରିଛନ୍ତି । ୧୫୬୨ରେ ଏହି 'ପୁରୁଷୀ' ପୂଜା ପଦ୍ଧତି ରାଜା ରାମଚନ୍ଦ୍ର ଦେବଙ୍କ ସାତ ଅଙ୍କରେ ପୁନଃ ଆରମ୍ଭ ହେବାରୁ ମନ୍ତ୍ରର ଅକ୍ଷର ସଂଖ୍ୟା ୩୮ ରଖାଗଲା । ଏହି ମନ୍ତ୍ର ଥିଲା -

ଓଁ ଉତ୍ତିଷ୍ଠ ପୁରୁଷି, କିଂ ସ୍ୱପିସି, ଭୟଂ ମେ
ସମୁପସ୍ଥିତଂ, ଯଦି ଶକ୍ୟ ମଶକ୍ୟଂ ଦୁଂ ଦୁଗେ
ଭଗବତୀ ଶମୟ ସ୍ୱାହା


ମା' ଭଗବତୀ, ବାଣପୁର

ଏହାର ଅର୍ଥ ହେଲା, ହେ ପୁରୁଷ ! ଶୋଇଛ କାହିଁକି ? ଭୟ ସମୁପସ୍ଥିତ । ତୁମେ ଶକ୍ୟ ହୁଅ କି ନହୁଅ, ହୁଁକାର ଭଗବତୀ ଦୁର୍ଗା ଯେପରି ମାନବଜାତିର ଦୁର୍ଦ୍ଦଶା ମୋଚନ କରିଥିଲେ, ତାଙ୍କୁ ସ୍ମରଣକରି ତୁମେ ତଦ୍ରୂପ ଶତ୍ରୁନାଶ କର । ଶାନ୍ତି ଦାନ କର । ଏହି ପୁରୁଷୀ ପୁରୁଷଙ୍କର ଲିଙ୍ଗପରିବର୍ତ୍ତନ ମାତ୍ର । ଆର୍ଯ୍ୟ ସଂସ୍କୃତିର ଗାୟତ୍ରୀ ମନ୍ତ୍ର 'ତତ୍ ସବିତୁର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି ଧିୟୋଯୋନଃ ପ୍ରଚୋଦୟାତ୍', ଅର୍ଥାତ୍ ଆମେ ସେହି ସବିତାଙ୍କର ବରେଣ୍ୟ ତେଜକୁ ଧ୍ୟାନ କରୁ ଯେ ଆକାଶ, ପୃଥିବୀ ଏବଂ ସ୍ୱର୍ଗରେ ବ୍ୟାପ୍ତ, ସେ ଆମ୍ଭମାନଙ୍କୁ ତେଜସୂର ଭାବେ ପ୍ରଚୋଦିତ କରନ୍ତୁ - ଏହାର ସମାମ୍ନୀୟ । ଏହି ପୁରୁଷ ଧର୍ମ ବଦଳରେ ହେ ପ୍ରଭୁ, ହେ ଠାକୁର, ହେ ଦୟାମୟ, ମୋତେ ଦୟାକର, ଶରଣ ଦିଅ, ମୁଁ ମହାପାପୀ, ମୁଁ ଅକ୍ଷମ, ମୁଁ ଅଧମ । ଏସବୁ ଭକ୍ତିବାଦରେ ହିଁ ଫୁଟିଲା । ତାହା ସବଳକୁ ଦୁର୍ବଳ କରି ଚାଲିଲା । ଖ୍ରୀଷ୍ଟିୟାନ ଧର୍ମ ବା ମୁସଲମାନ ଧର୍ମ ଭକ୍ତିମୂଳକ ହେଲେ ହେଁ ସେମାନଙ୍କର ଉପାସନା ସ୍ୱତନ୍ତ୍ର ଏବଂ ସମାଜର ବ୍ୟକ୍ତିର କାର୍ଯ୍ୟ ସ୍ୱତନ୍ତ୍ର । ମୁସଲମାନ ତରବାରୀ ଧାରରେ ତା' ଭକ୍ତିଧର୍ମ ପ୍ରଚାର କରେ । ଖ୍ରୀଷ୍ଟିୟାନ ମାନବ ଧର୍ମରେ ରହି କେବଳ ଖ୍ରୀଷ୍ଟଙ୍କୁ ସମ୍ମାନ ଦିଏ । ତେଣୁ ସେମାନେ ଏକତାବଦ୍ଧ ଭାବରେ ନିଜର ମାନବିକତା

ରଖିବାରେ କଦାପି ପଶ୍ଚାତପଦ ହୋଇ ନାହାନ୍ତି । କିନ୍ତୁ ଏଠି କ'ଣ ହେଲା ? ଭକ୍ତି ଧର୍ମକୁ ଲୋକେ ମାନବିକତାଠାରୁ ସ୍ୱତନ୍ତ୍ର ନ ଦେଖି ସବୁକଥାରେ ଆଶା ରଖିଲେ ଈଶ୍ୱର ତାଙ୍କ ପାଇଁ ସବୁ କରି ଦେବେ । ଈଶ୍ୱରଙ୍କ ନାମରେ କାଢ଼ିଲେ ଜୀବନର ମୁକ୍ତି । ଏହା କି ପ୍ରଚାର ଦର୍ଶନ ବୁଝି ହୁଏ ନାହିଁ । ସକାଳୁ ସ୍ନାନ ସାରି ଚିତାଚଇତନରେ ଭୂଷିତ ହୋଇ ନାମ ଜପ କଲେ ସବୁ ମିଳିଯିବ । ବିଶେଷ କରି ରାଜଗୁରୁ ମହାପାତ୍ର ଦେଖିଲେ ଯେ ସମଗ୍ର ଉତ୍କଳୀୟ ନିରାମିଶାଷୀ ହୋଇ ଦୁର୍ବଳ ହୋଇ ଗଲେଣି ଯେଉଁଠି ପ୍ରଚୁର ଦୁଗ୍ଧର ଅଭାବ, ସେଠି ଜୀବକୋଷ ପାଇଁ ଆମିଷ ଏକାନ୍ତ ପ୍ରୟୋଜନ । ତେଣୁ ନିରାମିଷ ଭୋଜନ ଏବଂ କପଟପୂର୍ଣ୍ଣ ଧର୍ମ ବ୍ୟଭିଚାର ବଢ଼ି ଚାଲିଛି । ଏହାକୁ ବନ୍ଦ କରିବାକୁ ଯାଇ ରାଜଗୁରୁ ମହାପାତ୍ର ସ୍ମାର୍ତ୍ତ ପଦ୍ଧତିରେ ଚଳୁଥିବା ଗୋଦାବର ମିଶ୍ରଙ୍କ 'ଶାରଦା ଶରଦାର୍ଚ୍ଚନ' ପଦ୍ଧତିକୁ ବର୍ତ୍ତମାନ ପାଇଁ ଯଥେଷ୍ଟ ସମୟୋପଯୋଗୀ ମନେ ନକରି ଦିଗ୍‌ବିଜୟ ଅବତାରିଣୀ ଶକ୍ତିମୟୀ ଯୋଦ୍ଧୃବେଶୀ ଦାନବ ସଂହାରିଣୀ ଚତୁର୍ଭୁଜା ଦୁର୍ଗାଙ୍କୁ ଅବଲମ୍ବନ କରି 'ଦୁର୍ଗୋତ୍ସବ ଚନ୍ଦ୍ରିକା' ନାମକ ଏକ ଗ୍ରନ୍ଥ ରାଜା ରାମଚନ୍ଦ୍ର ଦେବ ଏବଂ ମୁକ୍ତିମଣ୍ଡପର ବିଦ୍ୱାନମାନଙ୍କ ମତାମତରେ ରଚନା କରିଥିଲେ । ଯଦିଓ ଦୁର୍ଗାପୂଜା କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବଙ୍କ ସମୟରୁ ରାଜଗୃହରେ ହୋଇ ଆସୁଥିଲା । ଗଜପତି କପିଳେନ୍ଦ୍ର ଦେବଙ୍କ ସମୟର ମହାକବି ଶାରଳା ଦାସଙ୍କ ମହାଭାରତରୁ ଏବଂ ୧୪୭୧ ପୋତେଶ୍ୱର ଭଟ୍ଟଙ୍କ ତାମ୍ର ଶାସନରୁ ଜଣାଯାଏ ଯେ, ଗଜପତି ପୁରୁଷୋତ୍ତମ ଦେବ 'ଦୁର୍ଗୋତ୍ସବ' ନାମରେ ଏକ ପୂଜା ପଦ୍ଧତି ନିଜେ ରଚନା କରି ତଦ୍ୱାରା ତାଙ୍କ ଗୃହ ଦେବତାଙ୍କୁ ପୂଜା କରୁଥିଲେ । ଏ ପୂଜା ପଦ୍ଧତି ରାଷ୍ଟ୍ରୀୟ ହୋଇପାରି ନଥିଲା, କିନ୍ତୁ ଜୟଦୁର୍ଗାଙ୍କ ପୂଜା ୧୪୩୫ ପୂର୍ବରୁ ଥିବାର ଜଣାଯାଏ । (A.D.C. of S.M. of Orissa, Vol.1, page x x)


ମା' ଉଗ୍ରତାରା, ଭୁଷଣ୍ଡପୁର

ରାଜଗୁରୁ ମହାପାତ୍ର ପରମ୍ପରାନୁମୋଦିତ ଚତୁର୍ଭୁଜା ଦୁର୍ଗାପୂଜା ସାମରିକ ଉତ୍ସବଭାବେ ସର୍ବବ୍ୟାପକ କରି ଆରମ୍ଭ କଲେ । ଏହା ପ୍ରଥମେ ବିମଳାପୀଠରୁ ଆରମ୍ଭ କରି ସର୍ବତ୍ର ବିଭିନ୍ନ ଦେବୀପୀଠମାନଙ୍କରେ ଶାରଦୀୟ ଷୋଡ଼ଶ ଦିବସ, ଦଶହରାରେ ଦୁର୍ଗାମାଧବଙ୍କ ଜୈତ୍ରଯାତ୍ରା ଘେନି ସମଗ୍ର ରାଷ୍ଟ୍ରକୁ ପ୍ରକମ୍ପିତ କରିଦେଲା । ବାସନ୍ତୀଙ୍କ ନବଦିବସ (ନବପତ୍ରିକା) ପୂଜାର ବିରାଟ ଆୟୋଜନ କରାଗଲା । ରଥରେ ବସି ଦେବୀ ଭ୍ରମଣ କରି ଯିବାର ମଧ୍ୟ ସାମରିକ ଗୁରୁତ୍ୱ ରଖାଗଲା । ଦେବୀଙ୍କ ଭୋଗରେ ମାଛ ଏବଂ ପଶୁବଳି ସ୍ୱୀକୃତ ହେଲା । ଏପରିକି ଶ୍ରୀମନ୍ଦିର ମଧ୍ୟରେ ଚତୁର୍ଭୁଜା ବିମଳାପୀଠରେ ପର୍ବବେଳେ ପଶୁବଳି ଦିଆଗଲା । କାରଣ ଧର୍ମଶାସ୍ତ୍ରରେ ଏବଂ ରାମାୟଣ ଓ ମହାଭାରତ ଆଦି ଗ୍ରନ୍ଥରେ ଏବଂ ସର୍ବୋତ୍ତମ ମାନବ ଧର୍ମଶାସ୍ତ୍ର ମନ୍ତ୍ରରେ ମତ୍ସ୍ୟ, ମାଂସ, ଭକ୍ଷଣ କଦାପି ନିଷେଧ ନଥିଲା । ତେଣୁ ରାଜଗୁରୁ ମହାପାତ୍ର ଶରତକାଳୀନ ଦୁର୍ଗାପୂଜା ଓ ବାସନ୍ତୀଙ୍କ ନବପତ୍ରିକା ଦୁର୍ଗାପୂଜା ଯଥାକ୍ରମେ ଷୋଳ ଓ ନଅ ଦିନରେ ଦେବୀଙ୍କର ଭୋଗ ପାଇଁ ଆମିଷ ବ୍ୟବସ୍ଥା କଲେ ଏବଂ ବଳି ପ୍ରଥା ପୁନଃ ପ୍ରଚଳିତ କଲେ । ମହାସମାରୋହରେ ୭ମୀ, ୮ମୀ, ୯ମୀ ପୂଜାରେ ଶତଶତ ଛାଗ, ମେଷାଦି ବଳି ପଡ଼ିଲା । ବଳି ମାଂସ ପ୍ରସାଦ ସ୍ୱରୂପ ଲୋକେ ଗ୍ରହଣ କଲେ । ଦେବୀଙ୍କ ଭୋଗରେ ମାଛ ମଧ୍ୟ ପ୍ରଚଳିତ ହେଲା ।

ମେଷ ସ୍ତଥୈବ ମହିଷଶ୍ଛାଗ
ଶ୍ଚୈବାଥ କୁକ୍କୁଟ ବରାହୌ
ଦୁର୍ଗାୟା ବଳିକର୍ମଣି ପଶବଶ୍ଚୈତେ
ପ୍ରଶଂସ୍ୟନ୍ତେ ।

ଏଥି ନିମନ୍ତେ ନିରୋଗ, ଅବ୍ୟଙ୍ଗ ପଶୁର ବ୍ୟବସ୍ଥା କଲେ । ଯେଉଁ ପଶୁ ଚାରି ବର୍ଣ୍ଣରେ ପରମ୍ପରାରୁ ଖାଦ୍ୟ ହୋଇ ରହିଥିଲା, ତାହା ସେ ଖାଇଲେ । ଅର୍ଥାତ୍ ଯେ ଉତ୍କଳରେ ନିମ୍ନବର୍ଣ୍ଣ ଥିଲେ ସେମାନେ ବରାହ, କୁକ୍କୁଟ ଇତ୍ୟାଦି ଖାଇଲେ ଏବଂ ମେଷ, ଛାଗ ମାଂସ ଉଚ୍ଚବର୍ଣ୍ଣର ଲୋକେ ଭୋଜନ କଲେ । ଭୋଜି ହୋଇ ମଧ୍ୟ ଦେବୀ ପ୍ରସାଦ ବଢ଼ାଗଲା । 'ହିନ୍ଦୁ ଧର୍ମ ଆଚାରବିଚାର' ପୁସ୍ତକରେ ଯାହା ସ୍ୱର୍ଗତଃ ପଦ୍ମଚରଣ ପଟ୍ଟନାୟକ ଲେଖିଛନ୍ତି, ସେ ରାଜଗୁରୁ ମହାପାତ୍ରଙ୍କ ଏହି ବିଚାର ଅବହିତ ନଥିଲେ ହେଁ ଶାସନୀ ବ୍ରାହ୍ମଣମାନଙ୍କୁ ଏଥିପାଇଁ ଧନ୍ୟ ଧନ୍ୟ କରିଛନ୍ତି । ନହେଲେ ସମଗ୍ର ଉତ୍କଳ ନିରାମିଶାଷୀ ହୋଇ ଅତି ଦୁର୍ବଳ ହୋଇ ଲୋପପାଇ ଯାଇଥାନ୍ତା । କାରଣ ଯେଉଁଠି ଘୃତ, ଦୁଗ୍ଧ ଆଦି ପୁଷ୍ଟିକର ଖାଦ୍ୟ ନାହିଁ, ସେଠି ଶାଗ ଖାଇ ଏ ଜାତି କେତେକାଳ ବଞ୍ଚି ରହିଥାନ୍ତା ?

ସମଗ୍ର ଉତ୍କଳର ପ୍ରତିନୃପତି, ଭଟ୍ଟମିଶ୍ର, ସାମନ୍ତ ବ୍ରାହ୍ମଣ ଗୋଷ୍ଠୀ ଓ ବୈଦିକ ଗୋଷ୍ଠୀ ଏପରିକି ବହୁ ସରଦାର ଓ ଦଳବେହେରାଙ୍କ ଘରେ ଏହି ଚତୁର୍ଭୁଜା ଜୟଦୁର୍ଗା ବା ବନଦୁର୍ଗାଙ୍କର ଧାତୁ ପ୍ରତିମାଙ୍କ ପୂଜା ମହାଡ଼ମ୍ବରରେ ରାଜଗୁରୁ ମହାପାତ୍ରଙ୍କ 'ଦୁର୍ଗୋତ୍ସବ ଚନ୍ଦ୍ରିକା' ଅନୁସାରେ ଅଦ୍ୟାବଧି ଚଳୁଅଛି । ଦଶହରା ସମଗ୍ର ଜାତିର ଏକ ସାମରିକ ପର୍ବ ଥିଲା । କିନ୍ତୁ ବଙ୍ଗୀୟମାନେ ଓଡ଼ିଶାର ଦୁର୍ବଳ ସମୟ ଦେଖି ଇଂରେଜ ଶାସନ ସମୟରେ କଟକ, ପୁରୀରେ ଦଶଭୁଜା ମୃଣ୍ମୟୀ ପ୍ରତିମାର ପୂଜା ଚଳାଇଲେ । ଫଳରେ ଉତ୍କଳର ଜାତୀୟତା ଲୋପ ହେବାକୁ ଯାଉଛି । ଆମ ପୂଜା ଓ ତାଙ୍କ ପୂଜା ସ୍ୱତନ୍ତ୍ର । ସେମାନଙ୍କ

ପୂଜା ହେଉଛି କାତରର ଭକ୍ତି ନିବେଦନ, କିନ୍ତୁ ଆମର ପୂଜା ଅପରାଜିତ ବୀରତ୍ୱର ଆହ୍ୱାନ । 'ଦୁର୍ଗୋତ୍ସବ ଚନ୍ଦ୍ରିକା'ରେ ଚତୁର୍ଭୁଜା, ଅଷ୍ଟଭୁଜା ଓ ଷୋଡ଼ଶଭୁଜା ଦୁର୍ଗା ଦେବୀଙ୍କର ମୂର୍ତ୍ତିପୂଜା ବ୍ୟବସ୍ଥା ରହିଛି ।

'ଅଥବାଷ୍ଟଭୁଜୈର୍ବିରାଜ ମାନାଂ ।
ଧେୟା ଷୋଡ଼ଶ ବାହୁଭି ର୍ଭଗବତୀ ।।'

ତା' ବ୍ୟତୀତ ପ୍ରତିମା ନିର୍ମାଣ ସମ୍ବନ୍ଧରେ ଅଛି -

'ପ୍ରତିମାମତିମାତ୍ର ସୁନ୍ଦରାଙ୍ଗୀ
ଗିରିଜାୟା ରଚୟେଜ୍ଜୟେଛୟା ।
ବିମଳା କନକ କ୍ଲୃପ୍ତାଂ ରାଜତୀଂ ମୃନ୍ମରୁବା ।
କିମଥ ଲଳିତ ଲାକ୍ଷା ସମ୍ଭବାଂ ତାମ୍ରଜାଂବା ।
ରଚିତ ରୁଚିରରୂପଂ ଦାରବୀୟାଂ ବିଚିତ୍ରାଂ ।
ପ୍ରଣୟତୁ ରଚୟିତ୍ୱା ତୋରଣେ ଚାରୁଚିତ୍ରେ ।'

ଉତ୍କଳରେ ବିରଜା, ଭଟ୍ଟାରିକା ଆଦି ଦ୍ୱିଭୁଜା । ବିମଳା ଚତୁର୍ଭୁଜା ଏବଂ ଗୃହେ ଗୃହେ ମନ୍ଦିରରେ ସର୍ବତ୍ର ଜୟଦୁର୍ଗା ଚତୁର୍ଭୁଜା, ଶିବ ମନ୍ଦିରରେ ଯେତେ ପାର୍ବତୀ ସେ ସମସ୍ତେ ଚତୁର୍ଭୁଜା ଦୁର୍ଗା । କଟକଚଣ୍ଡୀ ଯେକି ସୋମବଂଶ ବେଳୁ ଅଛନ୍ତି - ସେ ମଧ୍ୟ ଚତୁର୍ଭୁଜା । ମାତ୍ର ଶାରଳା ଅଷ୍ଟଭୁଜା ଅଟନ୍ତି । ସେ ଯାହା ହେଉ ଏହି ପୂଜାର ମହାବିଧିରେ ପୁଣି ପାଇକଦଳର ତେଜସ୍ୱୀଣ କଥଅଁତ୍ ଫୁଟି ଉଠିଲା । ଅସ୍ତ୍ରର ଝଣତ୍କାରରେ ଗ୍ରାମେ ଗ୍ରାମେ ମିଥ୍ୟା ଆତଙ୍କ ଦୂର ହୋଇଗଲା । ଏପରିକି ରାଷ୍ଟ୍ରର ସେନାପତି ବକ୍‌ସିଙ୍କର ଦୁର୍ଗାପୂଜା ଯୋଗୁଁ ପାଇକକୁଳ ମାତି ଉଠିଲେ । ବୈଷ୍ଣବଙ୍କୁ ନମାନି ଜାତିବର୍ଣ୍ଣ ଧର୍ମ ସମସ୍ତେ ସାମରିକ ଦେବୀ ପ୍ରତିମା ପ୍ରତି ଅନୁରକ୍ତ ହେଲେ । ଦଶହରା ଦିନ ଅପରାଜିତା ପୂଜାରେ ଦଶଦିଗବଳି ଦେଇ ସାରି ଦୁର୍ଗାଦେବୀ ଏବଂ ଶ୍ରୀଜଗନ୍ନାଥଙ୍କ ବିଜୟ ପ୍ରତିମା ମଦନମୋହନଙ୍କ ସହିତ ଦୁର୍ଗାମାଧବ ତୀକ୍ଷ୍ଣ ଅସ୍ତ୍ରଶସ୍ତ୍ରାଦି ଭୂଷିତ ଲକ୍ଷ ଲକ୍ଷ ଖଣ୍ଡାୟତ, ପାଇକ, ଶୁଦ୍ରବୀରମାନଙ୍କୁ ନେଇ ମହାରାଜା ଯୋଦ୍ଧୃବେଶରେ ଢାଲ ଏବଂ ପାରମ୍ପରିକ ତେଜୋଦୀପ୍ତ ତରବାରୀ ହସ୍ତରେ ଧାରଣ କରି ଦଶହରା ଜୈତ୍ରଯାତ୍ରା ଅନୁକୂଳ କରିଥାନ୍ତି । ଯେପରି ସମ୍ମୁଖବର୍ତ୍ତୀ ଅରାତିମାନଙ୍କୁ ଧ୍ୱଂସ କରିବାକୁ ଏହି ଅଭିଯାନ ଆରମ୍ଭ ହୁଏ । ଯେନାରାତି ବଳଂ ବିଲଂଘ୍ୟ ଧରଣୀଂ ବେଳାସୁ ଲେଲୀୟତେ । ପାଇକାଳି ଯୁଦ୍ଧବାଜା ଗ୍ରାମେ ଗ୍ରାମେ, ପୂଜାରେ ମହା ମହୋତ୍ସବ ଅନୁଷ୍ଠିତ ହୁଏ । ତୋପ ଧ୍ୱନିରେ କାନ ଫାଟି ପଡ଼େ । ଦୁର୍ଗାମାଧବଙ୍କର ଏକତ୍ର ପୂଜା ହୁଏ । ପାଇକ କୁଳର ଅଗ୍ରଣୀ ଦଳେଇ, ଦଳ ବେହେରା, ସଂଗ୍ରାମ ସିଂହ ଓ ସେନାପତିମାନେ ଚତୁରଙ୍ଗ ସେନା ସହିତ ଦଶହରାରେ ସ୍ୱ ସ୍ୱ କୃତିତ୍ୱ ପ୍ରଦର୍ଶିତ କରିଥାନ୍ତି । ରାଜଗୁରୁ ଚାରି ହତିଆରରେ ସଜ୍ଜିତ ହୋଇ ବୀରେନ୍ଦ୍ର କେଶରୀ ଗଜପତିଙ୍କ ସହିତ ତରବାରୀ ଯୁଦ୍ଧର କୌଶଳ ପ୍ରଦର୍ଶନ କରନ୍ତି । ସହସ୍ର ଅଶ୍ୱାରୋହୀ, ଗଜାରୋହୀ ନିଜର କୃତିତ୍ୱ ପ୍ରଦର୍ଶନ କରନ୍ତି । ଉତ୍କଳର ବିଶ୍ରୁତ ରୂପସୀ ନାରୀମାନେ ଅଶ୍ୱପୃଷ୍ଠରେ, ଗଜାରୋହଣରେ ଯୋଦ୍ଧୃବେଶରେ ରଙ୍ଗ ଭୂମିରେ ପହଞ୍ଚି ନିଜ ନିଜର ସାମରିକ ପଟୁତା ମହାଦେବୀଙ୍କ ସମ୍ମୁଖରେ ପ୍ରଦର୍ଶନ କରିଥାନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ପାଣ୍ଡୁଲିପି ମାଦଳାପାଞ୍ଜିରେ ଦଶହରା ଯାତ୍ରା ପଟୁଆର ବିଷୟରେ ବର୍ଣ୍ଣିତ ହୋଇଛି - ପ୍ରଥମରେ ହାତୀ ଉପରେ ରାଜକୀୟ ପତାକା । ତା' ପଛକୁ ଶୁଭାଙ୍ଗୀ ନାରୀ ନୃତ୍ୟ ଏବଂ ଭାଟ କୈଦାର । ତା' ପଛକୁ ରାଜା ଏବଂ ରାଣୀ ଦାସୀମାନଙ୍କ ଗହଣରେ । ଛତ୍ରଧାରୀ, ତରାସିଆ, ଅଶ୍ୱାରୋହୀ, ସୈନିକ, ଖୁଣ୍ଟିଆ, ବେତ୍ର ହସ୍ତ, ମର୍ଦ୍ଦଳିଆ, କାହାଳିଆ, ଚାମର ସେବକ, ମସାଲିତି । ତା'ପରେ ପର୍ବର ମାନନୀୟ ଋତ୍ୱିକାରଣ - ରାଜଗୁରୁଙ୍କ ସହିତ ଶସ୍ତ୍ରାସ୍ତ୍ରଧାରୀ । ତା'ପରେ ବିମାନବଡୁ ଦୁର୍ଗାମାଧବଙ୍କ ବିମାନ । ଦେବତାଙ୍କ ଛତ୍ର ଚାମରାଦି ସେବକ ବୃନ୍ଦ । ସର୍ବଶେଷରେ ପାଞ୍ଜିଆ । ଏତଦ୍‌ବ୍ୟତୀତ ସେଠାରେ ବିଭିନ୍ନ ବ୍ୟୂହଭେଦୀ ଯୁଦ୍ଧକୌଶଳ କନ୍ତ ମାରିବା, ତୋପ ଫୁଟାଇବା, କାଣ୍ଡ ବିନ୍ଧିବା, ଚକ୍ର, ଛେଲ, କାତି, କଟାରି ଆଦି ଚଳାଇବା, ଜଳି ଲାଛିବା ଆଦି ପ୍ରଦର୍ଶନ ପରେ ଅସ୍ତ୍ରଶସ୍ତ୍ରାଦି ଭୂଷିତ ଦୁର୍ଗାମାଧବ ଶ୍ରୀମନ୍ଦିରକୁ ବାହୁଡ଼ା ବିଜେ କରିଥାନ୍ତି । (ଏହି ଦଶହରା ଜୈତ୍ରଯାତ୍ରା ଦ୍ୱିତୀୟ ବୀରକେଶରୀ ଦେବଙ୍କ ପୋଷ୍ୟପୁତ୍ର ବଡ଼ଖେମୁଣ୍ଡି ରାଜବଂଶ ସମ୍ଭୂତ ଦିବ୍ୟସିଂହ ଦେବ (ତୃତୀୟ) ମହାସମାରୋହରେ ୧୮୭୬ରେ ଅନୁଷ୍ଠିତ କରିବା ଦେଖି ତତ୍କାଳୀନ ପୁରୀ ଜିଲ୍ଲା ଇଂରେଜ ମାଜିଷ୍ଟ୍ରେଟ ଭୀତତ୍ରସ୍ତ ହୋଇ ପଡ଼ିଥିଲେ । କାରଣ ୧୮୦୪ ଓ ୧୮୧୭ ମସିହାର ଖୋର୍ଦ୍ଧା ପାଇକ ବିଦ୍ରୋହ ସ୍ମୃତି ଇଂରେଜ ମନରେ ଭୀତିସଞ୍ଚାର କରୁଥାଏ । ମଲ୍ଲବିଦ୍ୟାରେ ସୁଦକ୍ଷ ଏବଂ ବିଶେଷ ବିଦ୍ୱାନ ଦିବ୍ୟସିଂହ ଦେବଙ୍କୁ ଯେପରି ଅନ୍ୟାୟରେ ୧୮୭୭ରେ ଦ୍ୱିପାନ୍ତର ଦିଆଗଲା, ତାହା ଓଡ଼ିଶାକୁ ଆସିଥିବା ଇଂରେଜମାନଙ୍କର ବହୁ ପ୍ରଧାନ ଅନ୍ୟାୟ ମଧ୍ୟରୁ ଅନ୍ୟତମ । ଦଶହରା ଜୈତ୍ରଯାତ୍ରା ଏହି ସମୟରୁ ଉତ୍କଳ ମହାପୀଠ ପୁରୀରୁ ଲୋପ ପାଇଥିଲା । ଉତ୍କଳର ବୀରତ୍ୱ ଶ୍ରେଷ୍ଠତ୍ୱକୁ ବଣିକ ଇଂରେଜମାନେ ଯେପରି ଧ୍ୱଂସ କରିଥିଲେ, ସେପରି ବର୍ବରତା ଧରଣୀଙ୍କର ଇତିହାସରେ ବିରଳ ଅଟେ ।) ଲକ୍ଷ୍ମୀଙ୍କ ମୋହନ ସମ୍ମୁଖରେ ଦୁର୍ଗାମାଧବଙ୍କ ଦରବାର ବସେ । ମହାରାଜା, ଦେବାଧିଦେବ, ଜଗନ୍ନାଥ ଏବଂ ମହାଦେବୀ ଦୁର୍ଗାଙ୍କର ପ୍ରତିନିଧି ସ୍ୱରୂପ ସେମାନଙ୍କ ନିମ୍ନରେ ଉପବେଶନ କରିଥାନ୍ତି । ଦକ୍ଷିଣ ଦିଗରେ ସ୍ୱତନ୍ତ୍ର ଆସନରେ ରାଜଗୁରୁ ଏବଂ ଉତ୍ତର ଦିଗରେ ସ୍ୱତନ୍ତ୍ର ସ୍ୱତନ୍ତ୍ର ଆସନରେ ବିଭିନ୍ନ ନରପତି ବସନ୍ତି । ସେନାପତିଙ୍କ ବାମପାର୍ଶ୍ୱରେ ରାଷ୍ଟ୍ରମନ୍ତ୍ରୀଙ୍କର ସ୍ୱତନ୍ତ୍ର ଆସନ ଥାଏ । ତାଙ୍କ ସହିତ ବିଭିନ୍ନ ମନ୍ତ୍ରୀ, ଉପମନ୍ତ୍ରୀ ସମାସୀନ ହୁଅନ୍ତି । ଦେବତା ଏବଂ ମହାରାଜାଙ୍କ ସହିତ ରାଜାମାନେ ପୂର୍ବାଭିମୁଖ । ରାଜଗୁରୁ ସମଗ୍ର ବ୍ରାହ୍ମଣମାନଙ୍କ ସହିତ ଉତ୍ତରାଭିମୁଖ । ସେନାପତି ଓ ମନ୍ତ୍ରୀମାନେ ନିଜ ନିଜର ବିରାଦରମାନଙ୍କୁ ନେଇ ଦକ୍ଷିଣମୁଖ । ଛତିଶା ନିଯୋଗ, ରାଷ୍ଟ୍ରର ପ୍ରଜା ପ୍ରତିନିଧି । ସାମରିକ ପ୍ରତିନିଧି ଯଥା - ସମ୍ବର୍ବରେ ସମ୍ମୁଖରେ ପଶ୍ଚିମାଭିମୁଖ, ଚଣ୍ଡ, ଖୁଣ୍ଟିଆ, ପ୍ରତିହାରୀ, ଭାଟ, ସୂତ, ମାଗଧ, ବାଦ୍ୟକାର ଏ ସମସ୍ତେ ନିଜ କର୍ମରେ ରତ । ପରୀକ୍ଷାମାନେ ଦେବତାଙ୍କୁ ଘେନି ସ୍ୱପରିଜନମାନଙ୍କ ସହିତ ସ୍ଥାନାଭିଷିକ୍ତ ।

ସେନାଧକ୍ଷଙ୍କଠାରୁ ଆରମ୍ଭ କରି ଦଳେଇ, ଦଳବେହେରା, ଖଣ୍ଡପତି, ବିଶୋଇ, ଭୂୟାଁ, ପ୍ରଧାନ, ଭୋଇମୂଳ ଇତ୍ୟାଦିକୁ ଲେଖ ପଦପଦବୀ ସହିତ ବନ୍ଦାଣ ଦିଆଯାଏ । ସେମାନେ ଦେବତା, ରାଜା, ବ୍ରାହ୍ମଣଙ୍କୁ ପ୍ରଣତି ବିଧାନ କରି ସମ୍ମାନିତ ହୁଅନ୍ତି । ଏ ଉତ୍ସବର ଶୋଭାଯାତ୍ରା ପାଇଁ ରାଜଗୁରୁ ମହାପାତ୍ର ଲେଖିଛନ୍ତି -

'ବିଜୟିନୀ ନିଜ ଶସ୍ତ୍ରେ ଚିନ୍ତାୟିତ୍ୱାଲମେବଂ
ନୃପତିରଥ ଦଶମ୍ୟାଂ ପ୍ରେକ୍ଷ ଦୁଷ୍ଟାରି ସେନାଂ
ବହୁବିଧ ଶୁଭଜାତଂ ବୀକ୍ଷ୍ୟ କିଂ ଚିଦ୍ ବିଦୂରଂ
ରଚୟତୁ ଚତୁରଙ୍ଗୈଃ ସଙ୍ଗତୋ ଜୈତ୍ରଯାତ୍ରାଂ ।

x x x x

ନାଗାନାଂ ପରିବୃଂହି ତୈରୂପହିତୈ ରୁଚ୍ଚାସିତୈ ଭ୍ରେସିତୈ
ରଙ୍ଗାନାଂ ପଟୁପତ୍ତି ସାଟ ହସତୈ ବାଦ୍ୟୈଃ ସମୁଜ୍ୟୋତି ତୈଃ
ଭୂପାଳଃ କରବାଳ ଲାଳିତ କରଃକୁର୍ଯାଦ୍ ପ୍ରୟାଣଂ ତଥା
ଯେନାରା ତିବଳଂ ବିଲଂଘ୍ୟ ଧାରଣାଂ ବେଳାସୁ ଲେଲୀୟତେ ।'

x x x x

ଉକ୍ତ ଯାତ୍ରା ବିବରଣୀ ପାଇଁ ସେ ପୁନଶ୍ଚ ଲେଖିଛନ୍ତି -

ବିପ୍ରେିସ୍ତେଜୋ□ଦ୍ଧିଦୀପ୍ତେ ର୍ନଟନପଟୁନଟୈବନ୍ଦିଭିସ୍ ସଂ ଦିଶଭି
ଦୁର୍ବାରୈରଶ୍ୱବାରେ ର୍ଗୁଣଗଣ ମହିମୋନୟ କୈର୍ଗାୟକୈଶ୍ଚ
ପାଦାତୈର୍ବେଗ ପତୈଃ ସମଦଗଜଘଟା ରୋହଣା□ଧାରଣାଦ୍ୟୈ
ମର୍ଲ୍ଲୈରୁଦ୍ ଫୁଲ୍ଲ ଗଲ୍ଲୈ ନୃପତିରତି ତରାମୁତ୍ସବଂ କାରୟେତି ।

ବାଦ୍ୟାଦି ଧ୍ୱନି ବିଷୟରେ ଏପରି ଉଲ୍ଲେଖ ଅଛି -

ଅଭିହତତତୁର୍ଯୈଃ ପ୍ରୌତନିଃସାଣ ବର୍ଯ୍ୟୈଃ
ପ୍ରକଟପଟହି ଧୂର୍ଯ୍ୟୈଃ କାହଳାରବ୍‌ଧ କାର୍ଯ୍ୟୈଃ
ବିଜୟ ମୁରକ ବାଦ୍ୟୈଃ କାଂସ୍ୟତାଳୋପପାଦ୍ୟୈଃ
ମଧୁର ମଧୁରିକାଦ୍ୟୈଃ କାରୟେଦତ୍ର ଯାତ୍ରାଂ ।
ଗୀତୈଶ୍ଚ ବାରବନିତା ବଦନୋପ ନୀତୈ
ନର୍ତ୍ତୈଃ ପ୍ରମତ୍ତ ନଟପାଟବ ମୂଳ କୃତୈଃ
ଯନ୍ତ୍ରୈର୍ବିଳାନନ୍ଦ ବିଶେଷ କୃତୈଃ ସୂତନ୍ତ୍ରୈ
ଯୁର୍ଦ୍ଧୈଃ ପଦାତିଯୁଗ ସଂଜନିତୈଃ ବିଶୁଦ୍ଧୈଃ ।

ରାଜଗୁରୁ ମହାପାତ୍ର ମାନବଧର୍ମୀ ଥିବାରୁ ସେ ଦୁର୍ଗାପୂଜାରେ ସମଗ୍ର ଜନତାର ଅଧିକାର ଥିବା କଥା ଦର୍ଶାଇଛନ୍ତି -

ରାଜନ୍ୟାନାଂ ବ୍ରାହ୍ମଣାନାଂ ବିଶାଞ୍ଚ ଶୁଦ୍ରାଣାଂ ବା ସର୍ବବର୍ଣ୍ଣାଙ୍ଗନାନାଂ ମ୍ଳେଚ୍ଛାନାଂ ବା ଭକ୍ତିଚର୍ଯ୍ୟା ବିଶେଷୈଃ କର୍ମତ୍ୟସ୍ମିନ୍ ନିର୍ବିବାଦୋଧିକାରଃ ।

ସେ ନିର୍ବିବାଦରେ ଦୁର୍ଗାପୂଜାରେ ଅଧିକାର ଘେନି କହିଥିଲେ ଯେ କି ରାଜା ବା କ୍ଷତ୍ରିୟ, ବ୍ରାହ୍ମଣ, ବୈଶ୍ୟ, ଶୁଦ୍ର ଏପରିକି ସର୍ବବର୍ଣ୍ଣର ଅଙ୍ଗନା ଯେ କେହି, ମ୍ଳେଚ୍ଛ, ଭକ୍ତିମାନ ଯେକେହି ହେଲେ ହେଁ ଦୁର୍ଗାଙ୍କର ପୂଜାକର୍ମ ତା' ପକ୍ଷରେ କରଣୀୟ । ଏହାକୁ କେହି କେହି ତନ୍ତ୍ରର ପଞ୍ଚମକାର ଦୃଷ୍ଟିରୁ ବିଚାରି ଏହାର ସମାଲୋଚନା କରିପାରନ୍ତି ମାତ୍ର ଏହା ତାନ୍ତ୍ରିକ ବିଧିରୁ ସ୍ୱତନ୍ତ୍ର । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ବସମାନେ ମ୍ଳେଚ୍ଛକୁ ମଧ ମାନବିକତା ଦୃଷ୍ଟିରୁ ମଣିଷ କରି ଦେଖିଛନ୍ତି । ଏହି ପ୍ରଥା ଭାନୁଦେବଙ୍କ ରାଜଗୁରୁଙ୍କ ଯାଏ ଥିଲା । ଜାତି ଭେଦ, କି ବ୍ରାହ୍ମଣ ସହ କୌଣସି ମନ୍ଦିର କେଉଁଠି ହେଲେ ନଥିଲା । ୧୬୩୩ରେ ଉଇଲିୟମ୍ ବ୍ରୁଟନ୍ ଏହା ଦେଖି ଲେଖିଛନ୍ତି । (The Orissa Historical Research Journal, Vol-X, No-3, 1961)

ଉତ୍କଳର ସେ ସମୟର କ୍ଷତି ଚିନ୍ତାକରି ରାଜଗୁରୁ ମହାପାତ୍ର ଦୁର୍ଗୋତ୍ସବ ଚନ୍ଦ୍ରିକା ଲେଖି ନଥିଲେ କି ତାଙ୍କରି ଦ୍ୱାରା ଆୟୋଜିତ ଦୁର୍ଗାପୂଜା ହୋଇ ନଥିଲେ କି ତାଙ୍କରି ଦ୍ୱାରା ଆୟୋଜିତ ଦୁର୍ଗାପୂଜା ହୋଇ ନଥିଲେ ଧର୍ମ ଦୁର୍ବଳତାରୁ ତହିଁର ଆଚାର ବିଚାର ମଧରେ ଏଜାତି କେଉଁକାଳୁ ତୀବ୍ର କୁସଂସ୍କାରଛନ୍ନ ହୋଇ ମହୋଦଧି ମଧରେ ଲୁଚି ଯାଆନ୍ତାଣି ଅଥବା ଯେପରି ବିଚ୍ଛିନ୍ନାଞ୍ଚଳରେ ମେଦିନୀପୁର, ସିଂହଭୂମି, ଖରସୁଆଁ, ଷଢ଼େଇକଳା ଏପରିକି ଫୁଲଝର, ବିନ୍ଦ୍ରା, ଯଶିପୁର ଟିକିଲି ଆଦିରେ ଲକ୍ଷ ଲକ୍ଷ ଓଡ଼ିଆଙ୍କ ଜାତୀୟତା ସହାୟତା ଅଭାବରୁ ଲୁଚି ଯାଉଛି, ପୁଣି ସେମାନେ ପ୍ରବାସୀ ନହୋଇ ମଧ ଅନ୍ୟର ଦଖଲରେ ନିଜ ଭାଷା ଓ ସଂସ୍କୃତିର ମୃତ୍ୟୁ ଦେଖିଛନ୍ତି । ସେହିପରି ଆଜି ଯେତିକି ଓଡ଼ିଆ ହୋଇ ରହିଛି ତା' ମଧ ଭାଷା ସଂସ୍କୃତିରୁ ମୂଳପୋଛ ହୋଇଯାଇଥାନ୍ତା । ରାଜଗୁରୁ ମହାପାତ୍ର ନିଜ ଗ୍ରନ୍ଥରେ ଦୁର୍ଗାଙ୍କୁ ଯେପରି ବିଶ୍ୱପ୍ରକୃତିର ଏକ ମହନୀୟ ମୂର୍ତ୍ତି ସ୍ୱରୂପ କଳ୍ପନା କରି ମହାନୁଭାବୁକର ପ୍ରଦର୍ଶନ କରିଅଛନ୍ତି, ତାହା ମହାକବି କାଳିଦାସ ବର୍ଣ୍ଣିତ ଶିବଙ୍କ ଅଷ୍ଟବିଧି ମୂର୍ତ୍ତି କଳ୍ପନା ସଦୃଶ ମନେହୁଏ । ତାହାହିଁ ଉତ୍କଳର ଯୁଗଯୁଗର ମହାନ ଉଦାହରଣର ଏକ ଶ୍ରେଷ୍ଠ ଦର୍ଶନ ।

ଆମ୍ଭୋଦାନ୍ ଚିକୁରଛଳେନ ତପନଂ ସିନ୍ଦୁର ବିନ୍ଦୁ ପଧେଃ
ପୀୟୂଷଦ୍ୟୁତି ବିମ୍ୱମାନନ-ମିଷାତ୍ ଜ୍ୟୋତ୍ସ୍ନାସ୍ମିତଛହନା ।
ଶୈଳେନ୍ଦ୍ରଂ କୁଚକୈତବାଦ୍ ବଳିକୁଳ ବ୍ୟାଜାଦ୍ ବହ ନ୍ତୈ୍ୟନଦୀଂ
ରର୍ଦ୍ଧାଙ୍ଗାୟ ଶିବସ୍ୟ ବିଶ୍ୱନିଧେୟ ମୂଳ ପ୍ରକୃତ୍ୟୈ ନମଃ ।

ସେ ଦୁର୍ଗାଙ୍କୁ ମୂଳ ପ୍ରକୃତି ଓ ଶିବଙ୍କର ଅର୍ଦ୍ଧାଙ୍ଗ ସ୍ୱରୂପ ଦେଖିଛନ୍ତି । ସେ ସମଗ୍ର ସୃଷ୍ଟିର ଏହି ଚନ୍ଦ୍ର ସୂର୍ଯ୍ୟ ବିରାଜିତ ମହାନ ଆକାଶରେ ତାଙ୍କର ବିସ୍ତାରିତ ମୂର୍ତ୍ତି କଳ୍ପନା କରି ଏହି ନଦୀ ପର୍ବତ ସମାକୀର୍ଣ୍ଣା ଧରଣୀ ସହିତ ତାକୁ ଯୋଗ କରି ଏକ ବିଚିତ୍ର ମୂର୍ତ୍ତି ଗଢ଼ିଛନ୍ତି । ଯେ କି ତାଙ୍କର 'ମୂଳ ପ୍ରକୃତି' ସେହି କାଳିଦାସଙ୍କ ଜଗତଃ ପିତରୌର ବିଶ୍ୱମାତା ।

ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା



# ଶ୍ରୀକ୍ଷେତ୍ରର ପଞ୍ଚ ମହାଦେବ

ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମହାପାତ୍ର

ଭାରତର ପ୍ରତ୍ୟେକ ଆଧ୍ୟାତ୍ମିକ ପ୍ରାଣକେନ୍ଦ୍ର, ତୀର୍ଥ କ୍ଷେତ୍ରଗୁଡ଼ିକ ସହ ଅଷ୍ଟଶମ୍ଭୁ ଏବଂ ଅଷ୍ଟଚଣ୍ଡିକା ସମନ୍ୱିତ ଥାଆନ୍ତି । ଆଧୁନିକ ପୁରୀ ସହର ଓଡ଼ିଶାର ରାଷ୍ଟ୍ର ଦେବତା ଜଗନ୍ନାଥଙ୍କୁ ନେଇ ପ୍ରସିଦ୍ଧି ଲାଭ କରିଛି । ପୁରୀ ସହରର ଐତିହ୍ୟ କେତେ ପୁରୁଣା, ପୁରୁଷୋତ୍ତମ କ୍ଷେତ୍ର, ଶଙ୍ଖକ୍ଷେତ୍ର, ଶ୍ରୀକ୍ଷେତ୍ର ଓ ଜଗନ୍ନାଥ ପୁରୀର ନାମକରଣକୁ ନେଇ ମଧ୍ୟ ବର୍ତ୍ତମାନ ସୁଦ୍ଧା ଦ୍ୱନ୍ଦ୍ୱ ରହିଛି । ପୁରୀର ଶ୍ରୀଜଗନ୍ନାଥଙ୍କ ସଂସ୍କୃତି ଆର୍ଯ୍ୟୋତ୍ତର ଦ୍ରାବିଡ଼ ସଭ୍ୟତାର ସ୍ମାରକୀ ବହନ କରିଛି ଏବଂ ପରବର୍ତ୍ତୀ ଜୈନ, ବୌଦ୍ଧ ଏବଂ ଆଞ୍ଚଳିକ ଧର୍ମ ପ୍ରଭାବକୁ ମଧ୍ୟ ଆପଣେଇ ନେଇପାରିଛି । ଏ ସମସ୍ତ ଧର୍ମର ନିର୍ଯ୍ୟାସ ଏଠାରେ ଏକ ଅଦ୍ଭୁତ ପରମ୍ପରା ସୃଷ୍ଟି କରି ଜଗନ୍ନାଥ ଧର୍ମକୁ ସମନ୍ୱୟଧର୍ମୀ ପ୍ରମାଣିତ କରିବାରେ ସଫଳ ମଧ୍ୟ ହୋଇଛି । ଏଭଳି ପ୍ରସିଦ୍ଧିଲାଭ କରିଥିବା ଏହି ସଂସ୍କୃତିର ଐତିହ୍ୟ ଓ ପରମ୍ପରା ସମ୍ପର୍କୀୟ ଗବେଷଣା ଯଥେଷ୍ଟ ନୁହେଁ । ଏହାର କାରଣ ଏହି ସଂସ୍କୃତିର ଗବେଷଣାତ୍ମକତା ଉପରେ ଗୁରୁତ୍ୱ ନଦେଇ ଲୋକମାନଙ୍କର ଆଧ୍ୟାତ୍ମିକ ଦୁର୍ବଳତାକୁ ପାଥେୟ କରି ପାରମ୍ପରିକ ଜନପ୍ରିୟ ପ୍ରବନ୍ଧ ମାଧ୍ୟମରେ ସହଜସାଧ୍ୟ ନାମ କମେଇବାରେ ଅଧିକ ଗୁରୁତ୍ୱ ଦିଆଯାଉଥିବାରୁ ପୁରୀ ସହରର ସାଂସ୍କୃତିକ ଗୁରୁତ୍ୱ ଏବଂ ଜଗନ୍ନାଥ ସଂସ୍କୃତିର ଐତିହ୍ୟ ସରଳ ହେବା ପରିବର୍ତ୍ତେ ଧୀରେ ଧୀରେ ଜଟିଳ ହେବାକୁ ଲାଗିଛି । ସମନ୍ୱୟଧର୍ମୀ ଜଗନ୍ନାଥ ସଂସ୍କୃତିର ଜଗନ୍ନାଥଙ୍କ ବ୍ୟତୀତ ବହୁ ଗୁରୁତ୍ୱପୂର୍ଣ୍ଣ ଦେବାଦେବୀ ମଧ୍ୟ ରହିଛନ୍ତି । ତଥାକଥିତ ଗବେଷକମାନେ ସେମାନଙ୍କର ନିଜର ସୀମିତ ଜ୍ଞାନ ପରିସର ମଧ୍ୟରେ ଏମାନଙ୍କୁ ଗୁରୁତ୍ୱ ନଦେଇ, ଏହାଙ୍କୁ ଆଡେଇଯାଇ କେବଳ ଜଗନ୍ନାଥଙ୍କ ଗୁରୁତ୍ୱ ଉପଲବ୍ଧି କରିଥିବା ମନେ ହେଉଛି । ଏଭଳି ଗୁରୁତ୍ୱପୂର୍ଣ୍ଣ ତଥା ପ୍ରଭାବଶାଳୀ ଦେବାଦେବୀମାନେ, ଯେଉଁମାନେ କି ଜଗନ୍ନାଥ ସଂସ୍କୃତିର ପ୍ରସିଦ୍ଧିଲାଭ ପୂର୍ବରୁ ଗୁରୁତ୍ୱ ଲାଭ କରିଥିଲେ, ସେମାନେ ଏହି ସଂସ୍କୃତିରେ ଉପଯୁକ୍ତ ସ୍ଥାନ ପାଇବା ଉଚିତ୍ ।

ଆଧୁନିକ ଜଗନ୍ନାଥ ମନ୍ଦିର ଏବଂ ଜଗନ୍ନାଥ ଚିନ୍ତାଧାରାର ବହୁ ପୂର୍ବରୁ ପୁରୀରେ ବହୁ ସଂଖ୍ୟାରେ ଅନ୍ୟ ଦେବାଦେବୀମାନଙ୍କର ମନ୍ଦିର ଥିଲା । ଏହି ମନ୍ଦିରଗୁଡ଼ିକର ଭୌଗଳିକ ଅବସ୍ଥିତି, ମନ୍ଦିରର ଗଠନ ପ୍ରଣାଳୀ, ସ୍ଥାନ ନିରୂପଣ, ନିର୍ମାଣ, କଳାଭାସ୍କର୍ଯ୍ୟ, ମନ୍ଦିରରେ ପ୍ରଚଳିତ ପରମ୍ପରା ଏବଂ ପୂଜା ବିଧିରୁ ଏହା ନିର୍ଦ୍ଦିଷ୍ଟ ଭାବେ ପ୍ରମାଣିତ । ଏହା ମଧ୍ୟ ନିଃସନ୍ଦେହରେ କୁହାଯାଇପାରେ ଯେ, ସେମାନେ ନିଶ୍ଚିତ ଜଗନ୍ନାଥ ସଂସ୍କୃତିଠାରୁ ପୁରୁଣା ଏବଂ ସେମାନଙ୍କୁ ପରବର୍ତ୍ତୀ ଜଗନ୍ନାଥ ସଂସ୍କୃତିରେ ଅଂଶ ରୂପେ ଗ୍ରହଣ କରାଯାଇନଥିଲେ ଜଗନ୍ନାଥ ସଂସ୍କୃତି ଚିନ୍ତା ଅସଂପୂର୍ଣ୍ଣ ରହିଥାନ୍ତା । ପୁରୀ ସହର ୮୫'-୪୭'-୪୦'ଠାରୁ ୮୫'-୫୧'-୩୦' ଦ୍ରାଘିମା ଏବଂ ୧୯'-୧୨'-୨୦'ଠାରୁ ୧୯'-୪୯'-୦୫' ଅକ୍ଷାଂଶ ମଧ୍ୟରେ ୧୬.୭୪ ବର୍ଗ କିଲୋମିଟର ମଧ୍ୟରେ ଅବସ୍ଥିତ । ପୁରୀ ସହରର ଭୌଗଳିକ ପରିସୀମା ଏବଂ କେନ୍ଦ୍ରର ପରିକଳ୍ପନା ଏଭଳି ପୁରାତନ ମନ୍ଦିରଗୁଡ଼ିକର ଗୁରୁତ୍ୱ ନିଶ୍ଚିତ ଭାବରେ ବୃଦ୍ଧି କରିଥାଏ । ଏଭଳି ଗୁରୁତ୍ୱପୂର୍ଣ୍ଣ ସ୍ଥାନଗୁଡ଼ିକରେ କ୍ଷେତ୍ରର ଅଷ୍ଟଶମ୍ଭୁ ଏବଂ ଅଷ୍ଟଚଣ୍ଡିକାଙ୍କର ଅବସ୍ଥିତି ଏମାନଙ୍କର ଗୁରୁତ୍ୱ ଜଗନ୍ନାଥ ସଂସ୍କୃତିର ବହୁ ପୂର୍ବରୁ ବୋଲି ନିର୍ଦ୍ଦିଷ୍ଟ ଭାବେ ଗ୍ରହଣ କରିବାକୁ ବାଧ୍ୟ କରିଥାଏ । ଭାରତୀୟ ଧାର୍ମିକ ପରମ୍ପରାରେ ମଧ୍ୟ ସନାତନ ଧର୍ମର ବିଭିନ୍ନ ପର୍ଯ୍ୟାୟରେ ଶୈବ ପରମ୍ପରା, ଶକ୍ତି ପରମ୍ପରା, ବୈଷ୍ଣବ ପରମ୍ପରା ଏବଂ ଶ୍ରୀପରମ୍ପରା ପ୍ରସିଦ୍ଧିଲାଭ କରିଛି । ଶ୍ରୀଜଗନ୍ନାଥ ଏହି ପର୍ଯ୍ୟାୟର ସର୍ବଶେଷ ଅର୍ଥାତ୍ ଶ୍ରୀପରମ୍ପରାର ବୋଲି ସାଧାରଣ ଭାବେ ଗୃହିତ ହେଉଥିବାରୁ ଅଷ୍ଟଶମ୍ଭୁ ଏବଂ ଅଷ୍ଟଚଣ୍ଡିକା ପ୍ରଥମ ଓ ଦ୍ୱିତୀୟ ପର୍ଯ୍ୟାୟ ଶୈବ ଏବଂ ଶାକ୍ତ ପରମ୍ପରା ପ୍ରତୀକ ଥିବାରୁ ଜଗନ୍ନାଥ ସଂସ୍କୃତିରୁ ପୁରୁଣା ବୋଲି ଗ୍ରହଣ କରିବାକୁ ବାଧ୍ୟ କରିଥାଏ । ପରବର୍ତ୍ତୀ ପର୍ଯ୍ୟାୟରେ ଜଗନ୍ନାଥ ସଂସ୍କୃତିର ସାମାଜିକ ପ୍ରଭାବ ବୃଦ୍ଧି ଫଳରେ ଏହି ଦେବାଦେବୀମାନଙ୍କୁ ଆବଶ୍ୟକତା ଅନୁସାରେ ଜଗନ୍ନାଥ ସଂସ୍କୃତିର ଅଂଶବିଶେଷ ରୂପେ ଗ୍ରହଣ କରିନେବା ପାଇଁ ସଂସ୍କୃତବିତ୍‌ମାନଙ୍କୁ ବାଧ୍ୟ ହେବାକୁ ପଡ଼ିଛି । ଶ୍ରୀଜଗନ୍ନାଥ ପରମ୍ପରାରେ ହରିହରି ଧର୍ମ ବା ଶିବ ଏବଂ ବିଷ୍ଣୁଙ୍କର ଏକ ଧାର୍ମିକ ସମନ୍ୱୟ କରାଯିବା ପାଇଁ ଏହା ଏକ ସ୍ୱତନ୍ତ୍ର ଚେଷ୍ଟା ।

ଏହି ଅଷ୍ଟଶମ୍ଭୁମାନଙ୍କ ମଧ୍ୟରେ ଏହି ପ୍ରବନ୍ଧର ନାୟକମାନେ ପୁରୀର ପଞ୍ଚ ମହାଦେବ (ଲୋକ ଚିନ୍ତାରେ ପଞ୍ଚପାଣ୍ଡବ), ଶ୍ରୀଯମେଶ୍ୱର, ଶ୍ରୀମାର୍କଣ୍ଡେୟ, ଶ୍ରୀଲୋକନାଥ, ଶ୍ରୀକପାଳଲୋଚନ ଏବଂ ଶ୍ରୀନୀଳକଣ୍ଠଙ୍କର ଆସ୍ଥାନ । ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ରୂପେ ଗ୍ରହଣ

କରାଯାଉଥିବାରୁ ଏମାନଙ୍କୁ ତାଙ୍କର ସଖା ରୂପେ ଗ୍ରହଣ କରାଯିବାର ସମ୍ଭାବନା । ଶ୍ରୀଯମେଶ୍ୱରଙ୍କୁ ଯୁଧିଷ୍ଠିର, ଶ୍ରୀମାର୍କଣ୍ଡେୟଙ୍କୁ ଭୀମସେନ, ଶ୍ରୀଲୋକନାଥଙ୍କୁ ମଧ୍ୟମ ପାଣ୍ଡବ ଅର୍ଜ୍ଜୁନ, କପାଳଲୋଚନଙ୍କୁ ନକୁଳ ଏବଂ ନୀଳକଣ୍ଠଙ୍କୁ ସହଦେବ ରୂପେ ଅବସ୍ଥାପିତ କରାଯାଉଥିଲେ ମଧ୍ୟ ଦ୍ୱିମତକ୍ରମେ ଶ୍ରୀମାର୍କଣ୍ଡେୟଙ୍କୁ ଅର୍ଜ୍ଜୁନ ଏବଂ ଶ୍ରୀଲୋକନାଥଙ୍କୁ ଭୀମ ରୂପେ ଗ୍ରହଣ କରିବାର ଦେଖା ଯାଇଥାଏ । ଶ୍ରୀଜଗନ୍ନାଥ ଏବଂ ପଞ୍ଚ ମହାଦେବଙ୍କ ସହାବସ୍ଥାନ ଯୁକ୍ତିଯୁକ୍ତ, ଶାସ୍ତ୍ରୀୟ, ସାମାଜିକ ତଥା ଲୌକିକ । ପରମ୍ପରାକ୍ରମେ ଏହି ମହାଦେବମାନଙ୍କର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଚଳନ୍ତି ବିଗ୍ରହଙ୍କ ବର୍ଷକୁ ମାତ୍ର ତିନିଥର ସାଯୁଜ୍ୟ (ଏକତ୍ରାବସ୍ଥାନ) ହୋଇଥାଏ । (ଏକୋଇଶ ଦିନ ବ୍ୟାପୀ ବୈଶାଖ ମାସର ଅକ୍ଷୟ ତୃତୀୟାଠାରୁ ବାହାର ଚନ୍ଦନଯାତ୍ରାରେ ସମୂହ ଚାପରେ (ନୌକାବିହାର) ଯାହା ଶ୍ରୀଯମେଶ୍ୱର ବା ଶ୍ରୀଲୋକନାଥଙ୍କର ଅନୁପସ୍ଥିତିରେ କେବେ ବି ହୋଇପାରେ ନାହିଁ, ଜ୍ୟେଷ୍ଠ ମାସରେ ଅନୁଷ୍ଠିତ ଶୀତଳଷଷ୍ଠୀ (ଶିବବିବାହ) ଉତ୍ସବ ପାଳନବେଳେ ଲକ୍ଷ୍ମୀଙ୍କ ଜଗମୋହନରେ (ବର୍ତ୍ତମାନ ଶ୍ରୀଜଗନ୍ନାଥଙ୍କ ଜଗମୋହନରେ) ସପତ୍ନୀକ ଆତିଥ୍ୟ ଗ୍ରହଣ କରିବା ଏବଂ ବନ୍ଦାପନା ପରେ ଗୁଆଲି ବୁଲିବା ଏବଂ ଦୋଳପୂର୍ଣ୍ଣିମା ପୂର୍ବରାତ୍ରି ଅଗ୍ନି ଉତ୍ସବରେ ଦୋଳବେଦୀ ନିକଟରେ ଶ୍ରୀଜଗନ୍ନାଥଙ୍କ ଚଳନ୍ତି ବିଗ୍ରହ ସହ ଯୋଗ ଦେଇ ଅଗ୍ନିଜଳାରେ ଉପସ୍ଥିତ ରହିବା ।)

**ଶ୍ରୀଯମେଶ୍ୱର**

ଶୈଳୋଦ୍ଭବ ବା ଭୌମକର ବା ସୋମବଂଶୀ (ଅଧିକ ଗବେଷଣା ଆବଶ୍ୟକ) ସମୟରେ ନିର୍ମିତ ହୋଇଥିବା ପୁରୀର ବର୍ତ୍ତମାନ ସ୍ଥଳ ସ୍ତରଠାରୁ ପ୍ରାୟ ୫୦ ଫୁଟ ନିମ୍ନରେ ଶ୍ରୀଯମେଶ୍ୱରଙ୍କ ମନ୍ଦିର ଅବସ୍ଥିତ । ମନ୍ଦିରର ଉଚ୍ଚତା ପ୍ରାୟ ୩୫ ହାତ, ତ୍ରିରଥ ଶ୍ରେଣୀର ଏବଂ ବ୍ରାହ୍ମଣ ଜାତୀୟ । ଏହି ଶୈବ ପୀଠ ନିକଟରେ ଧ୍ୱଜାଗଡ଼ ଜାଗା ଅବସ୍ଥିତ । ଧ୍ୱଜାଗଡ଼ ଜାଗାର ଇତିହାସ କହେ, ଚିଲିକାରୁ ଏହି ପଥ ଦେଇ ବିଦେଶୀ ଆକ୍ରମଣରୁ ଶ୍ରୀକ୍ଷେତ୍ରକୁ ରକ୍ଷା କରିବା ପାଇଁ ପୁରୀର ରାଜାମାନଙ୍କର ମଲ୍ଲବୀରମାନଙ୍କୁ ଏଠାରେ ସ୍ଥାନିତ କରାଯାଉଥିଲା । ଏଠାରେ ଏହାର ନିଦର୍ଶନ ପାଇଁ ଏକ ସ୍ୱତନ୍ତ୍ର ଧ୍ୱଜା ଉଡୁଥିଲା । ଶ୍ରୀଯମେଶ୍ୱର, ମୃତ୍ୟୁଦେବ ଯମଙ୍କ ପ୍ରକୋପରୁ ଶ୍ରୀକ୍ଷେତ୍ରକୁ ରକ୍ଷା କରିବାର ପ୍ରୟାସ ଏହିଠାରୁ ହିଁ କରୁଥିଲେ । ଏହି ମନ୍ଦିର ନିକଟରେ ଚଟକ ପାହାଡ଼ ଏବଂ ନିକୁମ୍ଭିଳ ବଟ । ଏହି ସ୍ଥାନରେ କଣ୍ଡୁ ମହର୍ଷି ପଣ୍ଡୁ ନୃସିଂହଙ୍କୁ ଆରାଧନା କରି ସିଦ୍ଧିତ୍ୱ ଲାଭ କରିଥିଲେ । ଅନ୍ୟ ମତରେ ବ୍ରହ୍ମାଙ୍କ ପୁତ୍ର ଯମନିକ ଋଷି ପିତାଙ୍କ ଦ୍ୱାରା ଅଭିଶାପଗ୍ରସ୍ତ ହୋଇ ଏହି ଯମନିକ ତୀର୍ଥରେ ଯମେଶ୍ୱର ରୂପେ ଅବସ୍ଥାପିତ । ମନ୍ଦିର ଅଧିଶ୍ୱର ଯମେଶ୍ୱରଙ୍କ ଲିଙ୍ଗର ଆଧାରଭୂତ ପ୍ରସ୍ତର ଶକ୍ତିର ଅଭ୍ୟନ୍ତର ହରିଣ୍ୟଭର୍ଗ ସଦୃଶ । ଏହାର ନିମ୍ନ ଦେଶରେ ଏକ ଫାଟ ବିଦ୍ୟମାନ । ଫାଟ ତଳେ ଯୋଡ଼ାଲିଙ୍ଗର ଅବସ୍ଥିତି ଅତି ଆଶ୍ଚର୍ଯ୍ୟଜନକ । ମନ୍ଦିରରେ ରହିଥିବା ଅନ୍ୟ ମୂର୍ତ୍ତିମାନଙ୍କ ମଧ୍ୟରେ ଏକ ଶରୀର ବିଶିଷ୍ଟ ତିନିମୂର୍ତ୍ତି, ଏହି ମୂର୍ତ୍ତିର ନିମ୍ନ ଦେଶରେ ହଂସ, ଗରୁଡ଼ ଓ ବୃଷଭ ବାହନ ଖୋଦିତ (ଦତ୍ତାତ୍ରୟ) । ଏଠାରେ ଅବସ୍ଥିତ ଅଷ୍ଟଭୁଜୀ ନୃସିଂହ ପଣ୍ଡୁ ନୃସିଂହ ନାମରେ ପ୍ରସିଦ୍ଧ ଏବଂ ମୂର୍ତ୍ତି ଭୀଷଣ ଉଗ୍ର । ଉପର ଦକ୍ଷିଣହସ୍ତ ଓ ବାମହସ୍ତରେ ହିରଣ୍ୟକଶ୍ୟପୁର ଅନ୍ତଃନାଭି, ଦ୍ୱିତୀୟ ଦକ୍ଷିଣ ହସ୍ତରେ ଚକ୍ର, ବାମ ହସ୍ତରେ ଶଙ୍ଖ । ଉଭୟ ତୃତୀୟ ହସ୍ତରେ ହରିଣ୍ୟକଶ୍ୟପୁର ହୃଦୟ ବିଦରଣ, ଚତୁର୍ଥ ହସ୍ତରେ ହରିଣ୍ୟର ମୁଣ୍ଡ ଏବଂ ବାମ ହସ୍ତରେ ଗୋଡ଼ ଏହି ମୂର୍ତ୍ତିର ବିଶେଷତା । ଲୋକ ବିଶ୍ୱାସ କରନ୍ତି ମୃତ୍ୟୁ ପରେ ଶବ ପଣ୍ଡୁନୃସିଂହ ବାଟ ଦେଇ ସ୍ୱର୍ଗଦ୍ୱାର ଗଲେ ମୋକ୍ଷ ଲାଭ କରେ ।

ଯମେଶ୍ୱରଙ୍କର ସେବକ ମୁଦୁଲି ମହାପାତ୍ର ଓ ପଣ୍ଡା ଉପାଧ୍ୟାରୀ ଅଟନ୍ତି । ମନ୍ଦିରର ପ୍ରଧାନ ପର୍ବପର୍ବାଣିଗୁଡ଼ିକ ମଧ୍ୟରେ ଯମ ଦ୍ୱିତୀୟ ଶ୍ରେଷ୍ଠ । କାର୍ତ୍ତିକ ମାସ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ଶ୍ରୀଯମେଶ୍ୱରଙ୍କ ଦର୍ଶନରେ ପ୍ରାଣୀ ମୃତ୍ୟୁଞ୍ଜୟୀ ହୋଇଥାଏ ବୋଲି ବିଶ୍ୱାସ ଲୋକମାନେ କରନ୍ତି । ଶ୍ରୀଜୀଉ, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ହିସାବ ରକ୍ଷକ ହୋଇଥିବାରୁ ଶ୍ରୀଜଗନ୍ନାଥଙ୍କ ଚକ୍ରାୟୁଧ ସୁଦର୍ଶନ ଦେବ ଗହ୍ମାପୂର୍ଣ୍ଣିମା, କୁମାର ପୂର୍ଣ୍ଣିମା ଏବଂ ରାଧାଷ୍ଟମୀରେ ଏହି ମନ୍ଦିରକୁ ଆସିଥାନ୍ତି । ରାଧାଷ୍ଟମୀ ଦିନ ଶ୍ରୀଜଗନ୍ନାଥଙ୍କ ବାର୍ଷିକ ଆୟବ୍ୟୟ ଶ୍ରୀଯମେଶ୍ୱରଙ୍କଠାରୁ ଶୁଣନ୍ତି । ସାଗର ବିଜେ ସମୟରେ (ଆଷାଢ଼ ମାସ ବ୍ୟତୀତ ଅନ୍ୟ ସମସ୍ତ ଅମାବାସ୍ୟାରେ) ଚକ୍ର ନାରାୟଣ ଦେବତା ବାଲିସାହିର ଉଆଁସଦାଣ୍ଡ ଦେଇ ସାଗର ବିଜେ କରନ୍ତି । ଏହି କର୍ମରେ ଚକ୍ର ନାରାୟଣ ଦେବତା ସମୁଦ୍ରକୂଳକୁ ଯାଇ ପଦ ପ୍ରକ୍ଷାଳନ ପରେ, ସାଗରଙ୍କୁ ପୂଜା ଓ ଆରାଧନା କରି ଶ୍ରୀଯମେଶ୍ୱର ମନ୍ଦିରକୁ ଯାଇ ଶ୍ରୀଯମେଶ୍ୱରଙ୍କର ଦର୍ଶନ କରନ୍ତି । ସେଠାରେ ପନ୍ତୀଭୋଗ ଖାଇ ଶ୍ରୀମନ୍ଦିରକୁ ଫେରନ୍ତି । ଠିକ୍ ସେହିପରି ଚୈତ୍ରକୃଷ୍ଣ ଏକାଦଶୀ ଏବଂ ଶ୍ରାବଣ ଶୁକ୍ଳ ନବମୀ ଦିନ ବାଡ଼ି ନୃସିଂହ କଣ୍ଡୁ ଆଶ୍ରମରେ ବିଜେ କରି ଯମେଶ୍ୱରଙ୍କୁ ଦର୍ଶନ କରନ୍ତି । ଏହି ଦେବତାଙ୍କର ଅନ୍ୟ ଶ୍ରେଷ୍ଠ ପର୍ବ ହେଉଛି ଶୀତଳଷଷ୍ଠୀ । ବିଶ୍ୱାସ ଅନୁସାରେ ଶ୍ରୀଯମେଶ୍ୱର ପାଞ୍ଚ ଭାଇମାନଙ୍କ ମଧ୍ୟରେ ବଡ଼ ହୋଇଥିବାରୁ ଅନ୍ୟମାନେ ବୃଷଭାରୂଢ଼ ହେଉଥିଲା ବେଳେ ଯମେଶ୍ୱର ରଥାରୂଢ଼ ହୋଇ ସପତ୍ନୀକ ଶ୍ରୀମନ୍ଦିରକୁ ଯାତ୍ରା କରନ୍ତି ଏବଂ ଯମେଶ୍ୱର ଦେବ ଶ୍ରୀମନ୍ଦିରରେ ପ୍ରବେଶ କରିବା ପୂର୍ବରୁ ଅନ୍ୟ କେହି ମହାଦେବ ମନ୍ଦିର ମଧ୍ୟକୁ ପ୍ରବେଶ କରିପାରନ୍ତି ନାହିଁ । ଯମେଶ୍ୱର ମନ୍ଦିରର ବର୍ତ୍ତମାନ ପରିଚାଳନା ଦାୟିତ୍ୱ ଦେବୋତ୍ତର ବିଭାଗ ଅଧୀନରେ ଅଛି । ସରକାରଙ୍କ ତରଫରୁ ନିଯୁକ୍ତ କାର୍ଯ୍ୟ ନିର୍ବାହୀ ଅଧିକାରୀ, ଟ୍ରଷ୍ଟବୋର୍ଡ଼ର ସମ୍ପାଦକ ଓ ଅନ୍ୟ ସଭ୍ୟମାନଙ୍କ ସହଯୋଗରେ ମନ୍ଦିର ପରିଚାଳନା କରୁଛନ୍ତି । କିଛି ଅନୁଦାନ, କିଛି ଶ୍ରଦ୍ଧାଳୁ ଭକ୍ତମାନଙ୍କ ଦାନ ଏବଂ ସାମାନ୍ୟ ଭୂ-ସମ୍ପତ୍ତିରୁ ଆୟ ମନ୍ଦିର କାର୍ଯ୍ୟ ପରିଚାଳନା ଏବଂ ରକ୍ଷଣାବେକ୍ଷଣ ପାଇଁ ଯଥେଷ୍ଟ ହେଉନଥିବାରୁ ଏଭଳି ଏକ ପୁରାତନ କୀର୍ତ୍ତିକୁ ରକ୍ଷା କରିବାକୁ ସରକାର ଏବଂ ଟ୍ରଷ୍ଟବୋର୍ଡ଼ ତରଫରୁ ଅଧିକ ଯତ୍ନ ନେବାର ଆବଶ୍ୟକତା ରହିଛି ।

### ଶ୍ରୀମାର୍କଣ୍ଡେଶ୍ୱର

ଶୈଳୋଦ୍ଭବ, ଭୌମକର ବା ସୋମବଂଶୀମାନଙ୍କ ସମୟରେ ନିର୍ମିତ ହୋଇଥିବା ଏହି ମନ୍ଦିର ପୁରୀ ସ୍ଥଳ ସ୍ତରଠାରୁ ପ୍ରାୟ ୬୦ ଫୁଟ ନିମ୍ନରେ ଅବସ୍ଥିତ । କେହି କେହି ଗବେଷକ ଏହା ଗଙ୍ଗ ସମ୍ରାଟ ଚୋଡ଼ଗଙ୍ଗଦେବଙ୍କ ସମୟରେ ନିର୍ମିତ ହୋଇଥିଲା ବୋଲି ବର୍ଣ୍ଣନା କରନ୍ତି । ମୁଖ୍ୟ ଦେବତାଙ୍କ ଶକ୍ତି ମଧ୍ୟସ୍ଥ ଲିଙ୍ଗ ଖଣ୍ଡ ବିଖଣ୍ଡିତ । ଏହାର କାରଣ ଈଶ୍ୱର ଆବିର୍ଭୁତ ହୋଇ ଯମଙ୍କ କବଳରୁ ଶରଣାପନ୍ନ ମାର୍କଣ୍ଡ ଋଷିଙ୍କୁ ରକ୍ଷା କରିବା ପାଇଁ କରିଥିବା ଚେଷ୍ଟା । ଉକ୍ତ ବୃତ୍ତାନ୍ତ ମନ୍ଦିର ଗର୍ଭଗୃହର ଏକପାର୍ଶ୍ୱରେ ଅଙ୍କିତ । ଅପରପାର୍ଶ୍ୱରେ ଶ୍ରୀକ୍ଷେତ୍ରାଧୀଶ୍ୱରଙ୍କ ଚତୁର୍ଦ୍ଧାମୂର୍ତ୍ତି ଚିତ୍ରିତ । କେହି କେହି ମାଦଳାପାଞ୍ଜିକୁ ଭିତ୍ତିକରି ଏହି ମନ୍ଦିର କେଶରୀବଂଶର ଭୀମ କେଶରୀଙ୍କ ଦ୍ୱାରା ପ୍ରାୟ ୧୦ମ ଶତାବ୍ଦୀ ବେଳକୁ ନିର୍ମିତ ହୋଇଥିବାର ବର୍ଣ୍ଣନା ମଧ୍ୟ କରନ୍ତି । ମନ୍ଦିର ଗର୍ଭଗୃହର ପ୍ରବେଶ ଦ୍ୱାରସ୍ଥ ଉଭୟ ପାର୍ଶ୍ୱରେ ଶିଳାଲେଖ ରହିଛି । ଶିଳାଲେଖର ତଥ୍ୟାବଳୀ ଗବେଷଣାର ବସ୍ତୁ । ମନ୍ଦିର ତ୍ରିରଥ ଶ୍ରେଣୀର ଓ ବ୍ରାହ୍ମଣ ଜାତୀୟ । ମନ୍ଦିରର ଉଚ୍ଚତା ପ୍ରାୟ ୪୫ ଫୁଟ । ଜଗମୋହନ ଓ ନାଟ ମନ୍ଦିରକୁ ନେଇ ମନ୍ଦିର । ଜଗମୋହନ ଏକପାର୍ଶ୍ୱରେ କ୍ଷୁଦ୍ର ସ୍ତମ୍ଭାକୃତି ଈଶାନ ପ୍ରତିଷ୍ଠିତ । ନାଟମନ୍ଦିରର ବର୍ହିଭାଗରେ ଶିବ ବିବାହ ଅବସରରେ ନିୟୋଜିତ ବାହନ ବୃଷଭ ଏବଂ ଚଳନ୍ତି ପ୍ରତିମାଙ୍କ ଲାଗି ଉଦ୍ଦିଷ୍ଟ ବିମାନ ସଂରକ୍ଷିତ । ମୁଖ୍ୟ ମନ୍ଦିରର ବେଢ଼ା ମଧ୍ୟରେ ଗଣେଶ ଏବଂ କାର୍ତ୍ତିକେୟ ପୂଜା ପାଆନ୍ତି । ଉତ୍ତରର ଏକ କ୍ଷୁଦ୍ର ମନ୍ଦିରରେ ଦେବୀ ପାର୍ବତୀ ବିରାଜମାନ । ମନ୍ଦିର ଗାତ୍ରରେ ଦଶମହାବିଦ୍ୟାଙ୍କ ପ୍ରତିକୃତି ଅବସ୍ଥିତ । ବେଢ଼ା ମଧ୍ୟରେ ଅଛି, ପାକଶାଳା କୂପ ଏବଂ ଏକ କ୍ଷୁଦ୍ର ମନ୍ଦିରରେ ପଞ୍ଚପାଣ୍ଡବ । ଅନ୍ୟ ଏକ କ୍ଷୁଦ୍ର ମନ୍ଦିରରେ ବୈଦ୍ୟନାଥ ଏବଂ ରାମେଶ୍ୱର ପୂଜିତ । ପୀଠର ମୁଖ୍ୟ ପ୍ରବେଶ ପଥର ଦକ୍ଷିଣପାର୍ଶ୍ୱରେ ଉତ୍କଳୀୟ ଶାକ୍ତ ପରମ୍ପରାର ଉଡ୍ଡୟାୟାନ ପୀଠ ସପ୍ତମାତୃକା ମନ୍ଦିର ଅବସ୍ଥିତ । ଉଭୟ ପାର୍ଶ୍ୱରେ ରହିଛନ୍ତି ପାର୍ବତୀଙ୍କୁ ବାମଜାନୁରେ ଧାରଣ କରିଥିବା ଶିବ ଏବଂ ଗଣେଶ୍ୱର । ପାର୍ଶ୍ୱରେ ନବଗ୍ରହ । ପାଖରେ ଅଷ୍ଟଦ୍ୱାର ବୋଉତି ଦେଉଳ, ଯାହାର ଛଅଟି ଦ୍ୱାର, ବର୍ତ୍ତମାନ ରୁଦ୍ଧ । ଏହାର ଅନ୍ୟନାମ କାଳୀୟ ମଣ୍ଡପ । ମନ୍ଦିରର ବହିର୍ଦ୍ଦେଶର ଉପରିଭାଗରେ ବଙ୍ଗଳା ଭାଷାରେ ଶିଳାଲେଖ ଏବଂ ମନ୍ଦିର ଅନ୍ତର୍ଦ୍ଦେଶରେ ଓଡ଼ିଆ ଶିଳାଲେଖ । ଏଥିରୁ ଏହା କୀର୍ତ୍ତିଚନ୍ଦନଙ୍କ ମାତାଙ୍କ ଦ୍ୱାରା ୧୭୬୭ ଶକାବ୍ଦରେ ନିର୍ମିତ, ୧୭୩୬ରୁ ୧୭୮୦, ରାଜା ବୀରକିଶୋର ଦେବଙ୍କ ସମୟରେ । ମୁଖ୍ୟ ବିଗ୍ରହଙ୍କ ଭଳି ଏଠାରେ ବିନିଷ୍ଟ, ଏକ କଳାମୁଗୁନି ପଥର ନିର୍ମିତ ଅତ୍ୟନ୍ତ କାରୁକାର୍ଯ୍ୟ ବିଶିଷ୍ଟ ଶ୍ରୀକୃଷ୍ଣ ମୂର୍ତ୍ତି ଅଛି । ଏହାର ପାର୍ଶ୍ୱରେ ଅଛି ଦୋଳବେଦୀ ଏବଂ ଧବଳେଶ୍ୱର ମନ୍ଦିର ।

ମନ୍ଦିର ନିକଟରେ ପ୍ରସିଦ୍ଧ ମାର୍କଣ୍ଡ ପୁଷ୍କରିଣୀ । ସ୍କନ୍ଦ ପୁରାଣ ବର୍ଣ୍ଣନା ଅନୁସାରେ ଏହା ମାର୍କଣ୍ଡ ଋଷିଙ୍କ ପାଇଁ ସୁଦର୍ଶନ ଚକ୍ରଙ୍କ ଦ୍ୱାରା ଖୋଦିତ । ପୁଷ୍କରିଣୀର ପୂର୍ବ ପାର୍ଶ୍ୱ, ୫୦୮ ଫୁଟ, ପଶ୍ଚିମ ୫୪୨ ଫୁଟ, ଉତ୍ତର ପାର୍ଶ୍ୱ ୩୫୦ ଫୁଟ ଏବଂ ଦକ୍ଷିଣ ପାର୍ଶ୍ୱ ୩୮୫ ଫୁଟ । ଏହାର କେନ୍ଦ୍ର ସ୍ଥଳରେ ଯଜ୍ଞବେଦୀ । ଏହି ସରୋବର ଅତି ପବିତ୍ର ବୋଲି ଗ୍ରହଣ କରାଯାଏ । ନୂତନ ଜଳର ପ୍ରବେଶ ଏବଂ ଉଦ୍‌ବୃତ୍ତ ଜଳ ନିଷ୍କାସିତ ହେବାର ବ୍ୟବସ୍ଥା ସୁଡଙ୍ଗାକୃତୀ ଆଗମନ ପଥ ଦ୍ୱାରା ହୋଇଥିବାର ବର୍ଣ୍ଣନା ଅଛି । ବର୍ତ୍ତମାନ ପଥଗୁଡ଼ିକ ନୂତନ ନିର୍ମିତ ବାସଗୃହଗୁଡ଼ିକ ପାଇଁ ଅବରୁଦ୍ଧ । ପ୍ରାଚୀନ ଉତ୍କଳ ବର୍ଣ୍ଣନାନୁସାରେ ଶ୍ରୀ ୭୬୧ ରୁ ୭୮୫ ମଧ୍ୟରେ କେଶରୀ ରାଜା କୋଶଳ କେଶରୀଙ୍କ ଦ୍ୱାରା ମାର୍କଣ୍ଡ ପୁଷ୍କରିଣୀର ଚତୁଃପାର୍ଶ୍ୱର ପଥର ପାହାଚ ଏବଂ ମାର୍କଣ୍ଡେଶ୍ୱର ମହାଦେବଙ୍କ ମନ୍ଦିର ନିର୍ମାଣ କରାଯାଇଥିଲା । ମାର୍କଣ୍ଡେୟ ଆଶ୍ରମ ପୁରୀର ଚତୁରାଶ୍ରମ ମଧ୍ୟରେ ଅନ୍ୟତମ । ଏହି ମାର୍କଣ୍ଡେୟ ପୁଷ୍କରିଣୀ ଅନ୍ୟତମ ଶ୍ରେଷ୍ଠତୀର୍ଥ ।

ଏହାଙ୍କର ସେବକ ସାହିନାହକ ଏବଂ ଧ୍ୱଜାପାଟଣାରେ ଜମିଦାରୀ ପାଇ ସେବା କରନ୍ତି । ଏଠାରେ ପାଳନ କରାଯାଉଥିବା ପର୍ବପର୍ବାଣିଗୁଡ଼ିକ ମଧ୍ୟରେ ଅଶୋକାଷ୍ଟମୀ ଶ୍ରେଷ୍ଠ । ଏହି ଦିନ ଲିଙ୍ଗ ଉଲାଗି ଅଶୋକାକଢ଼ି ସେବା ଏକ ଶ୍ରେଷ୍ଠ ପ୍ରଥା । ଶ୍ରାବଣ ମାସର କୃଷ୍ଣ ଏକାଦଶୀ, ଚକ୍ରବୁଲା ଏକାଦଶୀ ଦିନ ଜଗନ୍ନାଥ ମହାପ୍ରଭୁଙ୍କର ପ୍ରତିନିଧି ଚକ୍ର ନାରାୟଣ ସୁନାଚକ ରଥରେ ଏଠାକୁ ଆସିଥାନ୍ତି । ଶ୍ରାବଣ ଶୁକ୍ଳନବମୀ ଦିନ ବାଡ଼ି ନୃସିଂହ ଏଠାକୁ ବିଜେ କରନ୍ତି । ଗହ୍ମାପୂର୍ଣ୍ଣମୀ ଦିନ ସୁଦର୍ଶନ ବିମାନରେ ଏଠାକୁ ଆସିବା ପରେ ବଳଭଦ୍ରଙ୍କର ଜନ୍ମ ବିଧି ଏଠାରେ ପାଳନ କରାଯାଏ । ଭାଦ୍ରବ ମାସର କାଳୀୟ ଦଳନ ଏକାଦଶୀ ଦିନ ମଦନମୋହନ ଓ ରାମକୃଷ୍ଣଙ୍କ ଆଗମନ ପରେ ଏଠାରେ କାଳୀୟଦଳନର ସମସ୍ତ ବିଧି ମହାସମାରୋହରେ ସମ୍ପନ୍ନ ହୋଇଥାଏ । ଋଷିପଞ୍ଚମୀଦିନ ମହାଲକ୍ଷ୍ମୀଙ୍କ ଆଗମନରେ ବିଧି ସମ୍ପନ୍ନ ହୁଏ । ଏହି ମନ୍ଦିରର ପ୍ରବେଶ ଦ୍ୱାରରେ ଥିବା ବାଞ୍ଛାବଟ ବହୁ ପୁରାତନ ବୋଲି ଲୋକମୁଖରେ କଥିତ । ଏଠାରେ କେବଳ ଥରେ ମାତ୍ର ଅନ୍ନଭୋଗ ହୁଏ । ମନ୍ଦିର ପରିଚାଳନା ଦାୟିତ୍ୱ ସେବକମାନଙ୍କ ହାତରେ ଅଛି । ଏପର୍ଯ୍ୟନ୍ତ ଦେବୋତ୍ତର ବିଭାଗ ଅଧୀନକୁ ଯାଇନାହିଁ । ମନ୍ଦିରର କିଛି ନିଜସ୍ୱ ଜମି ଅଛି । ଏହା ସେବକମାନେ ଦଖଲ କରନ୍ତି । ଶିବଭକ୍ତମାନଙ୍କର ଦାନ ମୁଖ୍ୟ ଆୟର ପନ୍ଥା ।

### ଶ୍ରୀଲୋକନାଥ

ଶଙ୍ଖକ୍ଷେତ୍ର ପୁରୀ ମୂଳରେ ପ୍ରଭୁ ଶ୍ରୀଲୋକନାଥଙ୍କ ମନ୍ଦିର । ପଞ୍ଚମହାଦେବଙ୍କ ମଧ୍ୟରେ ଶ୍ରୀଲୋକନାଥ ଜଗନ୍ନାଥଙ୍କ ଅଧିକ ନିକଟତର । ଶ୍ରୀଲୋକନାଥ ଜଗନ୍ନାଥ ସଂସ୍କୃତିରେ ଲୋକମାନସରେ ଅଧିକ ଭୟ ସଂଚାର କରିପାରିଥିବା ରୌଦ୍ରଶକ୍ତିର ପ୍ରତୀକ । ଶ୍ରୀଲୋକନାଥଙ୍କ ପାଦୁକା ପ୍ରାପ୍ତିରେ ମୁକ୍ତି ଏବଂ ସର୍ବବ୍ୟାଧି ନିବାରଣ ହେବାର ବିଶ୍ୱାସ ଏବେବି ଦୃଢ଼ । ଏହା ପାଦ ସ୍ପର୍ଶ କଲେ ଅମଙ୍ଗଳ ହୁଏ । ଶ୍ରୀଲୋକନାଥ ପାତାଳଫୁଟା, ସ୍ୱୟମ୍ଭୁ ଏବଂ ଏହାଙ୍କ ମସ୍ତିଷ୍କରେ ଗଙ୍ଗା ବିଜେ କରିଛନ୍ତି ବୋଲି ସାଧାରଣରେ ବିଶ୍ୱାସ ପ୍ରଚଳିତ । ପୁରାଣ

ବର୍ଣ୍ଣିତ ଲାଉକେଶ୍ୱର ଆଧୁନିକ ଲୋକନାଥ । ଭୌମକର ବଂଶୀୟ ରାଣୀ ମାଧବୀ ଦେବୀଙ୍କ ଦ୍ୱାରା ଏହି ମନ୍ଦିର ସ୍ଥାପନ କରାଯାଇଥିଲା ଏବଂ ଏହା ପ୍ରାଚୀ ନଦୀ କୂଳର ଦ୍ୱାଦଶ ଲିଙ୍ଗଙ୍କ ସମସାମୟିକ ବୋଲି ବର୍ଣ୍ଣନା ମିଳେ । ଭୂମିଠାରୁ ଏହାର ପତ୍ତନ ପ୍ରାୟ ୩୫ ଫୁଟ ନିମ୍ନରେ । ଏହା ନିକଟରେ ଅନ୍ୟତମ ଶ୍ରେଷ୍ଠ ତୀର୍ଥ ପୁଷ୍କରିଣୀ ପାର୍ବତୀ ସାଗର ଅବସ୍ଥିତ ।

ମନ୍ଦିର ପଶ୍ଚିମମୁଖା । ପଶ୍ଚିମୁଖା ଶିବ ଉଗ୍ର, ପ୍ରଳୟଙ୍କରୀ ଏବଂ ଶୀଘ୍ର ବରଦାନକାରୀ ବୋଲି ବର୍ଣ୍ଣନା ଅଛି । ପୁରୀ କ୍ଷେତ୍ର ବର୍ଣ୍ଣନାରେ ଏହାର ବିଶେଷ ଗୁରୁତ୍ୱ ଦେଖିବାକୁ ମିଳେ ନାହିଁ । ମନ୍ଦିରର ଉଚ୍ଚତା ପ୍ରାୟ ୨୫ ଫୁଟ, ତ୍ରିରଥ ଏବଂ ବ୍ରାହ୍ମଣ ଜାତୀୟ । ମନ୍ଦିର ବେଢ଼ାରେ ବିଶେଷ ମନ୍ଦିର ଦେଖାଯାଏ ନାହିଁ । ଉତ୍ତରପାର୍ଶ୍ୱରେ ସନ୍ନିହିତ ମନ୍ଦିରରେ ପାର୍ବତୀ ପୂଜିତା । ଦକ୍ଷିଣରେ ରୋଷଘର ଏବଂ ମନ୍ଦିରରେ ତିନିଗୋଟି ପ୍ରବେଶପଥ ରହିଅଛି । ବାହାର ବେଢ଼ା ଏବଂ ଭିତର ବେଢ଼ା ଅଛି । ବାହାର ବେଢ଼ାରେ ବୃଷଭ ଏବଂ ବିମାନ ରହେ । ଏହାର ପରିଚାଳନା ଦାୟିତ୍ୱ ଶଙ୍କରାନନ୍ଦ ମଠର ସ୍ୱାମୀଙ୍କ ହାତରେ ନ୍ୟସ୍ତ ତାଙ୍କ ବର୍ଣ୍ଣନାନୁସାରେ ଶୃଙ୍ଗେରୀ ମଠ ଶଙ୍କରାଚାର୍ଯ୍ୟ ବାଳବ୍ରହ୍ମାନନ୍ଦ ସରସ୍ୱତୀସ୍ୱାମୀ ଶ୍ରୀଲୋକନାଥଙ୍କ ମନ୍ଦିର ପରିଚାଳନା ଦାୟିତ୍ୱରେ ଥିଲେ । ମହାରାଜ ନରସିଂହ ଦେବଙ୍କ ସମୟରୁ ଶଙ୍କରାନନ୍ଦ ମଠାଧୀଶ ମହେଶ୍ୱରାନନ୍ଦଙ୍କଠାରେ ଏହାର ପରିଚାଳନା ଦାୟିତ୍ୱ ନ୍ୟସ୍ତ । ବର୍ତ୍ତମାନ ଏହା ଦେବୋତ୍ତର ବିଭାଗ ଦ୍ୱାରା ସମନ୍ୱିତ ପରିଚାଳନା ଟ୍ରଷ୍ଟ ବୋର୍ଡ଼ ଦ୍ୱାରା ପରିଚାଳିତ । ଏହାର ମୁଖ୍ୟ ଏକଜିକ୍ୟୁଟିଭ ଅଫିସର, ସମ୍ପାଦକ ଶଙ୍କରାନନ୍ଦ ମଠର ସ୍ୱାମୀ ଏବଂ ସେବକ ଏବଂ ମନୋନୀତ ପ୍ରତିନିଧିଙ୍କୁ ନେଇ ଗଠିତ ।

ଏଠାରେ ସେବକ ଦୁଇଶ୍ରେଣୀର । ପଣ୍ଡା ଉପାଧିଧାରୀ ସେବକମାନେ ଶ୍ରୀଲୋକନାଥଙ୍କ ସହ ବାଟଲୋକନାଥଙ୍କ ସେବା କଲାବେଳେ, ମହାପାତ୍ର ଉପାଧିଧାରୀ ସେବକମାନେ ମା'ବିମଳାଙ୍କ ସେବା ମଧ କରନ୍ତି । ଏଠାରେ ପାଞ୍ଚଗୋଟି ଧୂପର ବ୍ୟବସ୍ଥା ଅଛି । ବଲ୍ଲଭ ଓ ବଡ଼ସିଂହାର ପାଇଁ ଭୋଗ ସାମଗ୍ରୀ ଶ୍ରୀମନ୍ଦିରରୁ ମିଳେ (କୋରା ଏବଂ ଦହି) । ବର୍ତ୍ତମାନ ସେବକମାନେ ନିଜ ନିଜ ପାଳିର ଭୋଗ କରୁଅଛନ୍ତି । ଏହି ମନ୍ଦିର ୧୦ ଏକର ଜମି ଉପରେ ଅବସ୍ଥିତ । ଏହା ବ୍ୟତୀତ ଏହି ମନ୍ଦିରର ପର୍ଯ୍ୟାପ୍ତ ଜମି ଆଳିକିଆ, ସିଙ୍ଗମାପୁ, ଅରିପଡ଼ା, ଗୋପାଳପୁର, ବୀରଗୋବିନ୍ଦପୁର ଏବଂ କାଶୀଜଗନ୍ନାଥପୁରରେ ଅଛି । ମନ୍ଦିର ପରିସର ନିଲାମ, ଚାଷଜମିରୁ ଆୟ ତଥା ଶିବରାତ୍ରୀ ଏବଂ ସରନ୍ତି ସୋମବାରରେ ଲୋକନାଥ ଘାଟ ନିଲାମ ଏହି ମନ୍ଦିରର ମୁଖ୍ୟ ଆୟର ପନ୍ଥା ।

ଜାଗରଯାତ୍ରା ମହାପ୍ରଭୁଙ୍କ ଶ୍ରେଷ୍ଠ ଯାତ୍ରା । ଏହା ଶିବ ଚତୁର୍ଦ୍ଦଶୀ ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ ଦିନ ପାଳିତ ହୁଏ । ଏହି ପର୍ଯ୍ୟାୟ ଉତ୍ସବର ପ୍ରଥମ ଅଙ୍କ ପଙ୍କ ଉଦ୍ଧୁଳା ଏକାଦଶୀ । ବର୍ଷସାରା ସଫା ହୋଇନଥିବା ଗର୍ଭଗୃହ ବର୍ଷରେ ଏହି ଗୋଟିଏ ଦିନ ମାତ୍ର ସଫା କରାଯାଏ । ଏହି ଦିନ ହିଁ ଏକମାତ୍ର ଦିନ ଯେଉଁଦିନ ଶକ୍ତି ସହିତ ଲିଙ୍ଗଙ୍କୁ ଦର୍ଶନ କରାଯାଇପାରେ (ଲିଙ୍ଗପୁରାଣ) । ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଜାଗରଦିନ ଲୋକନାଥ ମନ୍ଦିରକୁ ବିଜେ କରିବା ପରେ ହରିହର ଏବଂ ବ୍ରହ୍ମାଙ୍କର ଏକ ମିଳନାତ୍ମକ ହରିହର ଭେଟ ଏବଂ ଶ୍ରୀଲୋକନାଥଙ୍କ ବିଗ୍ରହରେ ବିଷ୍ଣୁଙ୍କର ପ୍ରିୟ କେତକୀ ଫୁଲ ଲାଗି ଏବଂ ଅଖଣ୍ଡଦ୍ୱୀପ ପ୍ରଜ୍ୱଳନ ଏକ ଅଲଭ୍ୟ ଭେଟ ହୋଇଥିବାରୁ ମୁକ୍ତି ପାଇଁ ବହୁଲୋକ ଉଜାଗର ରହି ଦୀପ ଜାଳି ଥାଆନ୍ତି । ପୁରୀ ତଥା ଓଡ଼ିଶାରେ ଏହା ଏକ ବିଶିଷ୍ଟ ପର୍ବ । ସରନ୍ତି ସୋମବାର ବା ବୈଶାଖ ଶେଷ ସୋମବାର ଲୋକନାଥ ମହାପ୍ରଭୁଙ୍କର ଅନ୍ୟତମ ଶ୍ରେଷ୍ଠ ଉତ୍ସବ । ଏହିଦିନ ପୁରୀ ଅଞ୍ଚଳ ପ୍ରସିଦ୍ଧ ଚୁଡ଼ାଘଷା ପ୍ରସ୍ତୁତି ଏବଂ ଭୋଗ ଆକର୍ଷଣୀୟ । ଛାଡ଼ଖାଇ ଏଠାରେ ଅନ୍ୟ ଏକ ବିଶେଷ ପର୍ବ । ଏହିଦିନ ସନ୍ଧ୍ୟା ଧୂପର ସ୍ୱତନ୍ତ୍ର ଭୋଗ ବହୁ ଲୋକଙ୍କୁ ଆକର୍ଷିତ କରିଥାଏ । ସୋମବାର ଦିନ ଏକାଦଶୀ ପଡ଼ିଲେ ଶମ୍ଭୁ ଏକାଦଶୀ ପାଳନ କରାଯାଏ । ଏହି ଦିନ ଲୋକନାଥ ଶ୍ରୀମନ୍ଦିରକୁ ଆସି ଚଳନ୍ତି ପ୍ରତିମା ଏବଂ ମାନସିକ ବ୍ରହ୍ମାଙ୍କ ସହ ମିଳିତ ହୋଇ ଦ୍ୱିତୀୟ ହରିହର ଭେଟ କରାଯାଏ ।

**ଶ୍ରୀକପାଳଲୋଚନ**

ଶ୍ରୀମନ୍ଦିର ଦକ୍ଷିଣ ପଶ୍ଚିମକୋଣରେ ପ୍ରାୟ ୮୦ ଫୁଟ ଦୂରରେ ଶ୍ରୀକପାଳଲୋଚନଙ୍କ ମନ୍ଦିର । ଶୈଳଦୋଭବ, ଭୌମକର ବା ସୋମବଂଶୀ ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବା ଏହି ମନ୍ଦିର ସ୍ଥଳସ୍ତରଠାରୁ ପ୍ରାୟ ୫୦ ଫୁଟରୁ ଅଧିକ ନିମ୍ନରେ ଅବସ୍ଥିତ । ଏହାର ଅନ୍ୟନାମ ମଣିକର୍ଣ୍ଣିକା । ମନ୍ଦିରର ପରିସର କ୍ଷୁଦ୍ର ମାତ୍ର ୮୦/୯୦ ଫୁଟ ଆକାର ବିଶିଷ୍ଟ । ମନ୍ଦିରର ଗୋଟିଏ ମାତ୍ର ପ୍ରବେଶପଥ । ରାସ୍ତା ନିମ୍ନକୁ ୧୨ଟି ପାହାଚ ପରେ ମନ୍ଦିରବେଢ଼ା । ମନ୍ଦିର ଚାରିପାଖରେ ଉଚ୍ଚପ୍ରସ୍ତର ପ୍ରାଚୀର । ମନ୍ଦିରର ମୁଖ୍ୟମନ୍ଦିରରେ ଶକ୍ତି ଏବଂ ଲିଙ୍ଗ ସ୍ୱୟଂଭୁ ଏବଂ ସ୍ୱୟଂ ସଂପୂର୍ଣ୍ଣ । ମନ୍ଦିରରେ ଅନ୍ୟ ଦେବାଦେବୀଙ୍କ ମଧ୍ୟରେ ସିଦ୍ଧ ବିନାୟକ ମୁଖ୍ୟ, ଯାହାକି ଜଗନ୍ନାଥ ମନ୍ଦିରର ପୂର୍ବବର୍ତ୍ତୀ ବୋଲି ଗ୍ରହଣ କରାଯାଏ । କେହି କେହି ଏହା ୧୧୪୨ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ ବୋଲି ମଧ ମତ ଦିଅନ୍ତି । ଏହି ଦକ୍ଷିଣାବର୍ତ୍ତ ଗଣେଶଙ୍କର ଗଠନ ଶୈଳୀ ସ୍ୱତନ୍ତ୍ର ଏବଂ ଅନନ୍ୟ । ପ୍ରତ୍ୟହ ଶ୍ରୀମନ୍ଦିରରୁ ବଡ଼ବାଡ଼ ଶ୍ରୀବଳଭଦ୍ରଙ୍କର ଏକ ପୁଷ୍ପଗୁଣା ଏହାଙ୍କୁ ଲାଗି କରାଯାଏ । କାର୍ତ୍ତିକ, ହରପାର୍ବତୀ, ଗଙ୍ଗାଦେବୀ, ମହାବୀର, ରାମେଶ୍ୱର, କାଳୀ ପ୍ରଭୃତି ଦେବାଦେବୀ ଏବଂ ମଣିକର୍ଣ୍ଣିକା କୂପ ମଧ ଏଠାରେ ରହିଛି । ଏହି କୂପର ଜଳପାନ କଲେ ବନ୍ଧ୍ୟାନାରୀ ପୁତ୍ରବର୍ତ୍ତୀ ହୋଇପାରେ ବୋଲି ବିଶ୍ୱାସ ରହିଛି । ଉଦରପୀଡ଼ା ମଧ ଏଥିରେ ଭଲ ହୁଏ । ପୁରାଣ ବର୍ଣ୍ଣନାନୁସାରେ ବ୍ରହ୍ମାଙ୍କ ପଞ୍ଚମ ମୁଣ୍ଡ ହାତରେ ଲାଗି ରହିଥିବା ବେଳେ ଭ୍ରମଣ କରୁକରୁ ଶିବ ଏଠାକୁ ଆସିବା ପରେ ମୁଣ୍ଡ ଏଠାରେ ହସ୍ତମୁକ୍ତ ହୋଇଥିବାରୁ ଏହାଙ୍କ ନାମ କପାଳମୋଚନ । ଏଠାରେ ବ୍ରାହ୍ମଣ ତଥା ଗୋହତ୍ୟା ପାପରୁ ମୁକ୍ତି ମିଳିବାର ବର୍ଣ୍ଣନା ମଧ ଦେଖିବାକୁ ମିଳେ ।

ବର୍ତ୍ତମାନ ମନ୍ଦିର ଆର୍ଥିକ ସ୍ଥିତି ବହୁତ ଖରାପ । ତେଣୁ ଆଗରୁ ପ୍ରଚଳିତ ଥିବା ଭୋଗ ପ୍ରଣାଳୀ ଏବଂ ନିର୍ଘଣ୍ଟର ବହୁ ପରିବର୍ତ୍ତନ ହୋଇ କେବଳ ଏକ ଅନ୍ନଭୋଗରେ ସୀମିତ ଅଛି । ରାଜ୍ୟ ଦେବୋତ୍ତର ବିଭାଗ ଦ୍ୱାରା ୧୯୮୩ରୁ ଏକ ଟ୍ରଷ୍ଟବୋର୍ଡ଼ ଦ୍ୱାରା ଏହା ପରିଚାଳିତ । ଏହି ବୋର୍ଡ଼ ଚେଷ୍ଟାରେ ଭଗ୍ନ ପ୍ରାୟ ଥିବା ମନ୍ଦିରର ପୁନରୁଦ୍ଧାର କାର୍ଯ୍ୟ କରାଯାଇପାରିଛି ।

ମନ୍ଦିରର ମୁଖ୍ୟ ପର୍ବପର୍ବାଣିଗୁଡ଼ିକ ମଧ୍ୟରେ ଜଳଶଇ, ଶୀତଳଷଷ୍ଠୀ, ଶିବରାତ୍ରୀ, ଦୋଳପୂର୍ଣ୍ଣିମା, ଚନ୍ଦନ, ଅଗ୍ନ୍ୟୁତ୍ସବ, କୃଷ୍ଣଚତୁର୍ଦ୍ଦଶୀ ଏବଂ ଅମାବାସ୍ୟା ଉତ୍ସବଗୁଡ଼ିକ ମଧ୍ୟରୁ ବହୁ କାର୍ଯ୍ୟକ୍ରମ ପାଳନ କରିବା ସମ୍ଭବ ହେଉନାହିଁ । ୧୯୮୩ ମସିହାରେ ଚନ୍ଦନଯାତ୍ରାବେଳେ ଚଳନ୍ତି ବିଗ୍ରହ ଚୋରି ହୋଇଥିବାରୁ ନୂତନ ପ୍ରତିଷ୍ଠିତ ଚଳନ୍ତି ପ୍ରତିମା ଏଠାରେ ଅଛନ୍ତି ।

କପାଳଲୋଚନ ମହାଦେବଙ୍କ ବିଷୟରେ ୧୮୦୫ ଗ୍ରୋମସ୍ ରିପୋର୍ଟ ବାହାର ଦେଉଳି ତାଲିକାରେ ୧୦୬ ନମ୍ବରରେ ବର୍ଣ୍ଣନା ଅଛି । ଜଗବନ୍ଧୁ ସିଂଙ୍କ ରଚିତ ପ୍ରାଚୀନ ଉତ୍କଳରେ ୧୦୭ ପୃଷ୍ଠାରେ ବର୍ଣ୍ଣନା ଅଛି ଯେ, ଏହି ମନ୍ଦିର ପାଇଁ ୫୦ ମାଢ଼ ସୁନା ଓ ମଣିକର୍ଣ୍ଣିକା ତୀର୍ଥ ପାଇଁ ୩ ମାଢ଼ ସୁନା ଗଙ୍ଗବଂଶର ରାଜା ଦାନ ଦେଇଥିଲେ ଏବଂ ବହୁ ଭୂ-ସମ୍ପତ୍ତି ଖଞ୍ଜି ଥିଲେ । ବର୍ତ୍ତମାନ ମନ୍ଦିରର କୌଣସି ଭୂ-ସମ୍ପତ୍ତି ନାହିଁ ।

**ଶ୍ରୀନୀଳକଣ୍ଠେଶ୍ୱର**

ଶ୍ରୀନୀଳକଣ୍ଠେଶ୍ୱର ମହାଦେବ ଶଙ୍ଖକ୍ଷେତ୍ରର ଅଗ୍ରଭାଗ ଅର୍ଥାତ୍ ଉତ୍ତର-ପୂର୍ବ କୋଣରେ ବିଦ୍ୟମାନ । ସର୍ବକାମପ୍ରଦ ବୃଷଭଧ୍ୱଜ ଭଗବାନ ଶିବଙ୍କ ଆଶୀର୍ବାଦରୁ ରାଜା ଇନ୍ଦ୍ରଦ୍ୟୁମ୍ନ ସହସ୍ର ଅଶ୍ୱମେଧ ଯଜ୍ଞ ସମାପନ କରିବାକୁ ସମର୍ଥ ହୋଇଥିଲେ ବୋଲି ନିଳାଦ୍ରି ମହୋଦୟରୁ ବର୍ଣ୍ଣନା ନୀଳକଣ୍ଠ ମହାଦେବଙ୍କ ପ୍ରାଚୀନତାକୁ ଦୃଢ଼ କରେ । ଶ୍ରୀମନ୍ଦିରଠାରୁ ୩ କିଲୋମିଟର ଦୂର ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ନିକଟରେ ଏହା ଅବସ୍ଥିତ । ସ୍ଥଳ ପତ୍ତନଠାରୁ ପ୍ରାୟ ୪୦ ଫୁଟ ତଳେ ଏହି ମନ୍ଦିର ଅବସ୍ଥିତ । ବର୍ଣ୍ଣିତ ଅଛି ସ୍ୱର୍ଗୀୟ କାମଧେନୁ ଏହି ଶିବ ଲିଙ୍ଗଙ୍କର ମସ୍ତକକୁ ଦୁଗ୍ଧଧାରାରେ ସ୍ନିଗ୍ଧ କରନ୍ତି ଏବଂ ଦେବଗଣ ବିଲ୍ୱପତ୍ର ଏବଂ ପୁଷ୍ପ ବୃଷ୍ଟି କରନ୍ତି ।

ମୂଳମନ୍ଦିରର ଉଚ୍ଚତା ପ୍ରାୟ ୨୦ ଫୁଟ । ଏହାର ଜଗମୋହନ ୧୫ ଫୁଟ ଏବଂ ନାଟଶାଳା ୧୦ ଫୁଟ । ନାଟଶାଳାର ମଧ୍ୟଭାଗରେ ୩ ଫୁଟ ଉଚ୍ଚ ସ୍ତମ୍ଭରେ ମନୋରମ ମଣିମୟ ବୃଷର ଆସୀନ । ମନ୍ଦିର ଗଠନର ଶୈଳୀ ପ୍ରାଚୀନ ଏବଂ ରେଖ ଶୈଳୀରେ ଗଠିତ ।

ହରଚଣ୍ଡୀ ସାହି ଖୁଣ୍ଟିଆ ସେବକମାନେ ଏହାର ସେବକ ଏବଂ ପରିଚାଳକ ମଧ୍ୟ । ମନ୍ଦିର ଏକ ଏକର ଜମି ଉପରେ ଅବସ୍ଥିତ । ଏହି ମନ୍ଦିରର ଦୂରତା ଶ୍ରୀମନ୍ଦିରଠାରୁ ଅଧିକ ଥିବାରୁ ନୀତିରେ (ଚନ୍ଦନ ପ୍ରଭୃତି) ଯୋଗ ଦେବାରେ ବିଳମ୍ବ ହେବାରୁ ପ୍ରାୟ ୧୫୦ ବର୍ଷ ତଳେ କୁଣ୍ଢେଇବେଣ୍ଟ ସାହିର ଲବଣିଖିଆ ଛକଠାରେ ଏକ ଆସ୍ଥାନ ମନ୍ଦିର ପ୍ରତିଷ୍ଠା କରାଯାଇଛି ଏବଂ ଚନ୍ଦନ ସମୟରେ ନୀଳକଣ୍ଠଙ୍କ ଚଳନ୍ତି ପ୍ରତିମା ୨୧ ଦିନ ଏଠାରେ ଅବସ୍ଥାନ କରନ୍ତି । ଲବଣୀଖିଆ ମୂଳମନ୍ଦିର ପୂର୍ବରୁ ମା' ରାମଚଣ୍ଡୀ ପାଇଁ ନିର୍ମାଣ କରାଯାଇଥିଲା ଏବଂ ଗଜପତିଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଛି । ଖୁଣ୍ଟିଆ ସେବକ ମଧ୍ୟ ଏହାର ସେବା ଦାୟିତ୍ୱରେ ଅଛନ୍ତି । ଏହି ମନ୍ଦିରର ପରିଚାଳନା ଦାୟିତ୍ୱରେ କୁଣ୍ଢେଇବେଣ୍ଟ ସାହି ବ୍ରାହ୍ମଣ ମହାଜନ ସଭା । ମୁଖ୍ୟ ମନ୍ଦିରର କୌଣସି ଭୂ-ସମ୍ପତ୍ତି ନାହିଁ ବୋଲି ଖୁଣ୍ଟିଆ ସେବକ କହନ୍ତି । ଲବଣୀଖିଆ ମନ୍ଦିରର ସାମାନ୍ୟ ଭୂ-ସମ୍ପତ୍ତି ଥିଲା କିନ୍ତୁ ବର୍ତ୍ତମାନ ଏହାର ଆୟ ପ୍ରଜାମାନଙ୍କଠାରୁ ଆସୁ ନାହିଁ । ମନ୍ଦିରର ଥିବା ଦଶଟି ଦୋକାନ ଘରର ଭଡ଼ା ଆୟରୁ ଏହି ମନ୍ଦିରର ରକ୍ଷଣାବେକ୍ଷଣ ଏବଂ ପର୍ବପର୍ବାଣିର ଖର୍ଚ୍ଚ ଭରଣା କରାଯାଉଛି । ମୁଖ୍ୟ ପର୍ବ ଚନ୍ଦନ, ଜାଗର, ଶୀତଳଷଷ୍ଠୀ ଏବଂ ଦୋଳଯାତ୍ରା ଉଭୟ ମନ୍ଦିରର ସମସ୍ତ ଖର୍ଚ୍ଚ, ଏହାଦ୍ୱାରା କରାଯାଉଛି । ମୂଳମନ୍ଦିରର ଏକମାତ୍ର ଆୟର ପନ୍ଥା, ବଦାନ୍ୟ ଭକ୍ତମାନଙ୍କର ଦାନ । ବର୍ତ୍ତମାନ ସୁଦ୍ଧା ମନ୍ଦିର ଦୁଇଟି ଦେବୋତ୍ତର ବିଭାଗ ଅଧୀନକୁ ଯାଇନାହିଁ । ମନ୍ଦିର ନିକଟରେ ଅନ୍ୟତମ ଶ୍ରେଷ୍ଠ ତୀର୍ଥ ପୁଷ୍କରିଣୀ ଇନ୍ଦ୍ରଦ୍ୟୁମ୍ନ ଅବସ୍ଥିତ । ମନ୍ଦିର କାର୍ଯ୍ୟରେ ନିୟୋଜିତ ଶ୍ରମିକମାନେ ଏହି ପୁଷ୍କରିଣୀରେ କୂର୍ମ ହୋଇ ରହିଛନ୍ତି ବୋଲି କିମ୍ବଦନ୍ତୀ ଅଛି ।

ମୁଖ୍ୟମନ୍ଦିରରେ ବଲ୍ଲଭ ଭୋଗ ଏବଂ ସାମାନ୍ୟ ଅନ୍ନଭୋଗ ହେଉଥିବା ବେଳେ ଲବଣିଖିଆ ମନ୍ଦିରରେ କେବଳ ସାମାନ୍ୟ ଅନ୍ନଭୋଗ ହେଉଛି । ମୁଖ୍ୟମନ୍ଦିରରେ ବଡ଼ସିଂହାର ସମୟରେ ପଣାଭୋଗ ହୁଏ କିନ୍ତୁ ଲବଣୀଖିଆ ମନ୍ଦିର ଅପରାହ୍ନରେ ଭୋଗ ବା ଦର୍ଶନ ପାଇଁ ଖୋଲାଯିବାର ବ୍ୟବସ୍ଥା ନାହିଁ । ଦୋଳଯାତ୍ରା, ଜାଗର, ଅଗ୍ନ୍ୟୁତ୍ସବ, ପର୍ବପର୍ବାଣି ଖର୍ଚ୍ଚ କୁଣ୍ଢେଇବେଣ୍ଟ ସାହି ବ୍ରାହ୍ମଣମାନେ ବହନ କରିଥାନ୍ତି । ଲବଣିଖିଆ ମନ୍ଦିରରେ ବିମାନ ଓ ବୃଷଭ ରଖାଯାଇଛି ।

ମନ୍ଦିର ସହ ଏହି ପଞ୍ଚଦେବମାନଙ୍କର ନୀତି ସମ୍ପର୍କରୁ ଏହି ସମସ୍ତ ମନ୍ଦିରର ଚଳନ୍ତି ପ୍ରତିମାମାନେ ଶ୍ରୀମନ୍ଦିରର ଦକ୍ଷିଣ ଘରେ ରହନ୍ତି ଏବଂ ସେଠାରେ ପ୍ରତ୍ୟହ ସେମାନଙ୍କର ସାମାନ୍ୟ ପୂଜା କରାଯାଇଥାଏ । ଚନ୍ଦନ, ଜଳଶଇ, ଶିବବିବାହ, ଶୀତଳଷଷ୍ଠୀ, ଅଗ୍ନ୍ୟୁତ୍ସବ, ଦୋଳଯାତ୍ରା ଓ ଅନ୍ୟାନ୍ୟ ଉତ୍ସବମାନଙ୍କରେ ଚଳନ୍ତି ପ୍ରତିମାମାନେ ନିଜ ନିଜର ଆସ୍ଥାନମାନଙ୍କୁ ନିଆଯାଆନ୍ତି ଏବଂ ଉତ୍ସବପରେ ପୁନର୍ବାର ଦକ୍ଷିଣ ଘରକୁ ପ୍ରତ୍ୟାବର୍ତ୍ତନ କରନ୍ତି । କେବଳ ଶ୍ରୀଲୋକନାଥ, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଭଣ୍ଡାର ରକ୍ଷକ ଥିବାରୁ, ଚଳନ୍ତି ପ୍ରତିମା ପ୍ରତିଦିନ ରାତ୍ରିରେ ଶ୍ରୀମନ୍ଦିରରେ ରହନ୍ତି ଏବଂ ପ୍ରତ୍ୟୁଷରୁ ପୁନର୍ବାର ନିଜ ମନ୍ଦିରକୁ ଯାଇ ସନ୍ଧ୍ୟାରେ ଶ୍ରୀମନ୍ଦିରରେ ପହଞ୍ଚନ୍ତି । ପୁରୀ ବା ଶଙ୍ଖକ୍ଷେତ୍ରରେ ଏମାନଙ୍କର ସ୍ଥାନ କେବେ ଏବଂ କିଭଳି ନିର୍ଣ୍ଣିତ ହୋଇଛି ନିର୍ଦ୍ଦିଷ୍ଟ ପ୍ରମାଣ ବର୍ତ୍ତମାନ ପର୍ଯ୍ୟନ୍ତ ନ ମିଳିଥିବାରୁ ସେ ବିଷୟରେ ସବିଶେଷ ଗବେଷଣାତ୍ମକ କାର୍ଯ୍ୟକ୍ରମର ଆବଶ୍ୟକତା ନିଶ୍ଚୟ ରହିଛି ।

ଶ୍ରୀମନ୍ଦିର ପୁରୋହିତ
ମରିଚିକୋଟଗଳି, ପୁରୀ

# ଶିବ - ଅର୍ଦ୍ଧନାରୀଶ୍ୱର

ଡା. ଗୌରୀଶଙ୍କର ତ୍ରିପାଠୀ

ମନୁଷ୍ୟର ଚିତ୍ତ ଯେତେବେଳେ ନିର୍ମଳ ପ୍ରଶାନ୍ତ ସୁସଂସ୍କୃତ ଏବଂ ତତ୍ତ୍ୱ ଜ୍ଞାନାଲୋକିତ ହୋଇଥାଏ, ସେ ସମ୍ପୂର୍ଣ୍ଣ ରୂପେ ବାହ୍ୟ ଦୃଷ୍ଟିରେ ଯେତେ ବି ବୈଷମ୍ୟ ସମାକୂଳ ତରଙ୍ଗ ବିକ୍ଷୁବ୍ଧ ସଂଘର୍ଷମୟ ଓ ପରିବର୍ତ୍ତନଶୀଳ ପ୍ରତୀୟମାନ ହେଲେ ମଧ୍ୟ ନିତ୍ୟ ଆତ୍ମସମାହିତ ସତ୍‌ଚିତ୍ ଆନନ୍ଦଧନ ପରମପୁରୁଷଙ୍କ ଆଲିଙ୍ଗନ ଦ୍ୱାରା ସ୍ଥିତ ଏବଂ ଆବଦ୍ଧ । ମଣିଷକୁ ସେତେବେଳେ ଦର୍ଶନ ମିଳେ ଜଡ଼ ଭିତରେ ଚେତନାର ବିଳାସ, ବହୁ ଭିତରେ ଏକର ପ୍ରକାଶ, ସୀମା ଭିତରେ ଅସୀମର ଖେଳ, ସଂଘର୍ଷ ମଧ୍ୟରେ ଆନନ୍ଦମୟ ଲୀଳା, ଅନିତ୍ୟ ଭିତରେ ନିତ୍ୟର ଆତ୍ମରତି । ସେ ନିଜ ସମ୍ମୁଖରେ ଦେଖେ, ଜଡ଼ ଜଗତରେ ଅନେକ ପ୍ରକାର ବିଚିତ୍ର ଶକ୍ତିର ତାଣ୍ଡବନୃତ୍ୟ ଓ ଆତ୍ମଘାତୀ ସଂଗ୍ରାମ, ଅନେକ ପ୍ରକାର ସୃଷ୍ଟି, ଅନେକ ପ୍ରକାର ସଂହାର ଲୀଳା, କେତେ ପରଘାତୀ ଓ ଆତ୍ମଘାତୀ ସଂଗ୍ରାମ । କେତେ ଆସୁରିକ ପାଶବିକ ଶକ୍ତିର ସାମୟିକ ବୀରଦର୍ପ ତଥା ଆତ୍ମପ୍ରତିଷ୍ଠାର ପ୍ରଚେଷ୍ଟା ଏବଂ କାଳକ୍ରମେ ଏସବୁର ବିଲୟ ଓ ମୃତ୍ୟୁ । ଏଇ କ୍ଷଣଭଙ୍ଗୁର ସଂସାରରେ କ୍ଷଣିକ ଦୁଃଖର ଉଲ୍ଲାସ ଓ କ୍ଷଣିକ ସୁଖର ଆର୍ତ୍ତନାଦ, ହିଂସା-ଘୃଣା-ଭୟ-ବିଦ୍ୱେଷ-ଲୋଭ-ମୋହ-ମଦ ମାତ୍ସର୍ଯ୍ୟାଦି ତା ଦୃଷ୍ଟିରେ ପଡ଼େନା । ଦିବ୍ୟଜ୍ଞାନ ସଂପନ୍ନ ମଣିଷର ଅନ୍ତରାତ୍ମା ଦେଖେ ଏସବୁ ଭିତରେ ସେଇ ଏକ ସତ୍‌ଚିତାନନ୍ଦମୟ ମହାଶକ୍ତିର ବିଚିତ୍ର ବିଳାସ ।

ଜୀବଜଗତରେ ଯେତେ ପ୍ରକାର ଶକ୍ତି ସହିତ ମଣିଷର ପରିଚୟ ସେସବୁ ଶକ୍ତି ଭିତରେ ଅନ୍ତର୍ଦ୍ଦେଶୀ ମଣିଷର ଏକ ହିଁ ମହାଶକ୍ତି ଆତ୍ମପ୍ରକାଶ ଦର୍ଶନ କରେ ଏବଂ ସେହି ମହାଶକ୍ତି ହିଁ ଚୈତନ୍ୟମୟୀ, ପ୍ରେମମୟୀ, ଆନନ୍ଦମୟୀ ଏବଂ କଲ୍ୟାଣମୟୀ । ସେ ଜାଣିପାରେ ଯେ ସେ ପରମଶକ୍ତି ଏକ ଅଦ୍ୱିତୀୟ ସଚ୍ଚିଦ୍‌ଆନନ୍ଦ ଧନ ପରମାତ୍ମାର ଅଭିନ୍ନା-ପରମାତ୍ମାଙ୍କ ସତ୍ତା ହିଁ ତାଙ୍କର ସତ୍ତା, ପରମାତ୍ମାଙ୍କ ଚୈତନ୍ୟରେ ସେ ଉଦ୍‌ଭାସିତା - ପରମାତ୍ମାଙ୍କ ଆନନ୍ଦରେ ସେ ଆନନ୍ଦମୟୀ - ପରମାତ୍ମାଙ୍କ ଏହି ମହାଶକ୍ତି ବିଚିତ୍ର ନାମ, ବିଚିତ୍ର ରୂପରେ ଗନ୍ଧ-ସ୍ପର୍ଶ-ଶବ୍ଦ ବିଚିତ୍ର ଭାବରେ ଉପାଧି ବିଭୂଷିତ ହୋଇ ଦେଶକାଳ ପାତ୍ରାନୁସାରେ ଲୀଳାୟିତ ହୋଇ ପ୍ରକାଶିତ ହୁଏ । ଅଦାନି ଅନନ୍ତ କାଳରୁ ଦେଶ କାଳାତୀତ ଅସୀମ ଚୈତନ୍ୟମୟ ମରମାତ୍ମା । ପରମ ପୁରୁଷର ବକ୍ଷସ୍ଥଳ ହିଁ ତାଙ୍କର ଏକ ମାତ୍ର ସ୍ଥାନ - ଏକମାତ୍ର ଆଶ୍ରୟସ୍ଥଳ । ପରମପୁରୁଷଙ୍କ ଅନନ୍ତତ୍ୱକୁ ବିଚିତ୍ର ଭାବରେ ଲୀଳାୟିତ କରିବା ହିଁ ତାଙ୍କର ନିତ୍ୟ-ସେବା । ମହାଶକ୍ତି, ବିରଚିତ ପରମପୁରୁଷଙ୍କର ଏହି ଲୀଳାୟମାନ ରୂପ ହିଁ ଏହି ବିଶ୍ୱ-ସଂସାର ତତ୍ତ୍ୱଦର୍ଶୀ ମଣିଷ ବିଶ୍ୱଜଗତରେ ସତ୍‌ଚିତ୍ ଆନନ୍ଦଧନ ପରମାତ୍ମାଙ୍କ ଲୀଳାୟମାନ ରୂପର ପ୍ରତ୍ୟକ୍ଷ-ଦର୍ଶନ କରେ ।

ଏହି ଦିବ୍ୟ ଦର୍ଶନ-ଏହି ତତ୍ତ୍ୱାନୁଭୂତି-ଭାରତୀୟ ସଂସ୍କୃତିର ପ୍ରାଣ । ପ୍ରାଗୈତିହାସିକ କାଳରୁ ଆଜିଯାଏ ଅସଂଖ୍ୟ ଦିବ୍ୟଦର୍ଶନ ସମ୍ପନ୍ନ ଶୁଦ୍ଧାତ୍ମା ମହାନ୍ ପୁରୁଷ ଏବଂ ମହୀୟସୀ ମହିଳା ଭାରତରେ ଆର୍ବିଭୂତ ହୋଇଛନ୍ତି । ସେମାନେ ସ୍ୱଜୀବଦ୍ଦଶାରେ ଜନସାଧାରଣଙ୍କ ସମ୍ମୁଖରେ ସ୍ୱଦର୍ଶନ ସମ୍ବନ୍ଧୀୟ ଭାଷା ପ୍ରଚାର କରିଛନ୍ତି ।

ଭାରତୀୟ ଜନସାଧାରଣଙ୍କ ହୃଦୟରେ ଅନୁପ୍ରବିଷ୍ଟ ହୋଇ ସେମାନଙ୍କ ଜୀବନ ଧାରାକୁ ଏକ ମହାନ୍ ଆଧାତ୍ମିକ ଆଦର୍ଶ ମାର୍ଗରେ ପରିଚାଳିତ କରନ୍ତି । ଭାରତରେ ଦର୍ଶନ ଶାସ୍ତ୍ର ଓ ମୋକ୍ଷ ଶାସ୍ତ୍ର ସହିତ ଭାରତୀୟ କାବ୍ୟ, ସାହିତ୍ୟ, ଶିଳ୍ପକଳା, ଧର୍ମବିଧାନ, ସମାଜ ବିଧାନ, ରାଷ୍ଟ୍ରବିଧାନ, ବ୍ରତ, ନିୟମ ମୂର୍ତ୍ତିପୂଜା ଇତ୍ୟାଦି ଆନନ୍ଦ ଉଲ୍ଲାସ ଭାରତୀୟ ଜୀବନର ସବୁ ବିଭାଗ ସ୍ମରଣାତୀତ କାଳରୁ ମହାମାନବମାନଙ୍କ ଦିବ୍ୟଦର୍ଶନ ଦ୍ୱାରା ଅନୁପ୍ରାଣିତ ।

ଅତି ପ୍ରାଚୀନ ଯୁଗରୁ ଏ ଦେଶରେ ଶିଳ୍ପକଳାର ବିକାଶ ହୋଇଯାଇଥିଲା । ଶିଳ୍ପୀବୃନ୍ଦ, ଋଷିମୁନି, ଭକ୍ତ, ଜ୍ଞାନୀ ଓ ମହାଯୋଗୀମାନଙ୍କର ତାତ୍ତ୍ୱିକ ଅନୁଭୂତିକୁ ରୂପାୟିତ କରିବା ପାଇଁ ପ୍ରୟାସ କରୁଥିଲେ । କଠୋର ପଥରକୁ ମଧ୍ୟ ସେମାନେ ଜୀବନ ଦାନ କରିପାରୁଥିଲେ ଏବଂ ତାହାକୁ ଚୈତନ୍ୟମୟ, ପ୍ରାଣମୟ ଏବଂ ମହାଭାବମୟ କରିପାରୁଥିଲେ, ବସ୍ତୁତଃ ପଥର ଭିତରେ ଯେଉଁ ପ୍ରାଣସ୍ପନ୍ଦନ, ଯେଉଁ ଚୈତନ୍ୟ ବିଳାସ, ଯେଉଁ ଭାବମାଧୁର୍ଯ୍ୟ ଅସଂସ୍କୃତ ଦୃଷ୍ଟିକୋଣରୁ ଗୁପ୍ତ ଭାବରେ ବିଦ୍ୟମାନ ଥାଏ, ତାହାକୁ ସର୍ବସାଧାରଣ ସମ୍ମୁଖରେ ପ୍ରକଟ କରିବା ପାଇଁ ସୂକ୍ଷ୍ମଦର୍ଶୀ ଶିଳ୍ପୀମାନେ ନିଜର ଅପୂର୍ବ

ଓ ଅଦ୍ଭୁତ ନୈପୁଣ୍ୟର ପରିଚୟ ଦେଉଥିଲେ । ଭାରତୀୟ ଶିଳ୍ପୀମାନେ ନିଜର ଅପୂର୍ବ ଓ ଅଦ୍ଭୁତ ନୈପୁଣ୍ୟର ପରିଚୟ ମଧ ଦେଉଥିଲେ । ଭାରତୀୟ ଶିଳ୍ପକଳା, ଜଡ଼ଚେତନ ମଧରେ, ସମୀମ ଅସୀମ ମଧରେ, ଅନିତ୍ୟ ନିତ୍ୟ ମଧରେ, ଇନ୍ଦ୍ରିୟ ମୋଚନ ଓ ଅତୀନ୍ଦ୍ରିୟ ମଧରେ, ବିଭିନ୍ନତା ଓ ଏକତା ମଧରେ ଅତ୍ୟାଶ୍ଚର୍ଯ୍ୟମୟ ସେତୁବନ୍ଧର ରଚନା କରିଛି । ଏହି ଶିଳ୍ପର ପ୍ରଭାବରେ ସମୀମ ଅନିତ୍ୟ ସ୍ଥୂଳେନ୍ଦ୍ରିୟଗୋଚର ପ୍ରାକୃତ ଜଡ଼ ପଦାର୍ଥ ଅସୀମ ନିତ୍ୟ ଅତୀନ୍ଦ୍ରିୟ ଅପ୍ରାକୃତ ସଚ୍ଚିତ୍‌ପ୍ରେମାନନ୍ଦ ସ୍ୱରୂପ ପ୍ରତିମାରୂପ ଆସନ ପ୍ରାପ୍ତ କରେ । ଏହା ତତ୍ତ୍ୱାନୁସନ୍ଧିତ୍ସୁ ସାଧକର ଧାନର ବସ୍ତୁ । ମହାଜ୍ଞାନୀ ମହାଭକ୍ତ ମହାଯୋଗୀ, ମହାପୁରୁଷଗଣ ଆତ୍ମସମାହିତ ଚିତ୍ତରେ ଯେଉଁ ପରମ ତତ୍ତ୍ୱର ଅତୀନ୍ଦ୍ରିୟ ସାକ୍ଷାତକାର ପ୍ରାପ୍ତ କରନ୍ତି, ଜଡ଼ ଭିତରେ ସେହି ତତ୍ତ୍ୱର ଅଭାସକୁ ରୂପାୟିତ କରି ଲୋକଲୋଚନରେ ଉପସ୍ଥାପିତ କରନ୍ତି, ସେଇଠି ବହିର୍ମୁଖ ଜନତାର ମନବୁଦ୍ଧି ହୃଦୟର ତତ୍ତ୍ୱକୁ ଆକୃଷ୍ଟ କରାଇବା ଭାରତୀୟ ଶିଳ୍ପକଳାର ମୁଖ୍ୟ ଆଦର୍ଶ ।

ଭାରତୀୟ ଶିଳ୍ପ ସାଧନାରେ ପ୍ରଧାନ ବିଷୟବସ୍ତୁ ହେଉଛି - ପରମପୁରୁଷ ପରମାତ୍ମାଙ୍କ ସହିତ ଚିରପ୍ରକୃତିର ନିତ୍ୟ ଯୋଗ, ନିତ୍ୟ ମିଳନ, ନିତ୍ୟ ଅଙ୍ଗାଙ୍ଗୀଭାବ, ନିତ୍ୟ ଭେଦାଭାବ ସମ୍ବନ୍ଧ । ପରମପୁରୁଷକୁ ଛାଡ଼ି ଦେଲେ ବିଶ୍ୱପ୍ରକୃତିର କୌଣସି ସତ୍ତା ରହେନା - ବିଶ୍ୱପ୍ରକୃତିକୁ ଛାଡ଼ି ଦେଲେ ପରମ ପୁରୁଷଙ୍କ ବାହ୍ୟ ଆତ୍ମ-ପ୍ରକାଶ ରହେନା, ଆତ୍ମ ପରିଚୟ ମଧ ରହେନା - ଅନନ୍ତ ସତ୍ତା, ଅନନ୍ତ ଜ୍ଞାନ, ଅନନ୍ତ ଶକ୍ତି, ଅନନ୍ତ-ପ୍ରେମ, ଅନନ୍ତ-ବୀର୍ଯ୍ୟ, ଅନନ୍ତ-ସୌନ୍ଦର୍ଯ୍ୟ ଅନନ୍ତ-ମାଧୁର୍ଯ୍ୟର ନିତ୍ୟ ଆଧାର ଏକ ଅଦ୍ୱିତୀୟ ପରମ-ପୁରୁଷ । ସବୁ ତାଙ୍କର ସ୍ୱରୂପରେ ଏକରେ ଅଖଣ୍ଡ ବିଶ୍ୱ ପ୍ରକୃତି ଭିତରେ ଆତ୍ମପ୍ରକାଶ କରି ସର୍ବୈଶ୍ୱର୍ଯ୍ୟ ସମ୍ପନ୍ନ ଭଗବାନ୍, ସର୍ବଶକ୍ତିମାନ୍, ପରମେଶ୍ୱର, ସର୍ବାନ୍ତର୍ଯ୍ୟାମୀ ପରମାତ୍ମା ସର୍ବକଲ୍ୟାଣମୟ ମହାଯୋଗେଶ୍ୱର ଶିବ, ନିଖିଳ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ସିନ୍ଧୁ ଲୀଳାମୟ ପରମ ଦେବତା ଅଟନ୍ତି । ବିଶ୍ୱପ୍ରକୃତି ଭିତରେ ଏଇ ମାଧୁର୍ଯ୍ୟ ରସର ବିଚିତ୍ରଲୀଳା । ମାଧୁର୍ଯ୍ୟରୁ ବିଭତ୍ସ ପର୍ଯ୍ୟନ୍ତ ଏପରି କୌଣସି ରସ ନାହିଁ, ଏପରି କୌଣସି ଭାବ ନାହିଁ ଯାହାର ପ୍ରକାଶ ବିଶ୍ୱ ପ୍ରକୃତି ମଧରେ ନହୋଇପାରେ, ଏହି କାରଣରୁ ସେ ରସରାଜ, ଅଖିଳ ରସାମୃତ ସିନ୍ଧୁ - 'ରସୋ ବୈସଃ' ।

ବିଶ୍ୱ ପ୍ରକୃତିର ଖେଳ ଭିତରେ ଜୀବର ଦୁଃଖ-ଦୈନ୍ୟ ଅଛି, ଅଭାବ-ଅଭିଯୋଗ ଅଛି, ଏସବୁ ଭିତରେ ହିଁ ସେ କଲ୍ୟାଣମୟ, ପ୍ରେମମୟ, ପତିତବନ୍ଧୁ ଉପରେ ହିଁ ଆତ୍ମ ପ୍ରକାଶ କରନ୍ତି ।

ବିଶ୍ୱ-ପ୍ରପଞ୍ଚ ମଧରେ ତାଙ୍କର ଅଖଣ୍ଡ ସତ୍ତା, ଅସଂଖ୍ୟ ଖଣ୍ଡ ସତ୍ତା ଅଭିବ୍ୟକ୍ତ ହୁଏ । ତାଙ୍କର ଅଖଣ୍ଡ ଚେତନା ଅସଂଖ୍ୟ ଖଣ୍ଡ ଚେତନା ରୂପରେ ପ୍ରକଟ ହୁଏ । ତାଙ୍କର ଆତ୍ମଭୂତା ପରମାଶକ୍ତି ଅସଂଖ୍ୟ ଜଡ଼, ଶକ୍ତି ଏବଂ ଜୀବଶକ୍ତି ରୂପରେ ଲୀଳାୟିତ ହୁଏ । ପରମ ପୁରୁଷଙ୍କର ଯେତେ ବିଶେଷଣ ଓ ଉପାଧି ଅଛି ସେସବୁ ବିଶ୍ୱ ପ୍ରକୃତିକୁ ସାଥିରେ ଧରି ବିଶ୍ୱ ପ୍ରକୃତି ସହିତ ଯୁକ୍ତ ହୋଇ, ବିଶ୍ୱ ପ୍ରକୃତି ଭିତରେ ଆତ୍ମପ୍ରକାଶ କରେ । ବିଶ୍ୱ ପ୍ରକୃତିକୁ ଛାଡ଼ି ଦେଲେ ସେ ନିର୍ବିଶେଷ, ଚୈତନ୍ୟ ସ୍ୱରୂପ, ଆତ୍ମ ପରିଚୟ ବିହୀନ ସତ୍ତା ମାତ୍ର ଅଟନ୍ତି । ତେଣୁ ତାଙ୍କୁ ସତ୍ କହିବା ଯେଉଁ କଥା-ଅସତ୍ ବା ଶୂନ୍ୟ କହିବା ବି ସେହି କଥା । ତତ୍ତ୍ୱଦର୍ଶୀ ପୁରୁଷ ବିଶ୍ୱରେ ସର୍ବତ୍ର ଦେଖନ୍ତି - 'ଦେବାତ୍ମ ଶକ୍ତି ସ୍ୱଗୁଣୈର୍ନିଗୂଢ଼ାମ୍' - ବିଶ୍ୱକାରିଣୀ, ବିଶ୍ୱବିଳାସିନୀ, ବିଶ୍ୱ ରୂପିଣୀ ମହାଶକ୍ତିଙ୍କୁ ଆଲିଙ୍ଗନ କରି ବିଶ୍ୱାତ୍ମା ସଚ୍ଚିଦାନନ୍ଦ ଧନ ପରମପୁରୁଷ ନିତ୍ୟ ସ୍ୱ ସ୍ୱ ରୂପରେ ବିରାଜମାନ ।

ଭାରତୀୟ ଆଧାତ୍ମ ସାଧନା କ୍ଷେତ୍ରରେ ଯୁଗଳ ମୂର୍ତ୍ତିର ଉପାସନା ଏଇ ଦିବ୍ୟ ଦର୍ଶନ ଉପରେ ପ୍ରତିଷ୍ଠିତ । ଯୁଗଳ ମୂର୍ତ୍ତିର ପୂଜା ଦ୍ୱୈତ ଉପାସନା ନୁହେଁ - ଏହା ଦ୍ୱୈତାଲିଙ୍ଗିତ ଅଦ୍ୱୟ ପରମତତ୍ତ୍ୱର ହିଁ ଅର୍ଚ୍ଚନା - ବିଶ୍ୱପ୍ରକୃତି ଅଦ୍ୱୟ ବ୍ରହ୍ମ-ତତ୍ତ୍ୱରେ ସ୍ୱରୂପତଃ ପୃଥକ ନୁହେଁ - ଏହା ଅବିଦ୍ୟାକଳ୍ପିତ, ମିଥ୍ୟା ମଧ ନୁହେଁ - ଏହା ଅଦ୍ୱୟ ବ୍ରହ୍ମର ଲୀଳାୟିତ ଆତ୍ମପ୍ରକାଶ ମାତ୍ର । ସାଧକମାନେ ବ୍ରହ୍ମର ଯୁଗଳ ମୂର୍ତ୍ତିରେ ଏଇ ମହାସତ୍ୟର ଦର୍ଶନ କରନ୍ତି, ଶିଳ୍ପୀମାନେ କରନ୍ତି ଏହାର ରୂପାୟନ, ବ୍ରହ୍ମ ହିଁ ପୁରୁଷ - ବ୍ରହ୍ମ ହିଁ ପ୍ରକୃତି, ବ୍ରହ୍ମ ନିର୍ଗୁଣ ଏବଂ ସଗୁଣ, ନିର୍ବିଶେଷ ଓ ସବିଶେଷ, ନିଷ୍କ୍ରିୟ ଓ ସକ୍ରିୟ, ଅଚଳ ଓ ସଚଳ, ଅକର୍ମା ଓ ବିଶ୍ୱକର୍ମା ତଥା ଅଭୋକ୍ତା ଓ ସର୍ବଭୁକ୍, ଏହା ଏକ ହୋଇ ବି ଅନେକ ରୂପରେ ପ୍ରକଟ ହୁଏ । ନିତ୍ୟ ଆତ୍ମସମାହିତ ହୋଇ ମଧ ବୈଚିତ୍ରବିଳାସୀ ହୁଏ । ଏହା ଦେଶକାଳାତୀତ ସଚ୍ଚିଦାନନ୍ଦ ଧନ ସ୍ୱରୂପରେ ନିତ୍ୟ ବିରାଜମାନ । ସବୁକାଳରେ, ଅନନ୍ତ ରୂପରେ, ଅନ୍ତ ଭାବରେ ନିଜକୁ ନିଜେ ସମ୍ଭୋଗ କରେ । ନିଜ ସ୍ୱରୂପ ଭୂତ ଐଶ୍ୱର୍ଯ୍ୟ ଏବଂ ମାଧୁର୍ଯ୍ୟ ଆସ୍ୱାଦନ କରେ, ଏହି ମହାସତ୍ୟ ବ୍ରହ୍ମ ବିଚିତ୍ର ରୂପରେ ପରିକଳ୍ପିତ ଯୁଗଳ ମୂର୍ତ୍ତି ମଧରେ ରୂପାୟିତ ହୁଏ । ମହାଯୋଗୀ, ଜ୍ଞାନୀ ଏବଂ ଭକ୍ତମାନେ ଏହି ଦ୍ୱିବିଧ ଭାବରେ ବ୍ରହ୍ମର ଦର୍ଶନ କରନ୍ତି - ଆରାଧନା କରନ୍ତି - ଆସ୍ୱାଦନ କରନ୍ତି । ସେମାନେ ଚିତ୍ତେନ୍ଦ୍ରିୟକୁ ନିରୁଦ୍ଧ କରି ଗମ୍ଭୀର ସମାଧିରେ ବ୍ରହ୍ମ ନିର୍ଗୁଣ ନିର୍ବିଶେଷ ନିଷ୍କ୍ରିୟ ଅବାଙ୍ମାନସଗୋଚର ସତ୍‌ଚିତ୍ ଆନନ୍ଦ ଧନ ସ୍ୱରୂପର ଆସ୍ୱାଦନ କରନ୍ତି ତଥା ଆଖି ଖୋଲି କରି ଚିତ୍ତେନ୍ଦ୍ରିୟକୁ କ୍ରିୟାଶୀଳ କରି ବିଶ୍ୱପ୍ରପଞ୍ଚ ମଧରେ ସେ ସର୍ବଭାବାତୀତ ବ୍ରହ୍ମକୁ ହିଁ ବିଚିତ୍ର ରୂପ, ବିଚିତ୍ର ଭାବ, ବିଚିତ୍ର ଆତ୍ମପ୍ରକାଶ, ବିଚିତ୍ର ଲୀଳା ଖେଳାର ଦର୍ଶନ ଆସ୍ୱାଦନ କରନ୍ତି, ଏହି ଦିବ୍ୟ ଭାବ ଭିତରେ ହିଁ ବ୍ରହ୍ମଙ୍କ ପୂର୍ଣ୍ଣ ପ୍ରକାଶ ହୁଏ । ଏହି ଦିବ୍ୟ ଭାବରେ ଅଦ୍ୱୟ ଆସ୍ୱାଦନ ହିଁ ଯୁଗଳ ଉପାସନାର ତାତ୍ପର୍ଯ୍ୟ ।

ଭାରତୀୟ ଶିଳ୍ପ ସାଧନାରେ ବ୍ରହ୍ମକୁ ସର୍ବଭାବାତୀତ ସର୍ବ ଦ୍ୱନ୍ଦ୍ୱାତୀତ ନିଷ୍କ୍ରିୟ ସ୍ୱରୂପ ପରମ ପୁରୁଷ ରୂପେ ଏବଂ ବିଚିତ୍ରଭାବ ବିଳାସୀ ଅନନ୍ତ ଦ୍ୱନ୍ଦ୍ୱମୟ ସକ୍ରିୟ ସ୍ୱରୂପର ପରମାନାରୀ ରୂପରେ ଚିତ୍ରିତ କରାଯାଏ, ଏହି ସକ୍ରିୟ ସ୍ୱରୂପରେ ସେମାନେ ବିଶ୍ୱଜନନୀ, ବିଶ୍ୱବିଧାତ୍ରୀ, ବିଶ୍ୱରୂପିଣୀ, ବିଶ୍ୱ ସଂହର୍ତ୍ରୀ, ବିଚିତ୍ର ରସବିଳାସିନୀ ବିଚିତ୍ର ଦ୍ୱନ୍ଦ୍ୱମୟୀ ମହାଶକ୍ତି ପରମାପ୍ରକୃତି ଅଟନ୍ତି ।

ଏହି ହେତୁ ଅଦ୍ୱିତୀୟା ନାରୀ ରୂପରେ କଳ୍ପିତ ହୁଅନ୍ତି । କିନ୍ତୁ ତାଙ୍କର ନିର୍ଦ୍ୱନ୍ଦ୍ୱ ନିଷ୍କ୍ରିୟ ସ୍ୱସମାହିତ ସଚ୍ଚିଦାନନ୍ଦ ସ୍ୱରୂପ ହିଁ ଏହି ସକ୍ରିୟ ସ୍ୱରୂପର ପ୍ରାଣ ଆତ୍ମା, ଅନ୍ତର୍ଯ୍ୟାମୀ, ଭର୍ତ୍ତା ଏବଂ ଆଶ୍ରୟ ମଧ, ଏହି କାରଣରୁ ଅଦ୍ୱୟ ପୁରୁଷ ଭାବରେ ତାଙ୍କର କଳ୍ପନା କରାଯାଏ । ଏହା କହିବା ନିରର୍ଥକ ମନେହୁଏ ଯେ ନାରୀ-ପୁରୁଷ ଭେଦ କେବଳ ଦେହେନ୍ଦ୍ରିୟ ସ୍ତର ଉପରେ ଥାଏ । ଚୈତନ୍ୟ ସ୍ତର ଉପରେ କୌଣସି ନାରୀ-ପୁରୁଷ-ଭେଦ ନାହିଁ । ତଥାପି ଚୈତନ୍ୟ-ତତ୍ତ୍ୱର ଦେହେନ୍ଦ୍ରିୟ ସ୍ତର ଉପରେ ରୂପାୟିତ କରିବା ପାଇଁ ନାରୀ-ପୁରୁଷ-ଭାବର କଳ୍ପନା ଆବଶ୍ୟକ ହୋଇପଡ଼େ । ଏଇ କ୍ଷେତ୍ରରେ ବ୍ରହ୍ମ ହିଁ ପୁରୁଷ, ବ୍ରହ୍ମ ହିଁ ନାରୀ, ବ୍ରହ୍ମଙ୍କ ନିଷ୍କ୍ରିୟ, ନିଶ୍ଚଳ, ଆତ୍ମ ସମାହିତ ଭାବ ତାଙ୍କର ପୁରୁଷ ଭାବ ଏବଂ ସକ୍ରିୟ, ସଚଳ, ସୃଷ୍ଟିସ୍ଥିତି, ପ୍ରଳୟକାରୀ, ଲୀଳାଚଞ୍ଚଳ ଭାବ ତାଙ୍କର ନାରୀ ଭାବ, ଶକ୍ତି ରୂପରେ ସେ ନାରୀ ଅଟନ୍ତି । ଶକ୍ତିର ଆଧାର ଏବଂ ଆଶ୍ରୟ ରୂପରେ ସେ ପୁରୁଷ, ବୈଚିତ୍ର୍ୟ ବିଳାସୀ ରୂପରେ ସେ ନାରୀ-ସ୍ୱୀୟ ଅପ୍ରଚ୍ୟୁତ ସ୍ୱରୂପରେ ସେ ପୁରୁଷ । ତାଙ୍କର ସଦ୍‌ଚିଦ୍ ଆନନ୍ଦ ଧନ ନିତ୍ୟ ସ୍ୱପ୍ରକାଶ ସ୍ୱରୂପ ସବୁ ବୈଚିତ୍ର୍ୟ ସର୍ବାଗମରେ ଅନୁସ୍ୟୁତ । ସର୍ବ ବୈଚିତ୍ର୍ୟର ଅନ୍ତର୍ଯ୍ୟାମୀ ନିୟନ୍ତା ଏବଂ ସଭୋକ୍ତା -

**ତସ୍ୟ-ଭାସା-ସର୍ବମିଦମ୍ ବିଭାତି -**

ପୁଣି ନିଜର ବିଚିତ୍ର ରୂପକୁ ଅତିକ୍ରମ କରି ମଧ ସେ ଆତ୍ମସ୍ୱରୂପରେ ବିରାଜମାନ, ବୈଚିତ୍ର୍ୟବିଳାସିନୀ ନାରୀ-ମୂର୍ତ୍ତି ନିଜର ସଦୈକରୂପ ସ୍ୱୟଂ ପୂର୍ଣ୍ଣ ପୁରୁଷ ମୂର୍ତ୍ତିର ସେବା କରନ୍ତି । ନିଜର ପୁରୁଷ-ମୂର୍ତ୍ତିର ଅନ୍ତର୍ନିହିତ ଅନନ୍ତ ସଂପତ୍ତି ବାହାର କରି ତାକୁ ଅନନ୍ତ ଭାବରେ ନିଜେ ସଂଭୋଗ୍ୟ ରୂପରେ ଉପସ୍ଥିତ କରନ୍ତି ।

ଅଦ୍ୱୟ ବ୍ରହ୍ମ ତତ୍ତ୍ୱର ଏ ଯୁଗଳଭାବ ଭାରତର ଆଧାତ୍ମନିଷ୍ଠ ଶିଳ୍ପ ସାଧନାରେ ନାନାପ୍ରକାରେ ରୂପାୟିତ ହୋଇଛି । ଶିବଙ୍କର ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି ତାହାର ଏକ ରୂପ । ଶିବ ବ୍ରହ୍ମର ହିଁ ନାମାନ୍ତର । ଅତି ପ୍ରାଚୀନ ଯୁଗରୁ ତତ୍ତ୍ୱଜ୍ଞାନୀ ମହାଯୋଗୀଗଣ ବିଶ୍ୱର ଚରମ ତତ୍ତ୍ୱକୁ ଶିବନାମରେ ଉପାସନା କରି ଆସିଛନ୍ତି ।

ଶିବଙ୍କ ଅର୍ଦ୍ଧ ଅଂଗ ପୁରୁଷ ଓ ଅର୍ଦ୍ଧଅଂଗ ନାରୀ ବୋଲି ଚିତ୍ରିତ କରାଯାଇଛି, ବାସ୍ତବିକ୍ ଏହାର ତାତ୍ପର୍ଯ୍ୟ ଏହା କଦାପି ନୁହେଁ । ତାଙ୍କର ପୁରୁଷ ଭାବ ଓ ନାରୀ ଭାବ, ନିଷ୍କ୍ରିୟ ଭାବ ଓ ସକ୍ରିୟ ଭାବ, ଅଦ୍ୱୈତ ଭାବ ଓ ଦ୍ୱୈତ ଭାବ ଅନାଦି ଅନନ୍ତ କାଳରୁ ପରସ୍ପରକୁ ଆଲିଙ୍ଗନ କରି ବିଦ୍ୟମାନ । ମହାଜ୍ଞାନୀ ଓ ମହାଯୋଗୀ-ଗଣ ଏହି ଦୁଇଭାବକୁ ଆରାଧନା କରି ଆସ୍ୱାଦନ କରିଛନ୍ତି, ଏଥିରେ ନିବୃତ୍ତି ମାର୍ଗ ଓ ପ୍ରବୃତ୍ତିମାର୍ଗର ସମନ୍ୱୟ ସାଧନ କରାଯାଇଛି ।

୮୪୭, କପିଳପ୍ରସାଦ
ସୁନ୍ଦରପଦା, ଭୁବନେଶ୍ୱର-୨

---

# ଅବଳା ନୁହଁଇ ନାରୀ

ଅଧ୍ୟାପକ ବିକ୍ରମ କେଶରୀ ବର୍ମା

ଶକ୍ତିର ଉତ୍ସ ଅଟନ୍ତି ମହାମାୟା ଦୁର୍ଗା
ଶୁମ୍ଭ ନିଶୁମ୍ଭ ଓ ମହିଷାକୁ ମାରିଥିଲେ ଏକା
ରକ୍ଷା କଲେ ଦେବକୁଳ
ମାରିଲେ ଅସୁର ଦଳ
ଧରିତ୍ରୀକୁ ରକ୍ଷା କଲେ
ଜଗତବାସୀଙ୍କ ମନୁ ତୁଟିଲା ଆଶଙ୍କା ।

ପୁରୁଷ ହାରଇ ଯେବେ
ଆସୁରିକ ଶକ୍ତି ହୁଏ ବଳଶାଳୀ
ଧର୍ମର ସୁରକ୍ଷା ପାଇଁ
ନାରୀଶକ୍ତି ହୁଏ ପ୍ରକଟିତ
ଶତସିଂହର ବଳନେଇ ।

ସତୀ ସୀତା ପାଇଁ ସ୍ୱର୍ଣ୍ଣ ଲଙ୍କା
ହୋଇଲା ବିନାଶ
ଦ୍ରୌପଦୀ ଲାଞ୍ଛନା ପାଇଁ
ହେଲା କୁରୁ ବଂଶ ଧ୍ୱଂସ ।

ମହାମାୟା ସଂହାରିଲେ
ଅସୁର କୁଳକୁ
ନାରୀଶକ୍ତି ସଦାବେଳେ
ରକ୍ଷା କରିଥାଏ ଜଗତକୁ ।

ଅବଳା ନୁହଁଇ ନାରୀ
ଶକ୍ତି ସେ ଉତ୍ସ ଅଫୁରନ୍ତ
ରକ୍ଷା କରିଥାଏ ଧରା
ଦେଖାଇ ତା ଶକତି ଅଦ୍ଭୁତ ।

ବିଧାୟକ, ମାହାଙ୍ଗା
ଡି-ଏସ୍.:୧୭/୧, ୟୁନିଟ୍-୪
ଭୁବନେଶ୍ୱର



ଚାମୁଣ୍ଡା, ଧର୍ମଶାଳା,
ଯାଜପୁର, ଦଶମ ଶତାବ୍ଦୀ

# ଓଡ଼ିଶାରେ ଚାମୁଣ୍ଡା ଉପାସନା

ଡଃ ଚନ୍ଦ୍ରଭାନୁ ପଟେଲ

ଚାମୁଣ୍ଡା ଉପାସନା ପ୍ରାଚୀନ କାଳରୁ ଓଡ଼ିଶାରେ ପ୍ରଚଳିତ । ଏହା ଶକ୍ତି ପୂଜା । ପ୍ରଜନନ, ଶତ୍ରୁ ସଂହାର ଓ ଯୁଦ୍ଧଜୟ ଦର୍ଶନ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ଶୈବ-କାପାଳିକ ଧର୍ମ ସହିତ ଚାମୁଣ୍ଡା ପୂଜା ଅତି ଜନପ୍ରିୟ । ଏହାର ନିଜସ୍ୱ ଧର୍ମ ଧାରଣା ନାହିଁ । ତେଣୁ ଅନେକ କାପାଳିକ ଧର୍ମ ଶୈବ ଧର୍ମ ସହିତ ଘନିଷ୍ଠ ଭାବେ ଜଡ଼ିତ । ଏହାର ମୁଖ୍ୟ ଆରାଧ୍ୟ ଦେବତା ହେଲେ ଶିବ-ଭୈରବ । ତାଙ୍କର ଶକ୍ତି ରୂପେ ରୁଦ୍ର ଭୈରବୀ ବା ଚାମୁଣ୍ଡାର ଉତ୍ପତ୍ତି । ସୋମବଂଶୀ ଓ ଭୌମ ଶାସନ କାଳରୁ (ସପ୍ତମରୁ ଦଶମ ଶତାବ୍ଦୀ) ଏହା ଓଡ଼ିଶାରେ ବହୁଳ ଭାବରେ ପ୍ରଚାରିତ ଓ ପ୍ରସାରିତ । ଏହି ସମୟ ମଧ୍ୟରେ ଓଡ଼ିଶା ସଂସ୍କୃତିର ଏକ ସନ୍ଧି ଓ ସମନ୍ୱୟ କାଳ । ତନ୍ତ୍ରଯାନର ପ୍ରସାର ଫଳରେ ଚାମୁଣ୍ଡା ପୂଜା ଶୈବ ତନ୍ତ୍ରର ଏକ ଅବିଚ୍ଛିନ୍ନ ଅଙ୍ଗ ଭାବରେ ପ୍ରସ୍ଫୁଟିତ । ଅଧୁନା ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ପ୍ରାପ୍ତ ଚାମୁଣ୍ଡା ମୂର୍ତ୍ତି ଓ ମନ୍ଦିର, ଚାମୁଣ୍ଡା ଆରାଧନାର ସ୍ୱର ବହନ କରୁଛି ।

ଶିବ ଭୈରବ ଓ ଚାମୁଣ୍ଡା ଉପାସନା ସାଧାରଣତଃ ଦୈହିକ ସୁଖ ବା ମହାସୁଖ ଦର୍ଶନ ଉପରେ ପର୍ଯ୍ୟବସିତ । ସାଧକ ସାଧିକା ଶିବ ଓ ଶକ୍ତି ରୂପେ ନିଜକୁ କାମନା କରି ଦୈହିକ ସମ୍ଭୋଗରେ ସୁଖ ପ୍ରାପ୍ତି ଲାଭ କରନ୍ତି । ଦୈହିକ କ୍ରିୟା ଏହି ସଂପ୍ରଦାୟର ମୁଖ୍ୟ ଆଧାର । ଭୈରବ ଓ ଚାମୁଣ୍ଡା ଉଗ୍ର ବା ପ୍ରଚଣ୍ଡ ଭାବ ପ୍ରକଟ କରନ୍ତି । ଏହି ଦେବୀ ତାନ୍ତ୍ରିକ ଓ ଶାକ୍ତମାନଙ୍କ ଦ୍ୱାରା ପୂଜିତା ।

ଚଣ୍ଡମୁଣ୍ଡ ନିଧନ ପାଇଁ ଅମ୍ବିକାଙ୍କ ଶରମୁନରୁ ଚାମୁଣ୍ଡାର ସୃଷ୍ଟି । ଦେବୀଙ୍କର ଅନେକ ନାମ ବିଭିନ୍ନ ଧର୍ମଗ୍ରନ୍ଥ ଓ ପୁରାଣରେ ବର୍ଣ୍ଣିତ । ସେଥିମଧ୍ୟରୁ ୯ଟି ନାମ ବିଶେଷ ଜନପ୍ରିୟ । ସେଗୁଡ଼ିକ ହେଲା ରୁଦ୍ରଚାମୁଣ୍ଡା, ମହାଲକ୍ଷ୍ମୀ, ସିଦ୍ଧଚାମୁଣ୍ଡା, ସିଦ୍ଧ ଯୋଗେଶ୍ୱର, ରୂପବିଦ୍ୟା, କ୍ଷମା, ଦନ୍ତୁରୀ, କୃବନ୍ଧନା ଓ ରୁଦ୍ରଚର୍ଚ୍ଚିକା । ତାନ୍ତ୍ରିକ ବର୍ଣ୍ଣନାରେ ତାଙ୍କର ଆବାସସ୍ଥଳ ହେଉଛି ଶ୍ମଶାନସ୍ଥ ବଟବୃକ୍ଷ । ଦେବୀ ପଛରେ ହସ୍ତୀଚର୍ମ ଶୋଭିତ । ଓଡ଼ିଶାର ଚାମୁଣ୍ଡା ବାମ ହାତର କାଣୀ ଆଙ୍ଗୁଠି ଚୋବାଇବାର ଦେଖାଯାଏ । ଏହା ଚର୍ଚ୍ଚିକା ନାମରେ ପୂଜିତା । ଏହା ଶିବଙ୍କ ରକ୍ତ-ଝାଳରୁ ଅନ୍ଧକାସୁର ବଧ କାଳରେ ସୃଷ୍ଟି । ଅସ୍ଥିସାର ବିକଟାଳ ଶ୍ମଶାନ ବିକାଟାଳ ଶ୍ମଶାନ ଦେବୀ ରୂପେ ଚାମୁଣ୍ଡାଙ୍କ ହାତରେ କଟାମୁଣ୍ଡ ଶୋଭିତ । ଶବ ଉପରେ ଆସୀନ ବା ନୃତ୍ୟରତା ମୂର୍ତ୍ତି ଅତି ଭୟଙ୍କର । ଦେବୀ ତନ୍ତ୍ର ଓ ଶକ୍ତି ପ୍ରତୀକ । ନରବଳୀ, ମଦମାଂସ ଓ ପଞ୍ଚ ମକାରରେ ଦେବୀ ପୂଜିତ ।

ନରବଳୀର ଉଦ୍ଦେଶ୍ୟ ହେଲା ଦେବୀଙ୍କୁ ଶାନ୍ତ ଓ ତୃପ୍ତ କରିବା । କାଳିକା ପୁରାଣରେ ନର ଓ ପଶୁ ବଳୀର ଅନେକ ରୋମାଞ୍ଚକର କାହାଣୀ ରହିଛି । ସାଧକଙ୍କର ବିଶ୍ୱାସ, ବିଭିନ୍ନ ବିଧିବିଧାନରେ ନରବଳୀ ଦେଲେ ଦେବୀ ସହସ୍ର ବର୍ଷ ପର୍ଯ୍ୟନ୍ତ ତୁଷ୍ଟ ରହନ୍ତି । ଶ୍ମଶାନ ଏହି ଧର୍ମ ସାଧନାର କ୍ଷେତ୍ର ଯାହା ମୋକ୍ଷର ଦ୍ୱାର ଦେଶ, ନୂତନ ସୃଷ୍ଟି, ମୁକ୍ତି ଓ ମାସାର୍ଯ୍ୟର ପ୍ରତୀକ । ସର୍ପ ସମୂହରେ ଦେବୀଙ୍କର ଜଟାମୁକୁଟ ଶୋଭିତ । ଖଟ୍ୱାଙ୍ଗ, ଘଣ୍ଟାଧ୍ୱନୀ ଖପୁରୀ ମାଳରୁ ନିନାଦିତ ଶବ ଗଗନ ପବନ ପ୍ରକମ୍ପିତ କରେ । ଶିଶୁ ଶବ ଦେବୀଙ୍କର କର୍ଣ୍ଣ କୁଣ୍ଡଳ । ହାଡଗୋଡ଼ କାନଫୁଲ, ମୁଣ୍ଡମାଳ, କଙ୍କାଳ ହସ୍ତଖେଳନା । ମଦ୍ୟ ବନ୍ୟାରେ ଶୌଚ, ହାଡ଼ ବିଛୁରିତ ଶ୍ମଶାନ ଏହାଙ୍କର ପ୍ରମୋଦ ବଗିଚା ଓ ମୃତ ମଣିଷର ଛାତି ନୃତ୍ୟ କ୍ଷେତ୍ର ।

ଏ ଧର୍ମ ପରବର୍ତ୍ତୀ କାଳରେ ମାତୃକା ପୂଜାର ରୂପ ନେଲା । ସପ୍ତ ମାତୃକା, ଅଷ୍ଟ ମାତୃକା ଓ ସାତ ଭଉଣୀ ରୂପେ ଦେବୀ ପୂଜିତ ହେଲେ । ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ପ୍ରାପ୍ତ ମୂର୍ତ୍ତି ଓ ଧର୍ମର ଜନପ୍ରିୟତାକୁ ସିଦ୍ଧ କରେ । ମୟୂରଭଂଜର ବଡ଼ସାହି ସ୍ଥିତ ଚାମୁଣ୍ଡା, ବଳୀମୁଣ୍ଡାଳୀ ରୂପେ ପୂଜିତ । ସୋନପୁରରେ ଶରଣାପନ୍ନ ଶବ ଉପରେ ଦେବୀ ଆସୀନ । ଧର୍ମଶାଳା, ଯାଜପୁର, କପିଳାସ ଆଦି ସ୍ଥାନରେ ଦେବୀ ମୂର୍ତ୍ତି ସ୍ଥାପିତ । ବଙ୍କାଡ଼ଗଡ଼ ଓ ଧର୍ମଶାଳାରୁ ମ୍ୟୁଜିୟମ ଆନୀତ ଚାମୁଣ୍ଡା ମୂର୍ତ୍ତି ଅତି ଭୟଙ୍କର ।

ଭୁବନେଶ୍ୱରର ବୈତାଳ ମନ୍ଦିରରେ ସ୍ଥାପିତ ଚାମୁଣ୍ଡା ମୂର୍ତ୍ତି କାପାଳିନୀ ରୂପେ ପୂଜିତ । ମୂର୍ତ୍ତିଟି ଶବାରୂଢ଼, ଦକ୍ଷିଣରେ ପେଚକ, ବାମରେ ଶୃଗାଳ । ଅସ୍ଥି କଙ୍କାଳସାର ମୂର୍ତ୍ତିଟି ନିର୍ମାଂସା, ସଙ୍କୁଚିତ ଉଦରା, ଉନ୍ମୁକ୍ତ ବଦନା, କୋଟରାକ୍ଷୀ, ମୁଣ୍ଡମାଳା ଶୋଭିତ, ଅକ୍ଷମାଳ, ତ୍ରିଶୂଳ ଧାରିଣୀ, କର୍ତ୍ତରୀ ଓ କପାଳଧାରିଣୀ ଭୟଙ୍କର ମୂର୍ତ୍ତି, ଭୟ ଓ ଭକ୍ତି ସଂଚାରକାରୀ । ତ୍ରିପଦୀରେ ଦୁଇଟି କର୍ତ୍ତିତ ନରମୁଣ୍ଡ । ଦକ୍ଷିଣରେ ଶୃଗାଳର ଶବ ଭୋଜନ ଦୃଶ୍ୟ ଅତି ବିଭତ୍ସ । ମନ୍ଦିର ତାନ୍ତ୍ରିକ ବାତାବରଣରେ ପରିପୂର୍ଣ୍ଣ । କିମ୍ବଦନ୍ତୀ ଅନୁସାରେ ବିନ୍ଦୁ ସରୋବରର ଚାରିପଟେ ୪ଟି ଚାମୁଣ୍ଡା ମୂର୍ତ୍ତି ଅତୀତରେ ସ୍ଥାପିତ ହୋଇଥିଲା । ମୁସଲମାନ ଆକ୍ରମଣ ପରେ ଧିରେ ଧିରେ ଏହି ଶକ୍ତି ଉପାସନାର ଅନ୍ତ ହେଲା ।

ଅଧୀକ୍ଷକ
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର



# ରାଷ୍ଟ୍ରଗୁରୁ ଡକ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍

ଡକ୍ଟର ଜ୍ୟୋତିର୍ମୟୀ ସାମନ୍ତରାୟ

**ବି**ଚକ୍ଷଣ ବୁଦ୍ଧି ସଂପନ୍ନ, ବିଶିଷ୍ଟ ଦାର୍ଶନିକ, ଶ୍ରେଷ୍ଠ ଗୁରୁ, ଭାରତର ପୂର୍ବତନ ରାଷ୍ଟ୍ରପତି ଡକ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ ବିବିଧ ଶାଶ୍ୱତ ଗୁଣାବଳୀର ଅଧିକାରୀ ଥିଲେ । ପଣ୍ଡିତ ଜବାହରଲାଲ ନେହେରୁ ଓ ମହାତ୍ମା ଗାନ୍ଧୀଙ୍କ ଭଳି ସେ ଜଣେ ସଚ୍ଚା ଭାରତୀୟ ଥିଲେ । ଯେତେବେଳେ ୧୯୬୨ ମସିହା ମେ ମାସରେ ସେ ଭାରତର ରାଷ୍ଟ୍ରପତି ପଦ ଅଳଙ୍କୃତ କରିଥିଲେ, ସେତେବେଳେ ଭାରତର ରକ୍ତିମ ସୂର୍ଯ୍ୟ ଅଧିକ ତେଜୀୟାନ ହୋଇ ଉଠିଥିଲା । ଜଣେ ବିଜ୍ଞ ବ୍ୟକ୍ତିରୁ ସେ ଶୀର୍ଷ ରାଜନୈତିକ ଆସନର ଅଧିକାରୀ ହୋଇ ପାରିଥିଲେ । ଜଣେ ଦାର୍ଶନିକ ଓ ଶିକ୍ଷାବିତ୍ ଭାବେ ସେ ବିଭିନ୍ନ ପଦପଦବୀ ଅର୍ଥାତ୍ କଲେଜ ଶିକ୍ଷକ, ବକ୍ତା, ଲେଖକ, ବିଶିଷ୍ଟ ମୁନୀ ଓ ଦର୍ଶନ ବିଭାଗର ପ୍ରଫେସର ଭାବେ କଲିକତା, ଅକ୍ସଫୋର୍ଡ଼ ଓ ବନାରସ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟ କରି ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଥିଲେ । ଷ୍ଟାଲିନ୍, ମାଓ, ନେହେରୁ ଓ ଇନ୍ଦିରା ଗାନ୍ଧୀଙ୍କ ଭଳି ବ୍ୟକ୍ତିବିଶେଷଙ୍କୁ ଆଧୁନିକ ଭାରତର ଶ୍ରେଷ୍ଠ ମନୀଷୀ ଭଳି ରାଧାକ୍ରିଷ୍ଣନ ଉପଦେଶ ଦେଉଥିଲେ । ସେ ଥିଲେ ବିବିଧ ସାରସ୍ୱତ ମୂଲ୍ୟବୋଧ ଓ ମହାନତାର ସମାହାର ।

ଏହି ମହାନ୍ ବ୍ୟକ୍ତିତ୍ୱ ୧୮୮୮ ମସିହା ସେପ୍ଟେମ୍ବର ମାସ ୫ ତାରିଖ ଦିନ ମାଡ୍ରାସର ଉତ୍ତର-ପଶ୍ଚିମାଞ୍ଚଳରେ ଥିବା ଏକ ମନ୍ଦିରମାଳିନୀ ସହର ତିରୁତାନୀଠାରେ ଭୂମିଷ୍ଠ ହୋଇଥିଲେ । ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ପିତା ସର୍ବାପଲ୍ଲୀ ବୀରସ୍ୱାମୀ ଓ ମାତା ସୀତାମ୍ମାଙ୍କର ସେ ଥିଲେ ଦ୍ୱିତୀୟ ସନ୍ତାନ ।

ରାଧାକ୍ରିଷ୍ଣନ୍ ଅତ୍ୟନ୍ତ ବିଚକ୍ଷଣ ବୁଦ୍ଧି ସଂପନ୍ନ ବାଳକ ଥିବାରୁ ସେ ଛାତ୍ରବୃତ୍ତି ପାଇଥିଲେ । ମାଡ୍ରାସ ବିଶ୍ୱବିଦ୍ୟାଳୟରୁ ମାଟ୍ରିକ୍ୟୁଲେସନ୍ ପାସ୍ କରିବା ପରେ ବୃତ୍ତି ପାଇ ସେ ବୁର୍‌ହୀ କଲେଜରେ ନାମ ଲେଖାଇଥିଲେ । ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ବିଶେଷତଃ ସ୍ୱାମୀ ବିବେକାନନ୍ଦ ଓ ଭି.ଡି. ସଭରକରଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ଅତ୍ୟନ୍ତ ଲାଜକୁଳା ସ୍ୱଭାବର ପିଲା ଥିଲେ ମଧ୍ୟ ସବୁବେଳେ ସାଙ୍ଗସାଥୀଙ୍କ ଗହଣରେ ରହିବାକୁ ରାଧାକ୍ରିଷ୍ଣନ ଭଲ ପାଉଥିଲେ । ଛାତ୍ରବୃତ୍ତି ଅର୍ଥରୁ ସେ ସ୍କୁଲ ଫି ଓ ବହି କିଣିବା ପରେ ଅବଶିଷ୍ଟ ଅର୍ଥ ଗରିବ ଛାତ୍ରଙ୍କ ମଧ୍ୟରେ ବାଣ୍ଟିବା ସହିତ ସାଙ୍ଗସାଥୀଙ୍କ ଚିତ୍ତ ବିନୋଦନରେ ଖର୍ଚ୍ଚ କରୁଥିଲେ ।

୧୯୦୩ ମସିହାରେ ଭେଲୋର୍‌ଠାରେ ଛାତ୍ରାବସ୍ଥାରେ ସେ ମେ ମାସରେ ୧୬ ବର୍ଷ ବୟସରେ ଶିବାକାମ୍ମୁ (ପଦ୍ମା)ଙ୍କୁ ବିବାହ କରିଥିଲେ । ୧୯୦୪ ମସିହାରେ ରାଧାକ୍ରିଷ୍ଣନ୍ ପ୍ରଥମ ଶ୍ରେଣୀରେ ପ୍ରଥମ ଆର୍ଟସ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ବି.ଏ. କୋର୍ସ ନିମନ୍ତେ ମାଡ୍ରାସ୍‌ର ଖ୍ରୀଷ୍ଟିଆନ କଲେଜରେ ପଢ଼ିବା ପାଇଁ ରାଧାକ୍ରିଷ୍ଣନ ବୃତ୍ତି ପାଇଥିଲେ । ଏହି ସମୟରେ ରାଧାକ୍ରିଷ୍ଣନ ଉଇଲିୟମ ସ୍କିନର ଓ ଏ.ଜି. ହୋଗ୍‌ସ୍‌ଙ୍କ 'ସହନଶୀଳତା' ପ୍ରସଙ୍ଗ ପ୍ରତି ଅଧିକ ଆକୃଷ୍ଟ ହୋଇଥିଲେ । ୧୯୦୬ ମସିହା ଶେଷ ଭାଗରେ ରାଧାକ୍ରିଷ୍ଣନ୍ ବି.ଏ. ଡିଗ୍ରୀ ସମ୍ମାନ ସହିତ ପାଶ କରିଥିଲେ । 'The Ethics of the Vedanta and its Metaphysical Presuppositions' ଉପରେ ରାଧାକ୍ରିଷ୍ଣନ ତାଙ୍କର ସନ୍ଦର୍ଭ ରଚନା କରିଥିଲେ । ୧୯୦୯ ମସିହା ଜାନୁଆରୀ ମାସରେ ଡଃ ସର୍ବପଲ୍ଲୀ ରାଧାକ୍ରିଷ୍ଣନ ଏମ୍.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ଅଜ୍ଞତା ଓ ଅନ୍ଧବିଶ୍ୱାସ ମଧ୍ୟରେ ଭାରତୀୟ ସମାଜରେ ରାଧାକ୍ରିଷ୍ଣନ ହିନ୍ଦୁ ପରମ୍ପରାର ଶାଶ୍ୱତ ମାନବିକ ମୂଲ୍ୟବୋଧକୁ ଖୋଜି ବାହାର କରିଥିଲେ । ଆଧାତ୍ମିକ ମୂଲ୍ୟବୋଧ ଓ ସମାଜସେବାକୁ ସେ ମୁଖ୍ୟସ୍ରୋତ ଭାବେ ଗଣନା କରୁଥିଲେ । ବେଦାନ୍ତର ପ୍ରାଥମିକ ନିୟମ ବିନା ଭେଦଭାବ ଓ ବିଶ୍ୱଭ୍ରାତୃତ୍ୱ ବୋଲି ସର୍ବପଲ୍ଲୀ ରାଧାକ୍ରିଷ୍ଣନ ଅନୁଭବ କରିଥିଲେ । ମାନବ ଜାତିର ମଙ୍ଗଳ ପାଇଁ କାର୍ଯ୍ୟ କଲେ ଆତ୍ମସନ୍ତୋଷ ମିଳିପାରିବ ବୋଲି ରାଧାକ୍ରିଷ୍ଣନ ଭାବୁଥିଲେ । ଧର୍ମର ଦୁଇପଟ ମୋକ୍ଷ ଓ ଧର୍ମ ସହିତ ବୁଦ୍ଧି ଓ ପ୍ରେମର ଆବଶ୍ୟକତା ଉପରେ ରାଧାକ୍ରିଷ୍ଣନ ଗୁରୁତ୍ୱ ଦେଇଥିଲେ । ଭଗବାନଙ୍କୁ ଭକ୍ତି ଅର୍ଥ ମାନବଜାତି ପ୍ରତି ଭକ୍ତି ଓ ଶ୍ରଦ୍ଧା ବୋଲି ରାଧାକ୍ରିଷ୍ଣନ ମତ ଦେଇଥିଲେ ।

ମହାନ୍ ଗୁରୁ ଡକ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ ଯୁବଛାତ୍ରମାନଙ୍କ ମଧ୍ୟରେ ବେଶ୍ ଶ୍ରଦ୍ଧାର ପାତ୍ର ହୋଇ ପାରିଥିଲେ । ୧୯୧୬ ମସିହାରେ ଦିନେ ସନ୍ଧ୍ୟାବେଳେ ରାଧାକ୍ରିଷ୍ଣନ ଲଣ୍ଠନ ଆଲୁଅରେ ସଂସ୍କୃତ ଶ୍ଳୋକ ପଢୁଥିବାବେଳେ ଜଣେ କେହି କବାଟ ଠକ୍‌ଠକ୍ କରିଥିଲେ । ସେ ହଠାତ୍ କବାଟ ଖୋଲିଲା ପରେ ଦେଖିଲେ, ଜଣେ ଗେଡ଼ା, କୃଷ୍ଣବର୍ଣ୍ଣ ଓ ବଳିଷ୍ଠ ଯୁବକ ରାଧାକ୍ରିଷ୍ଣନଙ୍କ ଜନୈକ ଛାତ୍ର ସହିତ ଆସିଛନ୍ତି । ଅପରିଚିତ ଯୁବକ ଜଣକ କହିଲେ, 'ମୁଁ କେମ୍ବ୍ରିଜ୍ ଅଭିମୁଖେ ଯାତ୍ରା

କରୁଛି ଏବଂ ମା' ଭବାନୀଙ୍କ ନିର୍ଦ୍ଦେଶକ୍ରମେ (ସ୍ୱପ୍ନରେ) ମୁଁ ଆପଣଙ୍କ ଆଶୀର୍ବାଦ ନିମନ୍ତେ ଆସିଅଛି ।'

ରାଧାକ୍ରିଷ୍ଣନ ଥିଲେ ଜାତୀୟତାବାଦୀ । ସେ ଅନୁଭବ କରି ପାରିଥିଲେ ଯେ, ଭାରତୀୟମାନଙ୍କ ନିକଟରେ ସାମର୍ଥ୍ୟ, ଦେଶାତ୍ମବୋଧ, ବିଚକ୍ଷଣ ବୁଦ୍ଧି ଓ ଦୟାଶୀଳତା ରହିଛି । ରାଧାକ୍ରିଷ୍ଣନ ଭାବୁଥିଲେ, ନାରୀ ଓ ପୁରୁଷ ସମାନ । ଭାରତର ରାଷ୍ଟ୍ରପତି ପଦ ଅଳଙ୍କୃତ କରିଥିବା ଡକ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ ୧୯୩୯ ମସିହାଠାରୁ ବ୍ରିଟିଶ୍ ଏକାଡେମୀର ଫେଲୋ ଭାବେ କାର୍ଯ୍ୟ କରୁଥିଲେ । ପରେ ତାଙ୍କୁ ସମ୍ମାନଜନକ ଫେଲୋ ଭାବେ ନିର୍ବାଚିତ କରାଗଲା । ନ୍ୟାସନାଲ ଫେଡେରେସନ ଅଫ୍ ଟିଚରସ୍‌ର ଅନୁରୋଧ କ୍ରମେ ଭାରତ ସରକାର ତାଙ୍କର ଜନ୍ମଦିନ ସେପ୍ଟେମ୍ବର ୫ ତାରିଖ ଦିନଟିକୁ 'ଗୁରୁଦିବସ' ରୂପେ ପାଳନ କରାଯିବ ବୋଲି ଘୋଷଣା କଲେ । ରାଷ୍ଟ୍ରପତି ପଦରେ ଥିବାବେଳେ 'ଫାଶୀଦଣ୍ଡ'ର ବିଲୋପ ନିମନ୍ତେ ସେ ପ୍ରସ୍ତାବ ଦେଇଥିଲେ । ଭାରତର ଯେକୌଣସି ଅଞ୍ଚଳରୁ ଯେକୌଣସି ବର୍ଗର ବ୍ୟକ୍ତି ରାଷ୍ଟ୍ରପତିଙ୍କୁ ସାକ୍ଷାତ କରିବାକୁ ସୁଯୋଗ ପାଉଥିଲେ । ଡଃ ରାଧାକ୍ରିଷ୍ଣନ ତାଙ୍କର ଦଶ ବର୍ଷର ଉପରାଷ୍ଟ୍ରପତି ପଦବୀ ସମୟରେ ଯେଭଳି ପ୍ରତ୍ୟେକ ପ୍ରସଙ୍ଗ ଉପରେ ନିଜର ମତ ନିର୍ଭୀକ ଭାବେ ଉପସ୍ଥାପନ କରୁଥିଲେ, ସେହିଭଳି ଭାବେ ରାଷ୍ଟ୍ରପତି ପଦବୀରେ ଥିବାବେଳେ ମଧ୍ୟ କାର୍ଯ୍ୟ କରୁଥିଲେ । ରାଷ୍ଟ୍ରପତି ଭାବେ ସେ ନିଜକୁ ଜନତାଙ୍କ ଭାବନାର ମୁଖପାତ୍ର ବୋଲି ଭାବୁଥିଲେ । ସର୍ବସାଧାରଣଙ୍କ ନିକଟରେ ସେ 'ଡଃ ରାଜ' ଭାବେ ପରିଚିତ ଥିଲେ । ଭାରତ ଉପରେ ଚୀନ୍ ଆକ୍ରମଣ ସମୟରେ ପରିସ୍ଥିତିର ଦୃଢ଼ ନିୟନ୍ତ୍ରଣ ଏବଂ ଭାରତ ସହିତ ଆମେରିକା ଓ ବ୍ରିଟେନ୍ ଏବଂ ଋଷିଆର ସୁସଂପର୍କ ସ୍ଥାପନ କରିବାରେ ଡଃ ରାଧାକ୍ରିଷ୍ଣନ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ୧୯୭୫ ମସିହା ଏପ୍ରିଲ୍ ୧୭ ତାରିଖ ଦିନ ଏହି ମହାମାନବ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ଆଜି ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ଆମ ଗହଣରେ ନାହାନ୍ତି ମାତ୍ର ଏଭଳି ଜଣେ ଦାର୍ଶନିକ, ଦେଶପ୍ରେମୀ, ଶିକ୍ଷାବିତ୍, ମହାନ୍ ଗୁରୁଙ୍କୁ ଭାରତବାସୀ ଚିରଦିନ ମନେ ରଖିଥିବେ । ଭାରତର ଜନତା ରାଧାକ୍ରିଷ୍ଣନଙ୍କ ଦ୍ୱାରା ସ୍ଥାପିତ ଜୀବନାଦର୍ଶକୁ ଜୀବନର ଲକ୍ଷ୍ୟ ଭାବେ ଗ୍ରହଣ କଲେ ଏହା ତାଙ୍କ ପ୍ରତି ପ୍ରକୃଷ୍ଟ ଶ୍ରଦ୍ଧାଞ୍ଜଳି ହେବ ।

ଉପସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର

# ସେ ଗୁରୁ ଚରଣେ ମୋର ଅଜସ୍ର ପ୍ରଣାମ

ପଣ୍ଡିତ ଜଗନ୍ନାଥ ଶତପଥୀ

ଭାରତର ଜନଗଣ ବନ୍ଦ୍ୟ
ଆହେ ସର୍ବମାନ୍ୟ,
ହେ ରାଧାକ୍ରିଷ୍ଣନ୍ !
ଆଜିର ଏ ପୁଣ୍ୟ ଦିନେ କରେ ମୁଁ ସ୍ମରଣ
ତବ ଜନ୍ମଦିନେ
ଆଜିର ଲଗନେ
କୃତାଞ୍ଜଳି ପୁଟେ କରେ ତବ ଆବାହନ
ଅରପି ଭକତି-ପୂତ, ଶ୍ରଦ୍ଧାର ସୁମନ ।

ତ୍ୟାଗ ତିତିକ୍ଷାର ତୁମେ ପ୍ରମୂର୍ତ୍ତ ସାଧକ
ମହାନ ନାୟକ
ବିଜ୍ଞ ଦାର୍ଶନିକ
ଆର୍ଯ୍ୟଭୂମି ଭାରତର ଭାଗ୍ୟ ନିୟାମକ
ହେ ଅଧିନାୟକ
ମାର୍ଗ ପ୍ରଦର୍ଶକ
ତୁମରି ଜୟନ୍ତୀ ଆଜି ଗୁରୁ ପୂଜନରେ
ସମର୍ପିତ ସମୃଦ୍ଧିତ ମଙ୍ଗଳଦାୟକ ।

ଭାରତର ପ୍ରତିକୋଣେ ହୁଅଇ ସ୍ପନ୍ଦିତ
ମନ୍ଦ୍ରିତ କଣ୍ଠରେ
ଭାରତୀ ମନ୍ଦିରେ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ରୂପ ଚିନ୍ତନରେ
ମଙ୍ଗଳ ଲଗ୍ନରେ
ଗୁରୁ ବନ୍ଦନାରେ
ଗୁରୁ ଶିଷ୍ୟ ମିଳନର ମାହେନ୍ଦ୍ର ବେଳାରେ
ଆୟୋଜିତ ଗୁରୁପୂଜା ଭବ୍ୟ ଅବସରେ ।

ଅଜ୍ଞାନ-ତିମିର-ଅନ୍ଧ ଜନଜୀବନରେ
ଦିଅନ୍ତି ଯେ ନବଜନ୍ମ,
ସେ ଶ୍ରଦ୍ଧାଳୁ ଗୁରୁଜନ,
ଧନ୍ୟ ସେହି ମନ୍ତ୍ରଦ୍ରଷ୍ଟା ପରମପାବନ
ମହା ମହୀୟାନ
ଅଣୋରଣୀୟାନ
ଯାହାଙ୍କ ପରଶେ ଜଡ଼ପାଏ ଦିବ୍ୟଜ୍ଞାନ
ସେ ଗୁରୁ ଚରଣେ ମୋର ଅଜସ୍ର ପ୍ରଣାମ ।

ଚନ୍ଦ୍ରାଳୟ, ସେଲଟର ଛକ
କଟକ - ୭୫୩୦୦୮

# ଗୁରୁବାଦର ସ୍ରୋତସ୍ୱିନୀ

ରାଧାନାଥ ରଥ

ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ, ଗୁରୁ ଦେବ ମହେଶ୍ୱର
ଗୁରୁ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈ ଶ୍ରୀ ଗୁରବେ ନମଃ ।

ଶାସ୍ତ୍ରରେ ଗୁରୁଙ୍କୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ସହିତ ତୁଳନା କରାଯାଇଛି । ସେହି ପରଂବ୍ରହ୍ମ ଗୁରୁଙ୍କୁ ସମାଜରେ ସ୍ୱତନ୍ତ୍ର ମର୍ଯ୍ୟାଦା ତଥା ସ୍ୱତନ୍ତ୍ର ଆସନ ଯୁଗେ ଯୁଗେ ଦିଆଯାଇଛି । ଗୁରୁଦେବ ବଶିଷ୍ଠଙ୍କଠାରୁ ଗୁରୁଶ୍ରେଷ୍ଠ ସନ୍ଦିପନୀଙ୍କ ପର୍ଯ୍ୟନ୍ତ, ଗୁରୁ ଦ୍ରୋଣାଚାର୍ଯ୍ୟଙ୍କଠାରୁ ଅସୁରଗୁରୁ ଶୁକ୍ରାଚାର୍ଯ୍ୟ ଯାଏଁ ସମସ୍ତେ ସ୍ୱ-ସ୍ୱ ପାଣ୍ଡିତ୍ୟ, ପ୍ରତିଭା ତଥା ସୁ-ଗୁଣ ବଳରେ ଚିର ପୂଜନୀୟ ।

ମନୁଷ୍ୟ ଯେତେ ବିଦ୍ୟା ଆୟତ୍ତ କଲେ ବି ତା'ର ଅନେକ ବିଦ୍ୟା ବାକି ରହିଯାଏ । ସେହି ବିଦ୍ୟା ଶିଖିବା ପାଇଁ ସେ ମନଲାଖି ଗୁରୁଟିଏ ଅନ୍ୱେଷଣ କରେ, ଯେଉଁ ଗୁରୁ ତାକୁ ପ୍ରକୃତ ମାର୍ଗ ଦର୍ଶନ କରାଇପାରିବେ । ଗୁରୁ ହିଁ ଶିଷ୍ୟକୁ ପ୍ରକୃତ ମାର୍ଗ ଦେଖାଇ ଦିଅନ୍ତି । ନିଜ ଭିତରେ ସାଇତିଥିବା ଜ୍ଞାନ-ଗଣ୍ଟାଘରକୁ ଶିଷ୍ୟ ବା ଛାତ୍ରର ମଧୁର ଭକ୍ତିପୂର୍ଣ୍ଣ ବ୍ୟବହାରରେ ପ୍ରୀତ ହୋଇ ଖୋଲି ଦିଅନ୍ତି-ବିନାଦ୍ୱିଧାରେ । ଜ୍ଞାନ-ରସ ଆସ୍ୱାଦନ କରି ଛାତ୍ର ତାଙ୍କର, ତାଙ୍କଠାରୁ ବଳି ବିଦ୍ୱାନ ହେଉ, ଯଶସ୍ୱୀ ହେଉ, ପ୍ରତିଭା ସଂପନ୍ନ ହେଉ, ଏହା ହିଁ ତାଙ୍କର ହୃଦୟର ଭାଷା । କେତେ ମହାନ୍ ସେ ପରମ୍ପରା । ଗୁରୁକୁଳର ଆଶ୍ରମରେ ସେ ଦିନର ଶିଷ୍ୟ, ଗୁରୁଙ୍କର ଆଦେଶରେ ନିଜର ଜୀବନକୁ ବାଜି ଲଗାଇ ତା'ର କର୍ତ୍ତବ୍ୟ ପାଳନ କରିବାକୁ ପଶ୍ଚାତ୍‌ପଦ ହେଉନଥିଲା । ଗୁରୁ ପରୀକ୍ଷା କରୁଥିଲେ । ଉପଯୁକ୍ତ ମନେକଲେ ତାକୁ ସଂସାର ଭିତରକୁ ଆସିବାକୁ ଅନୁମତି ଦେଉଥିଲେ । ପିତା ଓ ପୁତ୍ରର ସଂପର୍କକୁ ଗୁରୁ-ଶିଷ୍ୟଙ୍କର ସଂପର୍କ ସହିତ ତୁଳନା କରାଯାଇପାରେ ।

ସେଇ ପୂତ-ପବିତ୍ର-ଆରଣ୍ୟକ ପରିବେଶରୁ ଜୀବନ ଧାରଣ ନିମିତ୍ତ ଉତ୍ତମ-ମାର୍ଗ ଚୟନ କରି ଶିଷ୍ୟ ତା' ଜୀବନର ମାନଦଣ୍ଡକୁ ସୁଦୃଢ଼ ତଥା ସୁ-ମହତ୍ କରି ଗଢ଼ି ତୋଳୁଥିଲା । ଏକଲବ୍ୟ, ଉପମନ୍ୟୁ, ନଚିକେତା, ଆରୁଣୀ ଏ'ଯାବତ୍ ନିଜଗୁଣରେ ନିଜେ ଜାଜ୍ୱଲ୍ୟମାନ ।

ଆଜି ସେ ସଂସ୍କୃତି ବିଲୁପ୍ତ ପ୍ରାୟ । ଗୁରୁ-ଛାତ୍ରର ସଂପର୍କ ସମସ୍ତଙ୍କୁ ଭଲ ଭାବେ ଜଣା । ଅବଶ୍ୟ ଏଥିପାଇଁ ଛାତ୍ରସମାଜକୁ ସଂପୂର୍ଣ୍ଣ ଦାୟୀ କରାଯାଇନପାରେ । ଗୁରୁମାନେ ବି ନିଜ ନିଜର କର୍ତ୍ତବ୍ୟ ତଥା ଧର୍ମରୁ ବିଚ୍ୟୁତ ହୋଇଯାଇଛନ୍ତି । ଏଥିପାଇଁ କଳୁଷିତ ରାଜନୀତି, ପେଟ-ପାଟଣାର ପ୍ରଭାବ, ପରିବର୍ତ୍ତିତ ପ୍ରତିକୂଳ ପରିସ୍ଥିତି ଓ ପାରିପାର୍ଶ୍ୱିକ ଆଲୋଡ଼ନ ନିଶ୍ଚିତ ଭାବରେ ଦାୟୀ । ମଣିଷର ଅନ୍ତର୍ନିହିତ ପ୍ରତିଭାର ପରିପ୍ରକାଶ ହିଁ ଶିକ୍ଷା । ସ୍ୱାମୀ ବିବେକାନନ୍ଦ ଯଥାର୍ଥରେ କହିଥିଲେ - 'Education is the menifestation of the perfection already in man.' ଗୁରୁ ହିଁ ଶିକ୍ଷା ଏବଂ ଶିଷ୍ୟର ଉପଯୁକ୍ତ କର୍ଣ୍ଣଧାର । ଶିକ୍ଷା ରୂପକ ଆଲୋକ ବର୍ତ୍ତିକାକୁ ସେ ଜ୍ଞାନର ଘଅତ ମାଧ୍ୟମରେ ଅଧିକ ତେଜୀୟାନ କରି ହୃଦୟରୁ ଅଜ୍ଞାନ-ଅନ୍ଧକାର ଦୂର କରିଥାନ୍ତି । ତେଣୁ ଯଥାର୍ଥରେ କୁହାଯାଇଛି -

ଅଜ୍ଞାନ-ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଳାକାୟା
ଚକ୍ଷୁରୁନ୍ମୀଳିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ।

ସ୍ୱର୍ଗାଦପି ଗରୀୟାନ ପିତା ଓ ସ୍ୱର୍ଗାଦପି ଗରୀୟସୀ ମାଆ ଆମର ଶ୍ରେଷ୍ଠ ଗୁରୁ । ଯେଉଁ ଗୁରୁଙ୍କଠାରୁ ବିଦ୍ୟାଶିକ୍ଷା କରାଯାଏ ସେ ଆମର ଶିକ୍ଷାଗୁରୁ । ଯିଏ ଆମକୁ ସତ୍‌ପଥରେ ଚାଲିବା ପାଇଁ ଓ ସତ୍‌କର୍ମ କରିବା ପାଇଁ ଶିକ୍ଷା ଦେଇଥାନ୍ତି, ସେ ସଦ୍‌ଗୁରୁ । ସଦ୍‌ଗୁରୁ ନିଜ ସାଧନା ବଳରେ ଇନ୍ଦ୍ରିୟମାନଙ୍କୁ ଜୟ କରି ଭଗବତ୍ ସତ୍ତା ପ୍ରାପ୍ତ ହୋଇଥାନ୍ତି ଓ ଭଗବତ୍ ପ୍ରାପ୍ତିର ଅହେତୁକ ଆନନ୍ଦକୁ ଅନ୍ୟମାନଙ୍କୁ ବୁଝାଉଥା'ନ୍ତି ।

ଅତିବଡ଼ି ଜଗନ୍ନାଥ ଦାସ ଭାଗବତରେ ଗୁରୁଙ୍କୁ ମନୁଷ୍ୟ ରୂପରେ ତୁଳନା ନକରି ଭଗବାନଙ୍କ ସହିତ ତୁଳନା କରିଛନ୍ତି । ସେ କହିଛନ୍ତି -

ଗୁରୁଟି ବ୍ରହ୍ମା ହରିହର
ଗୁରୁଟି ସ୍ୱୟଂ ନିରାକାର ।
ଏ ଘେନି ଗୁରୁ ଭଗବାନ
ସେ ନୋହେଁ ମନୁଷ୍ୟ ସମାନ ।।

ଗୁରୁଙ୍କୁ ପ୍ରାଚୀନ କାଳରେ ଆଚାର୍ଯ୍ୟ ଭାବେ ସମ୍ବୋଧନ କରାଯାଉଥିଲା । ଯିଏ ନିଜ ଆଚରଣ ସହିତ ଶିକ୍ଷା ପ୍ରଦାନ କରିଥାନ୍ତି, ସେ ହିଁ ଆଚାର୍ଯ୍ୟ । ସ୍ୱଭାବ କବି ଗଙ୍ଗାଧର ମେହେର ବାସ୍ତବରେ ଗୁରୁଙ୍କ ସ୍ୱଭାବ ସଂପର୍କରେ କହିଥିଲେ -

ନିଜକୁ ଯେ ନିରନ୍ତର ଶିଷ୍ୟ ରୂପେ ଗଣେ
ନିଶ୍ଚୟ ସେ ଯୋଗ୍ୟତମ ଗୁରୁ ମଧ୍ୟେ ଜଣେ ॥

ଗୁରୁମାନଙ୍କର ତ୍ୟାଗପୂତ ଆଚରଣ ସମାଜରେ ତାଙ୍କୁ ସର୍ବୋଚ୍ଚ ଆସନ ଆଣି ଦେଇଥାଏ । କାଣି କଉଡ଼ି ଶୂନ୍ୟ, ଜଟା ବଲ୍କଳଧାରୀ, ଗୈରିକ ବସନ ପରିହିତ ଶ୍ମଶ୍ରୁ ଆଚ୍ଛାଦିତ ଗୁରୁମାନଙ୍କୁ ଦେଖିଲେ ମୁଣ୍ଡ ନଇଁଯାଏ ଆପେ ଆପେ । ଅବଶ୍ୟ ଗୁଣ ନଥାଇ ପୋଷାକରୁ ବିଦ୍ୟାର ଆକଳନ ନିରର୍ଥକ କିନ୍ତୁ କିଛି ଅଲୌକିକ ଆଚରଣ, ଅଶ୍ରୁତ ବିଦ୍ୟା, ଅଦୃଷ୍ଟ ମହିମା ସନ୍ଦର୍ଶନ କଳାପରେ ମନ ଆକର୍ଷିତ ହୋଇଯାଏ । କୁଟୀର ନିବାସୀ ସାଧାରଣ ନରନାରୀଠାରୁ ରାଜପ୍ରାସାଦର ସମ୍ଭ୍ରାନ୍ତ ବଂଶୋଦ୍ଭବ ପର୍ଯ୍ୟନ୍ତ ସମସ୍ତେ ଗୁରୁ-ଶରଣାଗତ । ତାଙ୍କର ପାଦତଳେ ସମସ୍ତ ଗର୍ବ, ଦମ୍ଭ, ଅଭିମାନ ବେଳାଭୂମିରେ ଜୁଆର ମଥାପିଟିବା ପରି ବ୍ୟର୍ଥ ହୋଇ ଅହମିକା ବିବର୍ଜିତ ନିର୍ମଳ ତ୍ୟାଗପୂତ ଆତ୍ମାଟିଏ ସୃଷ୍ଟି ହୋଇଥାଏ । ସତ୍ୟଯୁଗରେ ଭଗବାନ ପୁରୁଷୋତ୍ତମ ରାମଚନ୍ଦ୍ର ଶାସନର ପ୍ରତିକ୍ଷେତ୍ରରେ ଗୁରୁ ବଶିଷ୍ଠ ଓ ବିଶ୍ୱାମିତ୍ର ଋଷିଙ୍କର ଉପଦେଶ ଗ୍ରହଣ କରି ରାଜ୍ୟ ଶାସନ କରୁଥିଲେ । ଗୁରୁ ସନ୍ଦିପନୀ-ଚକ୍ରୀ ଶ୍ରୀକୃଷ୍ଣଙ୍କର ପରମପୂଜ୍ୟ ଆଦର୍ଶ ଗୁରୁ ଥିଲେ । ଦେବର୍ଷି ନାରଦ ନର୍କରୁ ଉଦ୍ଧାର ପାଇବା ପାଇଁ ଜଣେ ମୋଚିକୁ ଗୁରୁ ରୂପେ ଗ୍ରହଣ କରିଥିଲେ । ଅବଧୂତ ଚବିଶି ଗୁରୁ ବରି ନେଇଥିଲେ - ଜୀବନର ପୂର୍ଣ୍ଣତା ପ୍ରାପ୍ତି ନିମନ୍ତେ । ଗୋବିନ୍ଦଚନ୍ଦ୍ର ହାଡ଼ିପାଙ୍କୁ ଗୁରୁ କରିଥିଲେ । ଛତ୍ରପତି ମରହଟ୍ଟା ବୀର ଶିବାଜୀ ଗୁରୁ ରାମଦାସଙ୍କ ନିକଟରେ ନତମସ୍ତକ ହୋଇ ଭେଟି ଦେଇଛନ୍ତି ତାଙ୍କର ବୀରତ୍ୱକୁ । ଏମିତି ଗୁରୁବାଦର ଆଦର୍ଶ ସ୍ରୋତସ୍ୱିନୀ କାହିଁ କେଉଁ ଯୁଗରୁ ବାଲ୍ମିକୀଙ୍କଠାରୁ ଏଯାବତ୍ କୁଳୁକୁଳୁ ନିନାଦରେ ବହି ଆସିଛି ଭାରତୀୟ ସଂସ୍କୃତିରେ । ବିଶିଷ୍ଟ ଇଂରେଜ ଐତିହାସିକ H.G. Wells ଅନୁଭବ କରି କହିଥିଲେ - 'Teacher is the real maker of History'

ଏହା ଅନସ୍ୱୀକାର୍ଯ୍ୟ ଯେ, ସମାଜରେ ଗୁରୁ-ଶିଷ୍ୟର ସଂପର୍କ ମଧୁମୟ ନହେଲେ, ଶିକ୍ଷାର ମାନଦଣ୍ଡ ରୁଗ୍ଣ ହୋଇପଡ଼ିବ । ଶିକ୍ଷା ତା'ର ଲକ୍ଷ୍ୟ ପଥରୁ ଦୂରେଇ ଯାଇ ଏକ ଅବକ୍ଷୟୀଷ୍ଣୁ ସମାଜର ଭିତ୍ତିଭୂମି ପ୍ରତିଷ୍ଠା କରିବ । ଏହା କେବଳ ଜୀବନ ଧାରଣର ଏକମାତ୍ର ଲକ୍ଷ୍ୟ ହୋଇ ଗଠନମୂଳକ ଚିନ୍ତାଧାରା ଓ ନିଃସ୍ୱାର୍ଥପର ସେବା ସ୍ରୋତରୁ ବିଚ୍ଛିନ୍ନ ହୋଇଯିବ । ଆଧାତ୍ମିକ ଜ୍ଞାନ ସମାଜ ଗଠନରେ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ଏହି ଶିକ୍ଷାର ବିଶେଷତ୍ୱ ଏହିକି ଯେ, ବିପଥଗାମୀ ବ୍ୟକ୍ତି ଓ ସମାଜକୁ ଅଙ୍ଗୁଳି ନିର୍ଦ୍ଦେଶପୂର୍ବକ ସତ୍‌ମାର୍ଗୀ ହେବାପାଇଁ ବାରମ୍ବାର ତାଗିଦ୍ କରେ, ବିବେକାନୁମୋଦିତ, କାର୍ଯ୍ୟ କରିବାକୁ ପ୍ରବର୍ତ୍ତାଏ । କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟକୁ ନିୟନ୍ତ୍ରିତ କରି ଯୁଗ ନିର୍ମାଣର ସ୍ୱପ୍ନ ଦେଖାଏ । କନ୍ଧକବି ଅନ୍ଧ ଭୀମଭୋଇ ସଦ୍‌ଗୁରୁ ପାଦପଦ୍ମରେ ପ୍ରତିକ୍ଷଣେ ଚିତ୍ତ ନିବେଶ କରିବାକୁ ଯାଇ କହିଛନ୍ତି -

ଅନେକ କର୍ମରେ ଥାଉ ପଛେ ସେହୁ
ଗୁରୁ ପାଦେ ରଖୁ ଚିତ୍ତ ।
ସଦ୍‌ଗୁରୁ ପାଦେ ସେବା ରଖିଥିଲେ
ମୋକ୍ଷ ହେବ ପରାପତ ॥

ଜିଲ୍ଲା ପଶୁପାଳନ ଓ ପଶୁ ଚିକିତ୍ସା
କାର୍ଯ୍ୟାଳୟ, ଢେଙ୍କାନାଳ

---

# ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ୍ୟ ସ୍ୱରୋଜଗାର ଯୋଜନା

ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଥିବା ଅନୁସୂଚିତ ଜାତିର ମହିଳାମାନଙ୍କୁ ଆତ୍ମନିଯୁକ୍ତି ଓ ସ୍ୱରୋଜଗାରକ୍ଷମ କରାଇବା ଉଦ୍ଦେଶ୍ୟରେ ସ୍ୱର୍ଣ୍ଣଜୟନ୍ତୀ ଗ୍ରାମ୍ୟ ସ୍ୱରୋଜଗାର ଯୋଜନା ଓଡ଼ିଶା ଅନୁସୂଚିତ ଜାତି / ଜନଜାତି ଉନ୍ନୟନ ଅର୍ଥ ନିଗମ ଦ୍ୱାରା ରାଜ୍ୟରେ କାର୍ଯ୍ୟକାରୀ ହେଉଅଛି ।

ଏହି ଯୋଜନାରେ ୧୮ରୁ ୫୦ ବର୍ଷ ବୟସ ଭିତରେ ଥିବା ଅନୁସୂଚିତ ଜାତିର ମହିଳା ଗୋଷ୍ଠୀଙ୍କୁ ବିଭିନ୍ନ ପ୍ରକାରର ଯୋଜନା ଯଥା- ଗୋ-ମହିଷାଦି ପଶୁପାଳନ, ମତ୍ସ୍ୟ ଚାଷ, ଫଳଚାଷ, କ୍ଷୁଦ୍ର ବ୍ୟବସାୟ, ଧନ୍ଦାମୂଳକ କାର୍ଯ୍ୟ ଏବଂ କୁଟୀରଶିଳ୍ପ ପାଇଁ ନିଗମ ୭ ପ୍ରତିଶତ ସୁଧରେ ୩ ବର୍ଷ ପାଇଁ ହିତାଧିକାରୀ ଗୋଷ୍ଠୀଙ୍କୁ ଋଣ ପ୍ରଦାନ କରିଥାଏ ।

ଜାନୁଆରୀ ୨୦୦୫ ମସିହା ସୁଦ୍ଧା ଏହି ଯୋଜନା ଦ୍ୱାରା ୨୧୫ ଗୋଟି ହିତାଧିକାରୀ ଗୋଷ୍ଠୀଙ୍କ ପାଇଁ ନିଗମ ୧୦.୭୫ ଲକ୍ଷ ଟଙ୍କାର ସହାୟତା ରାଶି ପ୍ରଦାନ କରିଛି ବୋଲି ଅନୁସୂଚିତ ଜାତି/ଜନଜାତି ଉନ୍ନୟନ ଅର୍ଥ ସମବାୟ ନିଗମ ସୂତ୍ରରୁ ପ୍ରକାଶ ।

# ମାନବିକ ଅଧିକାର ଓ ମହାତ୍ମା ଗାନ୍ଧୀ

ବିଜୟ କୁମାର ଦାଶ

ମାନବିକ ଅଧିକାର କହିଲେ ସାଧାରଣତଃ ଜଣେ ବ୍ୟକ୍ତିର କେତେକ ସର୍ବନିମ୍ନ ଅଧିକାରକୁ ବୁଝାଇଥାଏ, ଯାହା ତାହାର ସାମାଜିକ ସ୍ଥିତି ପାଇଁ ମୌଳିକ ଏବଂ ଅପରିହାର୍ଯ୍ୟ ଅଟେ । ମିଳିତ ଜାତିସଂଘର ମାନବିକ ଅଧିକାରର ଘୋଷଣାନାମାରେ କୁହାଯାଇଛି ଯେ, ପ୍ରତ୍ୟେକ ବ୍ୟକ୍ତି ଜନ୍ମରୁ ମୁକ୍ତ ଅଟେ ଏବଂ ଅଧିକାର ଓ ସମ୍ମାନରେ ସମାନ ଅଟନ୍ତି । କୌଣସି ପ୍ରକାର ଜାତି, ବର୍ଣ୍ଣ, ଲିଙ୍ଗ, ଭାଷା, ଧର୍ମ, ସଂପତ୍ତି, ଜନ୍ମଗତ ବୈଷମ୍ୟ, ରାଜନୈତିକ, ଜାତୀୟ ଓ ସାମାଜିକ ଅବସ୍ଥାର ଉର୍ଦ୍ଧ୍ୱରେ ପ୍ରତିଟି ବ୍ୟକ୍ତି ସମସ୍ତ ଅଧିକାର ଏବଂ ସ୍ୱାଧୀନତା ଉପଭୋଗ ପାଇଁ ହକ୍‌ଦାର ଅଟେ । ଯୁଗପୁରୁଷ ମହାତ୍ମା ଗାନ୍ଧୀ ବିଶ୍ୱର ଜଣେ ଅନନ୍ୟ ମାନବିକ ଅଧିକାରର ପ୍ରବକ୍ତା, ସଂଗ୍ରାମୀ ଏବଂ ରକ୍ଷକ (Protector) ଭାବରେ ପରିଚିତ ହୋଇଛନ୍ତି । ମହାତ୍ମାଙ୍କର ପ୍ରଥମେ ଦକ୍ଷିଣଆଫ୍ରିକାରେ କାର୍ଯ୍ୟାବଳୀ ଏବଂ ପରବର୍ତ୍ତୀ କାଳରେ ଭାରତରେ ମାନବିକ ଅଧିକାରରୁ ବଞ୍ଚିତ ହୋଇଥିବା ଲକ୍ଷ ଲକ୍ଷ ଜନତାଙ୍କ ପାଇଁ ସେ ନିରାଶାର ଅନ୍ଧାର ମଧ୍ୟରେ ଆଶାର ଉଜ୍ଜ୍ୱଳ ଆଲୋକବର୍ତ୍ତିକା ହୋଇଥିଲେ । ନିଷ୍ପେଷିତ, ନୀରବ, ସ୍ଥାଣୁ ଜନତାଙ୍କୁ ଉଜ୍ଜୀବିତ କରିବା ପାଇଁ ସେ ସଙ୍ଗଠିତ ଆନ୍ଦୋଳନ ଆରମ୍ଭ କରିଥିଲେ । ଜନତାଙ୍କୁ ନିର୍ଭୟ ହୋଇ ସେମାନଙ୍କର ଅଧିକାର ପାଇଁ ଦୃଢ଼ତାର ସହ ସଂଘର୍ଷ କରିବାକୁ ସେ ଆହ୍ୱାନ ଦେଇଥିଲେ ।



ପ୍ରିଟୋରିଆ ଯିବା ବାଟରେ ନାଟାଲ୍‌ର ରାଜଧାନୀ ମରିତ୍ସ୍‌ବର୍ଗଠାରେ ଗାନ୍ଧିଜୀଙ୍କୁ ଟ୍ରେନ୍‌ରୁ ବାହାର କରି ଦେବା ଏକ ଉଲ୍ଲେଖନୀୟ ଘଟଣା ଥିଲା । ଗାନ୍ଧିଜୀଙ୍କ ନିକଟରେ ପ୍ରଥମ ଶ୍ରେଣୀର ଟିକେଟ ଥିଲେ ମଧ୍ୟ ସେ କୃଷ୍ଣକାୟ ହୋଇଥିବାରୁ ତାଙ୍କୁ ରେଳଗାଡ଼ିର ଶେଷ ଡବାରେ ଯିବାକୁ ବାଧ କରାଯାଇଥିଲା । କିନ୍ତୁ ଗାନ୍ଧିଜୀ ପ୍ରଥମ ଶ୍ରେଣୀ ଡବାରେ ଯିବା ନିଷ୍ପତ୍ତିରେ ଅଟଳ ରହିବାରୁ ତାଙ୍କୁ ପୁଲିସ୍ ଧକ୍କା ମାରି ରେଳଡବାରୁ ଓହ୍ଲାଇ ଦେଇଥିଲା । ତା'ପରେ ରେଳଗାଡ଼ି ଷ୍ଟେସନ୍ ଛାଡ଼ି ଦେଇଥିଲା । ଷ୍ଟେସନ୍‌ରେ ଫୋପଡ଼ା ହୋଇଥିବା ଜିନିଷପତ୍ରସବୁ ରେଳ କର୍ମଚାରୀମାନେ କେଉଁଠି ରଖିଥାନ୍ତି ଗାନ୍ଧିଜୀ ସେ କଥା ଜାଣି ନଥାନ୍ତି । କେବଳ ତାଙ୍କର ହ୍ୟାଣ୍ଡବ୍ୟାଗ୍‌ଟି ତାଙ୍କପାଖରେ ଥାଏ । ସେତେବେଳେ ଶୀତଦିନ । ଦକ୍ଷିଣ ଆଫ୍ରିକାର ମରିତ୍ସ୍‌ବର୍ଗ ଉଚ୍ଚ ଅଞ୍ଚଳରେ ଥିବାରୁ ସେଠାରେ ପ୍ରବଳ ଶୀତ ପଡ଼ିଥାଏ । ଗାନ୍ଧିଜୀ ଷ୍ଟେସନ୍‌ର ବିଶ୍ରାମ କକ୍ଷରେ ଏକୁଟିଆ ଅନ୍ଧାରରେ ବସି ଶୀତରେ ଥରୁଥାନ୍ତି । ତାଙ୍କର ଓଭର୍‌କୋଟ୍ ଜିନିଷ ବ୍ୟାଗ୍‌ରେ ଥିଲା କିନ୍ତୁ ପୁଣି ଅପମାନ ଆଶଙ୍କାରେ ଗାନ୍ଧିଜୀ ନିଜ ଜିନିଷ ମାଗିବାର ସାହସ କରିପାରୁ ନଥିଲେ । ଦୁଃଖିତ ଏବଂ ଅପମାନିତ ଗାନ୍ଧିଜୀ ଗଭୀର ରାତିରେ ସେହି ବିଶ୍ରାମ କକ୍ଷରେ ବସି ନିଜ କର୍ତ୍ତବ୍ୟ କଥା ଚିନ୍ତା କରୁଥିଲେ । ନିଜର ଆତ୍ମଜୀବନୀ 'ସତ୍ୟର ପ୍ରୟୋଗ'ରେ ଗାନ୍ଧିଜୀ ଲେଖିଛନ୍ତି, 'ମୁଁ ମୋର ଅଧିକାର ପାଇଁ ଲଢ଼ିବି ନଚେତ୍ ମୋ ଦେଶକୁ ଫେରିଯିବି । ମୋକଦ୍ଦମା ଛାଡ଼ି ପଳାଇବା କାପୁରୁଷତା ହେବ । ମୋ ଉପରେ ଯେଉଁ ଅତ୍ୟାଚାର କରାଗଲା, ତାହା ଗଭୀରରେ ଥିବା ଏକ ମହାରୋଗର ଲକ୍ଷଣ ମାତ୍ର, ସେ ମହାରୋଗ ହେଲା 'ରଙ୍ଗ ଦ୍ୱେଷ, କଳା-ଗୋରା ଭେଦ । ଏହି ରୋଗକୁ ଦୂର କରିବା ପାଇଁ ମୁଁ ମୋର ସମସ୍ତ ଶକ୍ତିର ଉପଯୋଗ କରିବି ଏବଂ ସମସ୍ତ ଦୁଃଖ କଷ୍ଟ ସହି ଏହି ବର୍ଣ୍ଣ ବିଦ୍ୱେଷକୁ ବିରୋଧ କରିବି ।' ତେଣୁ ଗାନ୍ଧିଜୀଙ୍କର ଏହି ପ୍ରଥମ ଦୁଃଖଦ ଅନୁଭୂତି ତାଙ୍କୁ ବ୍ୟକ୍ତିର ସମାନତାର ଅଧିକାରରୁ ଜାତି ବା ବର୍ଣ୍ଣ ଭିତ୍ତିରେ ବଂଚିତ କରାଯିବା ସଂପର୍କରେ ଚିନ୍ତା କରିବାକୁ ବାଧ୍ୟ କରିଥିଲା । ଗାନ୍ଧିଜୀଙ୍କୁ ଜଣେ ସାଧାରଣ ଯୁବକରୁ ସାମାଜିକ ନ୍ୟାୟ, ମାନବିକ ଅଧିକାର ଏବଂ ଜାତିଗତ ବୈଷମ୍ୟ ବିରୁଦ୍ଧରେ ଅହିଂସା ସଂଗ୍ରାମ ପାଇଁ ପରିବର୍ତ୍ତନ କରିବାରେ ତାଙ୍କର ଦକ୍ଷିଣଆଫ୍ରିକାର ରହଣିକାଳ ଏକ ଗୁରୁତ୍ୱପୂର୍ଣ୍ଣ ସମୟ ଥିଲା । କାରଣ ଦକ୍ଷିଣଆଫ୍ରିକାରେ ପ୍ରବେଶ କରିବା ମାତ୍ରେ ହିଁ ସେ ଜାତିଗତ ବୈଷମ୍ୟର ଶିକାର ହୋଇଥିଲେ ।

ସେହିପରି ଅନ୍ୟ ଏକ ଘଟଣାରେ, ନାଟାଲ୍‌ର କୋର୍ଟରେ ଓକିଲ ଭାବରେ ଶପଥ ନେବା ଅବସରରେ ପ୍ରଧାନ ବିଚାରପତିଙ୍କ ଦ୍ୱାରା ନିଜ ମୁଣ୍ଡର ପଗଡ଼ି ବାହାର କରି ଦେବାର ଆଦେଶ ଦ୍ୱାରା ଗାନ୍ଧିଜୀ ଅପମାନିତ ହୋଇଥିଲେ । 'ବର୍ଣ୍ଣ' ଦ୍ୱେଷରେ ଭାରତୀୟଙ୍କ ପ୍ରତି ହେଉଥିବା ଅପମାନ, ଅତ୍ୟାଚାରର ଗାନ୍ଧିଜୀ ନିଜେ ଶରବ୍ୟ ହେବାରୁ ତାଙ୍କର ଭାରତୀୟମାନଙ୍କ ପ୍ରତି ସମବେଦନା ତୀବ୍ର ହୋଇ ଉଠିଥିଲା । ଏପରି ଅବସ୍ଥାରେ ପରିବର୍ତ୍ତନ ଆଣି ଭାରତୀୟମାନେ କିପରି ସେମାନଙ୍କର ଅଧିକାର ଓ ଆତ୍ମସମ୍ମାନ ପାଇପାରିବେ ସେମାନଙ୍କ ପାଇଁ ସେ ଚିନ୍ତିତ ହୋଇପଡ଼ିଥିଲେ । ଗାନ୍ଧିଜୀ ନିଜ ଆତ୍ମକଥାରେ ସେଦିନର ଅନୁଭୂତି ସଂପର୍କରେ ଲେଖିଛନ୍ତି, 'ମୁଁ ମୋର ସୀମା ବୁଝିପାରିଲି । ଡର୍‌ବାନ୍‌ର ମାଜିଷ୍ଟ୍ରେଟ୍‌ଙ୍କ ଇଜ୍‌ଲାସ୍‌ରେ ଯେଉଁ ପଗଡ଼ି ପିନ୍ଧିବାକୁ ମୁଁ ଆଗ୍ରହ ପ୍ରକାଶ କରୁଥିଲି, ଏଠାରେ ସେହି ପଗଡ଼ି ବାହାର କରି ଦେଲି । ଏପରି ପଗଡ଼ି ବାହାର କରିଦେବା ବିରୁଦ୍ଧରେ ଯୁକ୍ତି ଥିଲା ସତ୍ୟ, ମାତ୍ର ମୁଁ ଚିନ୍ତା କରିଥିଲି ଏହାଠାରୁ ବଳି କେତେ କଠୋର ଲଢ଼େଇ ମୋତେ କରିବାକୁ ପଡ଼ିବ । ସେଥିପାଇଁ ମୋର ଶକ୍ତି ସଂଚୟ କରିବାର କଥା ପଗଡ଼ି ବାନ୍ଧିବାକୁ ଜିଦ୍ ଧରିଲେ ସେସବୁ ଲଢ଼େଇରେ ପ୍ରତିବନ୍ଧକ ସୃଷ୍ଟି ହେବ ।'

ଏହିସବୁ ଘଟଣା ଗାନ୍ଧିଜୀଙ୍କୁ ଦୁର୍ବଳ କରିବା ପରିବର୍ତ୍ତେ ଅଧିକ ଦୃଢ଼ କରିଥିଲା । ସେ ଦକ୍ଷିଣଆଫ୍ରିକାରେ ରହି ସାମାଜିକ ନ୍ୟାୟ ଓ ମୌଳିକ ମାନବିକ ଅଧିକାର ପାଇଁ ସଂଘର୍ଷ କରିବାକୁ ଦୃଢ଼ ସଂକଳ୍ପ ନେଇଥିଲେ ଏବଂ ପରବର୍ତ୍ତୀ ସମୟରେ ସେ ଏଥିରେ ସଫଳ ହୋଇଥିଲେ । ସମସ୍ତ ଅନ୍ୟାୟକୁ ବିରୋଧ କରିବା ପାଇଁ ସେ ଅନେକ ଅହିଂସା ମାର୍ଗ ଅବଲମ୍ବନ କରିଥିଲେ । ମାନବର ସ୍ୱାଭିମାନ ଏବଂ ସ୍ୱାଧୀନତା ପାଇଁ ଗାନ୍ଧିଜୀଙ୍କ ଦ୍ୱାରା ଆରମ୍ଭ ହୋଇଥିବା ସଂଗ୍ରାମରେ କେବଳ ଯେ ସ୍ୱାଧୀନତା ସଂଗ୍ରାମୀମାନେ ଗଭୀର ଭାବେ ପ୍ରଭାବିତ ହୋଇଥିଲେ ତା' ନୁହେଁ ବରଂ ଏହାସହ ସମଗ୍ର ବିଶ୍ୱରେ ମାନବିକ ଅଧିକାର ସପକ୍ଷବାଦୀ କର୍ମୀମାନେ ମଧ୍ୟ ଉତ୍ସାହିତ ହୋଇଥିଲେ । ସେହିପରି ଜାତୀୟ ଆନ୍ଦୋଳନରେ ଗାନ୍ଧିଜୀଙ୍କର ଅସ୍ପୃଶ୍ୟତା ଉଚ୍ଛେଦ, ମନ୍ଦିର ଏବଂ ଦେବ ଉପାସନା ପୀଠମାନଙ୍କରେ ହରିଜନମାନଙ୍କର ପ୍ରବେଶ ଅଧିକାର ଆଦି ସାମାଜିକ କାରଣ ପାଇଁ ସଂଗ୍ରାମ ଭାରତରେ ମାନବିକ ଅଧିକାର ଆନ୍ଦୋଳନର ସର୍ବପ୍ରଥମ ମାଇଲଖୁଣ୍ଟ ଅଟେ ।

ମାନବିକ ଅଧିକାର ଓ ନ୍ୟାୟ ହାସଲ କ୍ଷେତ୍ରରେ ଗାନ୍ଧିଜୀଙ୍କର ସତ୍ୟାଗ୍ରହ ଏକ ପ୍ରମୁଖ ଅସ୍ତ୍ର ଥିଲା । ଦକ୍ଷିଣଆଫ୍ରିକାରେ ଭାରତୀୟମାନଙ୍କର ଅଧିକାର ପାଇଁ ଆନ୍ଦୋଳନକୁ ଏକ ଅହିଂସା ମାର୍ଗରେ ନେବା ପାଇଁ ଗାନ୍ଧିଜୀ ଏକ ନୂଆ ଶବ୍ଦ ପ୍ରଥମଥର ପାଇଁ ପ୍ରୟୋଗ କରିଥିଲେ 'ସତ୍ୟାଗ୍ରହ' । ସେ କହୁଥିଲେ ଯେ ପ୍ରତିଦିନ ସକାଳେ ଆମେ ଏହି ସଂକଳ୍ପ ନେବା ଉଚିତ ଯେ ଆମେ ବିଶ୍ୱରେ କେବଳ ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାକୁ ଭୟ କରିବା ନାହିଁ । ବିଶ୍ୱରେ କାହାପ୍ରତି ମନ୍ଦ ଅଭିଳାଷକୁ ଆମେ ସହ୍ୟ କରିବା ନାହିଁ । କାହାର ଅନ୍ୟାୟକୁ ଆମେ ଭୟ କରିବା ଉଚିତ୍ ନୁହେଁ । ଆମେ ଅସତ୍ୟକୁ ସତ୍ୟ ଦ୍ୱାରା ଜୟ କରିବା ଏବଂ ଅସତ୍ୟକୁ ବିରୋଧ କରିବାକୁ ଆମେ ସମସ୍ତ ଯନ୍ତ୍ରଣାକୁ ମୃତ୍ୟୁ ପର୍ଯ୍ୟନ୍ତ ଧୈର୍ଯ୍ୟର ସହ ସହ୍ୟ କରିବା ।

ଗାନ୍ଧିଜୀ 'ପୂର୍ଣ୍ଣ ସ୍ୱରାଜ' ସଂପର୍କରେ ନିଜର ସ୍ପଷ୍ଟ ମତାମତ ଦେଇ କହିଛନ୍ତି ଯେ 'ପୂର୍ଣ୍ଣ'ର ଅର୍ଥ ହେଉଛି ରାଜା ଏବଂ ପ୍ରଜା, ଧନୀ ଜମିଦାର ଏବଂ ନିର୍ଦ୍ଧନ ଭୂମିହୀନ, ହିନ୍ଦୁ, ମୁସଲମାନ, ପାର୍ସି, ଖ୍ରୀଷ୍ଟିଆନ, ଜୈନ, ଶିଖ, ସମସ୍ତଙ୍କ ପାଇଁ ଜାତି, ଧର୍ମ ବା ଜୀବନ ଧାରଣର ମାନର ଊର୍ଦ୍ଧ୍ୱରେ ସମାନ ଅଧିକାର, ସୁବିଧା ସୁଯୋଗ । ଦକ୍ଷିଣଆଫ୍ରିକାର ଦୀର୍ଘ କୋଡ଼ିଏ ବର୍ଷରୁ ଊର୍ଦ୍ଧ୍ୱ ଏବଂ ଭାରତର ତିରିଶି ବର୍ଷକାଳ ଗାନ୍ଧିଜୀଙ୍କର ମାନବିକ ସ୍ୱାଭିମାନ ଏବଂ ଅଧିକାରର ଉନ୍ନତି ପାଇଁ ଉଦ୍ଦିଷ୍ଟ କାର୍ଯ୍ୟକ୍ରମ ମାନବ ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା । ବିଶ୍ୱରେ ବିଭିନ୍ନ କୋଣ ଅନୁକୋଣରେ ମାନବିକ ଅଧିକାର, ନ୍ୟାୟ ଏବଂ ଜାତି ଓ ବର୍ଣ୍ଣଗତ ବୈଷମ୍ୟ ବିରୁଦ୍ଧରେ ସଂଗ୍ରାମରତ ଅନେକ ପୁରୁଷ ଓ ମହିଳା ଗାନ୍ଧିଜୀଙ୍କ ପ୍ରଦର୍ଶିତ ମାର୍ଗରେ ଲକ୍ଷ୍ୟ ହାସଲ ପାଇଁ ଉଦ୍ୟମ କରି ସଫଳତା ହାସଲ କରିଛନ୍ତି । ଆଫ୍ରିକାର ଗାନ୍ଧୀ କୁହାଯାଉଥିବା ନେଲ୍‌ସନ୍ ମାଣ୍ଡେଲାଙ୍କର ଦୀର୍ଘ ସଂଗ୍ରାମ ଏକ ଉଲ୍ଲେଖନୀୟ ଉଦାହରଣ ଅଟେ । ଦକ୍ଷିଣଆଫ୍ରିକାରୁ ବର୍ଣ୍ଣବୈଷମ୍ୟବାଦର ବିଲୋପ କରି କୃଷ୍ଣକାୟ ବ୍ୟକ୍ତିଙ୍କୁ ସେମାନଙ୍କର ଅଧିକାର ପ୍ରଦାନ କରିବାରେ ମାଣ୍ଡେଲାଙ୍କର ଗାନ୍ଧିଜୀଙ୍କ ପ୍ରଦର୍ଶିତ ମାର୍ଗ ଅନୁସରଣ କରିବାର ସଫଳତା ସର୍ବଜନବିଦିତ ଅଟେ । ଏକଦା ମାଣ୍ଡେଲା ତାଙ୍କ ଭାଷଣରେ କହିଥିଲେ, ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତୀୟ ଜାତୀୟ କଂଗ୍ରେସର ଏକ ଆନ୍ତର୍ଜାତିକ ଦୃଷ୍ଟିକୋଣ ବିକଶିତ ହୋଇଥିଲା । ଅନ୍ୟାନ୍ୟ ରାଷ୍ଟ୍ରର ସ୍ୱାଧୀନତା ଆନ୍ଦୋଳନ ସହ ସଂପର୍କ ସ୍ଥାପନ ସମ୍ଭବ ହୋଇପାରିଥିଲା । ଉପନିବେଶବାଦ ଏବଂ ଜାତିବାଦ ବର୍ଣ୍ଣବୈଷମ୍ୟ ସାରା ବିଶ୍ୱରେ ଉଚ୍ଛେଦ ହୋଇଥିଲା । ମିଳିତ ଜାତିସଂଘର ମାନବିକ ଅଧିକାରର ଘୋଷଣାନାମାରେ ମଧ ମହାତ୍ମା ଗାନ୍ଧୀଙ୍କ ଚିନ୍ତାଧାରାର ପ୍ରତିଫଳନ ଦେଖିବାକୁ ମିଳିଥାଏ ।

ମାନବିକ ଅଧିକାରର ପ୍ରମୁଖ ପ୍ରବକ୍ତା ମହାତ୍ମା ଗାନ୍ଧୀଙ୍କର ରାଷ୍ଟ୍ର ଭାରତବର୍ଷରେ ମାନବିକ ଅଧିକାରର ସୁରକ୍ଷା ପାଇଁ ସରକାରଙ୍କ ଦ୍ୱାରା ମାନବାଧିକାର ଆୟୋଗ ପ୍ରତିଷ୍ଠା କରାଯାଇଛି । ସମାଜରେ ପ୍ରତିଟି ବ୍ୟକ୍ତିର ଯେପରି ମାନବିକ ଅଧିକାର କ୍ଷୁଣ୍ଣ ନହୁଏ ସେଥିପାଇଁ ସତର୍କ ଦୃଷ୍ଟି ଦିଆଯାଉଛି । ମାନବାଧିକାର ଆନ୍ଦୋଳନ କ୍ଷେତ୍ରରେ ଭାରତର ଏକ ସମୃଦ୍ଧ ଇତିହାସ ରହିଛି । ମହାତ୍ମାଙ୍କ ଦ୍ୱାରା ପ୍ରଦର୍ଶିତ ସତ୍ୟ ଓ ଅହିଂସାର ମାର୍ଗ ଅନୁସରଣ କରି ଏକ ଦୃଢ଼, ସ୍ୱଚ୍ଛ ସଂକଳ୍ପ ଶକ୍ତି ଦ୍ୱାରା ହିଁ ସମାଜର ପ୍ରତିଟି ବ୍ୟକ୍ତିକୁ ତା'ର ମାନବିକ ଅଧିକାରର ସୁରକ୍ଷା ଦେବା ସମ୍ଭବ ହୋଇପାରିବ ।

ଅଧ୍ୟାପକ, ଅର୍ଥନୀତି ବିଭାଗ
ଆଞ୍ଚଳିକ ପଞ୍ଚାୟତ ମହାବିଦ୍ୟାଳୟ
ସୁଜନପୁର, ଯାଜପୁର- ୭୫୫୦୧୩

# ମହାତ୍ମା ଗାନ୍ଧୀଙ୍କ ମାନସ ଗୁରୁ

ପରଶୁରାମ ଦାସ

ମହାତ୍ମା ଗାନ୍ଧୀଙ୍କର 'ଆଇନ ଅମାନ୍ୟ ଆନ୍ଦୋଳନ'ଠାରୁ ବହୁ ଦୂରରେ, ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ, ଯୁକ୍ତରାଷ୍ଟ୍ର ଆମେରିକାର ଏକ ଦୂରତମ ଅଞ୍ଚଳରେ ପଡ଼ି ରହିଛି ବିସ୍ମୃତ ଏକ ମୁହୂର୍ତ୍ତ ... ଅର୍ଦ୍ଧ ଉନ୍ମାଦ ବୋଲି ପରିଗଣିତ ଜଣେ ଅବାସ୍ତବ, ଅର୍ଥାତ୍ ଆଦର୍ଶବାଦୀ ମଣିଷର ଦିନକର ଏକକ ପ୍ରତିବାଦ ରାଷ୍ଟ୍ରର ପ୍ରଚଣ୍ଡ ଶକ୍ତି ବିରୁଦ୍ଧରେ ଜଣେ ଅସ୍ତ୍ରହୀନ ମଣିଷର ଆତ୍ମିକ ପ୍ରତିବାଦ ... ମଣିଷ ତାଙ୍କୁ ତୁଚ୍ଛ ବୋଲି ଉପହାସ କରିଥିଲା, କିନ୍ତୁ ମଣିଷର ଭାଗ୍ୟ ବିଧାତା ତାଙ୍କ ନିଜସ୍ୱ ଟାଇମ୍‌ଟେବୁଲ୍ ଅନୁସାରେ, ସେହି ଜଣେ ଲୋକର ଗୋଟିଏ ଦିନର ପ୍ରତିବାଦକୁ ଆଉ ଜଣେ ବିଚିତ୍ର ମଣିଷ ମଧ୍ୟରେ ସୃଷ୍ଟି କଲେ, ଇତିହାସର ପ୍ରଚଣ୍ଡତମ ଏକ ଭୂମିକମ୍ପ ।

ଆଜି ସିଭିଲ୍ ଡିସ୍‌ଓବିଡିଏନ୍ସ ବା ଆଇନ ଅମାନ୍ୟ କଥାଟା ଉପହାସ ବା ରସିକତାର ବସ୍ତୁ ନୁହେଁ, ଏଟମ୍ ବମ୍ ପରି ଏକାନ୍ତ ବାସ୍ତବ ଓ ମାରାତ୍ମକ ... ସଂଗ୍ରାମୀ ମଣିଷ ହସ୍ତରେ, ପ୍ରଚଣ୍ଡତମ ଶକ୍ତି !!

ମହାତ୍ମା ଗାନ୍ଧୀଙ୍କ ଜନ୍ମର କୋଡ଼ିଏ ବର୍ଷ ପୂର୍ବେ ଆମେରିକା ଯୁକ୍ତରାଷ୍ଟ୍ରରେ ଖଣ୍ଡିଏ ଛୋଟ ପୁସ୍ତିକା ପ୍ରକାଶିତ ହୁଏ । ପୁସ୍ତିକାଟିର ନାମ 'Civil Disobedience' (ସିଭିଲ୍ ଡିସ୍‌ଓବିଡିଏନ୍ସ) । ଲେଖକ- ଥୋରୋ, ହେନରୀ ଡେଭିଡ୍ ଥୋରୋ ।

ବହିଟି ଓ ତା'ର ପ୍ରତିପାଦ୍ୟ ବିଷୟକୁ ସେହି ସମୟର ଯୁକ୍ତରାଷ୍ଟ୍ର ଆମେରିକାର ଶାସକ ସମ୍ପ୍ରଦାୟ ଜଣେ ଉନ୍ମାଦ ଦାର୍ଶନିକର ପାଗଳାମିର ଖିଆଲ ବୋଲି ଗ୍ରହଣ କରିଥିଲେ । ବହିଟି ପ୍ରକାଶ ହେବାର କେଇ ବର୍ଷ ମଧ୍ୟରେ ବହିଟିର ସ୍ମୃତି ସାଧାରଣ ପାଠକମାନଙ୍କ ମନରୁ ବି ବିଲୁପ୍ତ ହୋଇ ଯାଇଥିଲା । ସେଦିନ ସୁଦୂରତମ କଳ୍ପନାରେ ବି କେହି ଭାବି ପାରୁନଥିଲେ ଯେ, ସେହି ନବଗଠିତ ଯୁଗ୍ମ ଶବ୍ଦଟି କି ରକମ ମାରାତ୍ମକ ସମ୍ଭାବନା ନେଇ ଛପା ଅକ୍ଷରରେ ଆତ୍ମପ୍ରକାଶ କରିଥିଲା । ସାତସମୁଦ୍ର-ତେରନଦୀ-ପାରିରେ ଆମେରିକାର କନ୍‌କର୍ଡ଼ ସହର ନିକଟରେ ଏକ ନିର୍ଜନ ବନରେ ଯେଉଁ କ୍ଷୁଦ୍ର-ବୀଜଟି ସେଦିନ ପୃଥିବୀର ଆଲୋକ-ବାୟୁରେ ଆସି ପଡ଼ିଥିଲା, ସେଦିନ କିଏ ଜାଣିଥିଲା ଯେ, ସୁଦୂରତମ ଦୂରରେ ଏହି ଭାରତର ମାଟିରେ ସେହି ବୀଜରୁ ଜନ୍ମ ନେବ, ଯଦୁବଂଶ ଧ୍ୱଂସକାରୀ ଲୌହ-ଚୂର୍ଣ୍ଣ-ଜାତ ଏକ ବିରାଟ ନବଶକ୍ତି, ଜଗତର ସର୍ବବୃହତ୍ ସାମ୍ରାଜ୍ୟର ଭିତ୍ତି ମୂଳ ପର୍ଯ୍ୟନ୍ତ ଥରହର କମ୍ପାଇବ !!

କନ୍‌କର୍ଡ଼ ସହର ନିକଟରେ ବିରାଟ ପାଇନ୍ ବନ । ସେହି ନିର୍ଜନ ବନ ମଧ୍ୟରେ ପାଇନ୍ ବୃକ୍ଷ ବେଷ୍ଟିତ ଏକ ଜଳାଶୟ । ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଦିନେ ଜଣେ ଲୋକ ବୁଲି ବୁଲି ସେହି ହ୍ରଦ ନିକଟରେ ଆସି ଠିଆ ହେଲେ । ଏହିଠାରେ ଏହି ନିର୍ଜନ ପାଇନ୍ ବନର ଏହି ହ୍ରଦ କୂଳରେ ଗଢ଼ିବେ ତାଙ୍କର ବାସଭବନ ।

ନିଜ ହାତରେ ଗଢ଼ିଲେ ଗୋଟିଏ ଛୋଟ କାଠର ଘର । ନିକଟରେ କିଛି ଜମି ନେଇ ନିଜ ହାତରେ ଚାଷ କଲେ । ତାଙ୍କର ବିଶ୍ୱାସ, ନିଜର ପେଟଟି ପାଇଁ ଯେତେଟା ପରିଶ୍ରମ (କାୟିକ) କରିବା ଆବଶ୍ୟକ, ତା'ଠାରୁ ଅଧିକ ପରିଶ୍ରମ କରିବାର ଅର୍ଥ ହେଉଛି, ଜୀବନକୁ ନଷ୍ଟ କରିବା ଏବଂ ଗ୍ରାସାଚ୍ଛାଦନ ପାଇଁ ମଣିଷକୁ ପ୍ରତିଦିନ ଅତି ଅଳ୍ପ ସମୟ ନିୟୋଜିତ କଲେ ଚଳିଯିବ । ପରେ ସାରାଦିନର ପ୍ରକାଣ୍ଡ ଅବସର ମଧ୍ୟରେ ମଣିଷ ମନ ଆନନ୍ଦରେ ତା'ର ନିଜସ୍ୱ ଆନନ୍ଦ ଲୋକ ସୃଜନ କରିପାରେ !

ସେହି ବନର ନିର୍ଜନତାରେ ଭଦ୍ରଲୋକ ଆପଣା ମନେ ପ୍ରକୃତି ନବନବ ବିସ୍ମୟର ସନ୍ଧାନରେ ଘୂରି ବୁଲୁଥିଲେ, ଲେଖୁଥିଲେ, ମଝିରେ ମଝିରେ ସହରରୁ ଯେଉଁ ଦୁଇ-ଚାରିଜଣ ବନ୍ଧୁ ଆସୁଥିଲେ, ସେମାନଙ୍କ ସହିତ ଗଳ୍ପ-ଆଲୋଚନା କରି ଦିନ କଟାଉଥିଲେ । ଦୈବାତ୍ ଗୋଟାଏ ଦୁଇଟା ଜିନିଷ ପାଇଁ ତାଙ୍କୁ ସହରକୁ ଯିବାକୁ ପଡୁଥିଲା ଏବଂ ଏହି ଜିନିଷ ମଧ୍ୟରେ ଯେଉଁଟି ସବୁଠାରୁ ଅଧିକ ପ୍ରୟୋଜନ ଥିଲା, ତାହା ହେଉଛି ଜୋତା ମରାମତି କରାଇବା । ଭଦ୍ରଲୋକଙ୍କର ସାଂସାରିକ ବଜେଟ୍‌ରେ ଜୋତା ଦ୍ରବ୍ୟଟି ଥିଲା ଏକ ପ୍ରଧାନ ଆଇଟମ୍ । ମରାମତ କରି କରି ଯୋଡ଼ାଏ ଜୋତାକୁ ସେ ଅକ୍ଷୟ-ଅଦ୍ୱିତୀୟ କରି ରଖିବାକୁ ଚାହୁଁଥିଲେ । ଏହା ତାଙ୍କ ବିଶେଷ ଅର୍ଥନୀତିର ବି ଗୋଟାଏ ପ୍ରକରଣ ଥିଲା । ଏହି ଭଦ୍ରଲୋକଙ୍କ ନାମ ହେଉଛି - ହେନରୀ ଡେଭିଡ୍ ଥୋରୋ । ଯେଉଁ ଚରିତ୍ରର ମଣିଷ ଥିଲେ ମହାତ୍ମା ଗାନ୍ଧୀ, ଥୋରୋ ଥିଲେ ସେହି ଚରିତ୍ରର ତାଙ୍କର ଜଣେ ପୂର୍ବପୁରୁଷ, କହିବାକୁ ଗଲେ ଏକଇ ଗୋତ୍ର ।

ମହାତ୍ମା ଗାନ୍ଧୀଙ୍କ ପରି ଥୋରୋଙ୍କର ରାଷ୍ଟ୍ର ସମ୍ବନ୍ଧେ, ରାଷ୍ଟ୍ର ଆଉ ବ୍ୟକ୍ତି ସମ୍ପର୍କ ସମ୍ବନ୍ଧେ ଏକ ନିଜସ୍ୱ ଧାରଣା ଥିଲା ଏବଂ ସେହି ଧାରଣା ପୋଥିଗତ ବା ଭାବଗତ ନଥିଲା । ସେହି ଧାରଣା ଅନୁଯାୟୀ ଥୋରୋ ନିଜର ପ୍ରତିଦିନର କାର୍ଯ୍ୟକ୍ରମକୁ ବି ନିୟମିତ କରୁଥିଲେ । ଥୋରୋଙ୍କ ଜୀବନ ନୀତିରେ ରାଜନୀତିର କୌଣସି ସ୍ଥାନ ନଥିଲା । ଅବିଶ୍ୱାସୀ ଯେପରି ଦୂରରୁ ମନ୍ଦିରକୁ ଦେଖେ, ଥୋରୋ ସେହିପରି ରାଷ୍ଟ୍ରଚିନ୍ତାକୁ ଅଥବା ରାଷ୍ଟ୍ରକୁ ଜୀବନ ପରିଧିର ବାହାରେ ରଖି ସମ୍ମାନ ଦେଖାଉଥିଲେ । ରାଷ୍ଟ୍ର ସହିତ ବ୍ୟକ୍ତିର ସମ୍ପର୍କ ଦୁଇଟି ବିଶେଷ ବିଷୟକୁ ଅବଲମ୍ବନ କରିଥାଏ । ଗୋଟାଏ ହେଉଛି - ଭୋଟ, ଅନ୍ୟଟି ହେଉଛି ଟ୍ୟାକ୍ସ । ସେ କୌଣସି ଦିନ ଭୋଟ ଦେଉ ନଥିଲେ । ଦ୍ୱିତୀୟଟିକୁ ସେ ନୀରବରେ ସ୍ୱୀକାର କରି ନେଉଥିଲେ କିନ୍ତୁ ଗୋଟାଏ ସୀମା ପର୍ଯ୍ୟନ୍ତ ! ରାଷ୍ଟ୍ର ଯେତେବେଳେ ଖୁସି ସେତେବେଳେ ଯେକୌଣସି ଟ୍ୟାକ୍ସ ଧାର୍ଯ୍ୟ କରିବ, ଆଉ ସେହି ମୁହୂର୍ତ୍ତରେ ସେ ତାହା ଦେବାକୁ ବାଧ୍ୟ, ଏକଥା ସେ ମାନୁ ନଥିଲେ । ସେଥିପାଇଁ ପ୍ରାଦେଶିକ ସରକାର ଯେତେବେଳେ ଗୀର୍ଜାର ସଂସ୍କାର ଓ ସଂରକ୍ଷଣ ପାଇଁ ମୁଣ୍ଡପିଛା ପ୍ରତ୍ୟେକ ନାଗରିକଙ୍କ ପାଇଁ କରଧାର୍ଯ୍ୟ କଲେ, ଥୋରୋ ପ୍ରତିବାଦ କଲେ, ଅର୍ଥାତ୍ ସେହି ପୋଲ୍ ଟ୍ୟାକ୍ସ ସେ ଦେଲେ ନାହିଁ ।

କର୍ତ୍ତୃପକ୍ଷ ବି ବିଶେଷ କୌଣସି ହାଙ୍ଗାମା ନକରି ବିଷୟଟିକୁ ଚପାଇ ଦେଲେ । ଦୁଇବର୍ଷ ପର୍ଯ୍ୟନ୍ତ ଥୋରୋ ପୋଲ୍ ଟ୍ୟାକ୍ସ ଦେଲେ ନାହିଁ । ଠିକ୍ ଏହି ସମୟରେ ହେଲା ମେକ୍ସିକୋର ଯୁଦ୍ଧ ଏବଂ ସେହି ସଙ୍ଗେ ସାରା ଯୁକ୍ତରାଷ୍ଟ୍ର ବ୍ୟାପୀ ମୁଣ୍ଡଟେକି ଉଠିଲା ପୁଣି କାଳନାଗୁଣୀ ପରି 'କ୍ରୀତଦାସ ପ୍ରଥା' । ମେକ୍ସିକୋ ଯୁଦ୍ଧର ଅର୍ଥ କ୍ରୀତଦାସ ପ୍ରଥାକୁ ଆହୁରି କାୟେମୀ କରି ଦକ୍ଷିଣର ଶେଷ ସୀମା ପର୍ଯ୍ୟନ୍ତ ବିସ୍ତୃତ କରିବା ।

ଥୋରୋ ରାଜନୀତିଠାରୁ ଆଉ ଦୂରରେ ରହିପାରିଲେ ନାହିଁ । କାରଣ ରାଜନୀତି ଅନ୍ୟାୟ ଭାବରେ ମାନବ ନୀତି ଉପରେ ଚାପି ବସିବାକୁ ଚାହିଁଛି । ଯେଉଁ ରାଷ୍ଟ୍ର ମଣିଷ କିଣାବିକା ଉପରେ ବଞ୍ଚିବାକୁ ଚାହେଁ । ପ୍ରତ୍ୟେକ ଲୋକର ଉଚିତ, ସେହି ରାଷ୍ଟ୍ରକୁ ଅସ୍ୱୀକାର କରିବା ।

ଥୋରୋଙ୍କ ମନପ୍ରାଣ ଉଦ୍‌ବେଳିତ ହୋଇ ଉଠିଲା । ଏହି ଅନ୍ୟାୟକାରୀ ରାଷ୍ଟ୍ର ବିରୁଦ୍ଧରେ ଅସ୍ତ୍ରହୀନ ବିଦ୍ରୋହରେ ନାଗରିକମାନଙ୍କ ଚେତନାକୁ ଉଦ୍‌ବୁଦ୍ଧ କରିବା ପାଇଁ ସେ ଏକ ଛୋଟ ପୁସ୍ତିକା ଲେଖିଲେ । ନାମ ଦେଲେ - 'Civil Disobedience' । ଏହି ପୁସ୍ତିକାରେ ତାଙ୍କ ଉଦ୍‌ଭାବିତ ଅସ୍ତ୍ରହୀନ ନୂଆ ବିଦ୍ରୋହର ତତ୍ତ୍ୱ ଓ ଉପାୟ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଲେଖିଲେ - 'ଯେଉଁ ଜାତି ଦିନେ ଘୋଷଣା କରିଥିଲା ଯେ, ସେ ହେବ ସ୍ୱାଧୀନତାର ଧାତ୍ରୀ, ସେହି ଜାତିର ଜନସଂଖ୍ୟାର ଛଅ ଭାଗର ଏକ ଭାଗ ଲୋକ ଯଦି କ୍ରୀତଦାସ ହୋଇ ରହିବାକୁ ବାଧ୍ୟ ହୁଅନ୍ତି ଏବଂ ସମଗ୍ର ଦେଶକୁ ଯଦି ସାମରିକ ଆଇନ ଜୋରରେ ନିସ୍ତବ୍ଧ କରି ରଖିବାକୁ ଚେଷ୍ଟା ହୁଏ, ତା'ହେଲେ ମୁଁ କହିବି, ଯେଉଁମାନେ ନିଜକୁ ଖାଣ୍ଟି ମଣିଷ ବୋଲି ପରିଚୟ ଦେବାକୁ ଚାହାନ୍ତି, ସେମାନଙ୍କର ଆଜି ଉଚିତ to rebel and revolutionise.

ସେ ଲେଖିଲେ, 'ଏହି ରାଷ୍ଟ୍ରର ପରିଚାଳନା ପାଇଁ ଯଦି କର ଦେବାକୁ ପଡ଼େ, ସେହି କର ଦେବାର ଅର୍ଥ ହେଉଛି, ଜଣେ ନିରୀହ ମଣିଷକୁ ହତ୍ୟା କରିବା ପାଇଁ ଅର୍ଥ- ସାହାଯ୍ୟ କରିବା । ଏପରି କ୍ଷେତ୍ରରେ ପ୍ରତ୍ୟେକ ନାଗରିକଙ୍କର ଉଚିତ, କର ଦେବା ବନ୍ଦ କରିବା । ଗାନ୍ଧୀଙ୍କର 'ନୋ ଟ୍ୟାକ୍ସ' ଆନ୍ଦୋଳନର ବୀଜ ।

ଏଭଳି ଉକ୍ତିକୁ କ୍ଷମା କରିପାରେ, ଏମିତି କୌଣସି ରାଷ୍ଟ୍ର ଆଜିବି ଗଠିତ ହୋଇନାହିଁ, ଯଦିଓ ଏହି ସିଭିଲ୍ ଡିସ୍‌ଓବିଡିଏନ୍ସ ଆନ୍ଦୋଳନ ଅତି ମୁଷ୍ଟିମେୟ ଲୋକଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । ଏହି ପୁସ୍ତିକା ପ୍ରକାଶିତ ହେବା ପରେ, ଥୋରୋଙ୍କର ପୋଲ୍‌ଟ୍ୟାକ୍ସ ନଦେବା ବିଷୟଟି ପ୍ରାଦେଶିକ ସରକାରଙ୍କ ପକ୍ଷରେ ଲକ୍ଷ୍ୟ ନକରିବା ସମ୍ଭବ ହେଲା ନାହିଁ ।

ନିର୍ଜନ ପାଇନ୍‌ବନର ବାସ ଭବନରୁ ଦିନେ ଥୋରୋଙ୍କୁ ସହରକୁ ଯିବାକୁ ପଡ଼ିଲା । ସେହି ଏକମାତ୍ର ପ୍ରୟୋଜନରେ ଜୋତା ମରାମତ ପାଇଁ ଛିଣ୍ଡା ଜୋତା ନେଇ ମୋଚି ଦୋକାନରେ ପହଞ୍ଚିବା ସଙ୍ଗେସଙ୍ଗେ ଥୋରୋ ଦେଖିଲେ, ପୁଲିସ୍‌ମାନେ ତାଙ୍କୁ ଘେରି ପଡ଼ିଛନ୍ତି । ରାଗରେ କ୍ଷିପ୍ତ ହୋଇ ଉଠିଲେ ଥୋରୋ । ସିଭିଲ୍ ଡିସ୍‌ଓବିଡିଏନ୍ସ ପ୍ରେରଣାରେ ସେତେବେଳକୁ ସତ୍ୟାଗ୍ରହ ଜନ୍ମ ହୋଇନଥିଲା । ପୁଲିସ୍‌ମାନେ ତାଙ୍କୁ ଧରି ନେଇ ଥାନା ହାଜତରେ ବନ୍ଦୀ କରି ରଖିଲେ ଏବଂ ତାଙ୍କର ଶାସ୍ତି ହେଲା ଗୋଟିଏ ରାତ୍ରୀ ହାଜତବାସ । ସକାଳେ ଯେତେବେଳେ ଥୋରୋଙ୍କୁ ଛାଡ଼ି ଦିଆଗଲା, ସେତେବେଳେ ସେହି ଥାନାର ଭାରପ୍ରାପ୍ତ କର୍ମଚାରୀଙ୍କୁ ଥୋରୋ ପ୍ରାୟ ମାରିବାକୁ ଉଠିଲେ । ସେହି କର୍ମଚାରୀ ପରେ କହିଥିଲେ, ସକାଳେ ଯେତେବେଳେ ଥୋରୋଙ୍କୁ ଛାଡ଼ି ଦିଆଗଲା, ସେତେବେଳେ ଥୋରୋ 'was mad as the devil' ।

'ସିଭିଲି ଡିସ୍‌ଓବିଡିଏନ୍ସ'ର ପ୍ରଥମ ପ୍ରଚାରକଙ୍କର ସେହି ଗୋଟାଏ ରାତ୍ରୀର ଶାସ୍ତି ମଧ୍ୟରେ ଐତିହାସିକ ଗୁରୁତ୍ୱ ପରିବର୍ତ୍ତେ ଦେଖାଯାଏ ଏକ ରଙ୍ଗମଞ୍ଚଗତ ପ୍ରହସନର ଲକ୍ଷଣ ! ସେହି ମୁହୂର୍ତ୍ତଟି ଏକାନ୍ତ ତାଚ୍ଛଲ୍ୟ ଆଉ ଗ୍ରାମ୍ୟ ରସିକତା ମଧ୍ୟରେ ଗୋଟାଏ ରାତି ଶେଷ ହୋଇଯାଏ । ହାଜତ ପ୍ରହରୀ ଥୋରୋଙ୍କୁ ହାଜତ ଭିତରେ ଭର୍ତ୍ତି କରିବା ପୂର୍ବରୁ ତାଙ୍କ ପାଦରୁ ତାଙ୍କ ବୁଟଜୋତା ଯୋଡ଼ା ଖୋଲି ନେଇଥିଲା । ହୁଏତ ସେ ଭାବିଥିଲା, ଥୋରୋଙ୍କୁ ମାନସିକ କଷ୍ଟ ଦେବା ପାଇଁ ଏହା ହେଉଛି ପ୍ରକୃଷ୍ଟ ବ୍ୟବସ୍ଥା । ଥୋରୋ ହାଜତରେ ଥିବା ଖବର ତାଙ୍କ ମା' ଯେତେବେଳେ ଶୁଣିଲେ, ସେ ଚିନ୍ତାରେ ଆକୁଳ ହେଲେ । ପୁତ୍ରର ପୋଲ୍‌ଟ୍ୟାକ୍ସ ନଦେବାର ସଂକଳ୍ପ ସେ ଜାଣିଥିଲେ, ଅଥଚ ଟ୍ୟାକ୍ସ ନଦେଲେ ଛାଡ଼ ପାଇବ ନାହିଁ । କେହି କେହି କହନ୍ତି, ତାଙ୍କ ହାତରେ ସେତେବେଳେ ଟ୍ୟାକ୍ସ ମେଣ୍ଟାଇଦେବା ଭଳି ଟଙ୍କା ନଥିଲା । ସେଥିପାଇଁ ତାଙ୍କର ଜଣେ ଆତ୍ମୀୟା, ଭୋର ନ ହେଉଣୁ, ସର୍ବାଙ୍ଗରେ ଚାଦର ଢାଙ୍କି, ମୁହଁ ଲୁଚାଇ, ଥାନାକୁ ଯାଇ ଟ୍ୟାକ୍ସ ଟଙ୍କା

ଜମାଦେଇ ଆସିଲେ । ଏହାପରେ ଥୋରୋଙ୍କୁ ଅଟକ କରି ରଖିବାର ଆଉ କୌଣସି ଆଇନ ସଂଗତ କାରଣ ନଥିବାରୁ, ଥାନା-କର୍ତ୍ତା ତାଙ୍କୁ ମୁକ୍ତି ଦେଲେ । ତାଙ୍କ ବୁଟ-ଜୋତା ତାଙ୍କୁ ଫେରାଇ ଦିଆହେଲା ।

ଏହିଠାରେ ଗୋଟାଏ ଗଳ୍ପ ସୃଷ୍ଟି ହୁଏ । ଇମାରସନ୍ ଥିଲେ ଥୋରୋଙ୍କର ସ୍ୱଳ୍ପ ସଂଖ୍ୟକ ବନ୍ଧୁମାନଙ୍କ ମଧ୍ୟରେ ଜଣେ । ସେ କୁଆଡ଼େ ସକାଳେ ଅବରୁଦ୍ଧ ବନ୍ଧୁଙ୍କୁ ଦେଖିବା ପାଇଁ ଥାନାକୁ ଯାଇଥିଲେ । ଯାଇ ଦେଖିଲେ, ବନ୍ଧୁ ସେହିମାତ୍ର ମୁକ୍ତ ହୋଇଛନ୍ତି । ଇମାରସନ୍ ବିଷୟଟିକୁ ଥୋରୋଙ୍କର ପାଗଳାମୀ ହିସାବରେ ଦେଖିଲେ, ସେଥିପାଇଁ ବନ୍ଧୁଙ୍କୁ ମୃଦୁ ଭର୍ତ୍ସନା କରି କହିଲେ - 'କଥା କ'ଣ ହେନରୀ ? ତୁମେ ହାଜତ ଭିତରେ କାହିଁକି ? କ୍ରୁଦ୍ଧ ହୋଇ ଥୋରୋ କହିଲେ - 'ମୁଁ ଓଲଟା ତୁମକୁ ପଚାରୁଛି, ତୁମେ ହାଜତ ବାହାରେ କାହିଁକି ?

ଏହି ଗୋଟାଏ ରାତି ହାଜତବାସକୁ ଏକମାତ୍ର ଥୋରୋଙ୍କ ବ୍ୟତୀତ, ସମ୍ପୃକ୍ତ କେହି ହେଲେ ବିଶେଷ କୌଣସି ଗୁରୁତ୍ୱ ଦେଇ ନାହାନ୍ତି । କିନ୍ତୁ ସେହି ଗୋଟାଏ ରାତିର ଅଭିଜ୍ଞତାରେ ଥୋରୋ ଉତ୍ତେଜିତ ହୋଇ ସିଭିଲ୍ ଡିସ୍‌ଓବିଡିଏନ୍ସ ସମ୍ପର୍କରେ ଯେଉଁ ବକ୍ତୃତା ଦେଇଥିଲେ, ଯାହା ପରେ ଛପା ଅକ୍ଷରରେ ମୁଦ୍ରିତ ହୋଇଥିଲା, ସମସାମୟିକ ତାଚ୍ଛଲ୍ୟର ପାଉଁଶରେ ତାହା ଚାପି ହୋଇ ରହିଥିଲା ସାମାନ୍ୟ ଅଳ୍ପକିଛି ବର୍ଷ । ତା'ପରେ ଦିନେ ସେହି ପାଉଁଶ-ଗଦା ମଧ୍ୟରେ ସାମାନ୍ୟ ଟିକିଏ ନିଆଁ, ଆଉ ଏକ ଯୁଗରେ, ଆଉ ଏକ ଦେଶରେ ଏହିପରି ଜଣେ ପାଗଳ ମନରେ ଜାଳି ଦେଲା ବିରାଟ ଏକ ଦାବାନଳ, ଯେଉଁ ଦାବାନଳରେ ପରିବର୍ତ୍ତିତ ହୋଇଗଲା ପୃଥିବୀର ମାନଚିତ୍ର ଏବଂ ମାନସ ଚିତ୍ରର ଏକ ପ୍ରଧାନ ଅଂଶ ! ମହାତ୍ମା ଗାନ୍ଧୀ ଯେତେବେଳେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଗୋଟାଏ ନୂଆ ରଣନୀତିର ସନ୍ଧାନ କରୁଥିଲେ, ସେତେବେଳେ ସେ ଦୁଇଜଣ ବିଦେଶୀଙ୍କ ନିକଟରୁ ତାଙ୍କର ଦୁଇଟି ପ୍ରଧାନ ଅସ୍ତ୍ରର ସନ୍ଧାନ ପାଇଲେ । ଗୋଟିଏ ହେଲା-ଟଲଷ୍ଟୟଙ୍କର 'ପ୍ୟାସିଭ ରେସିସ୍‌ଟେନ୍ସ' ଓ ଅନ୍ୟଟି ହେଉଛି ଥୋରୋଙ୍କର 'ସିଭିଲ ଡିସ୍‌ଓବିଡିଏନ୍ସ' । ଦୁଇଟି ଅସ୍ତ୍ରକୁ ସେ ତାଙ୍କର ଅସାଧାରଣ ମନ ଓ ମସ୍ତିଷ୍କର କାରଖାନାରେ ନୂଆ ଛାଞ୍ଚରେ ଢଳାଇ କରି ସଂପୂର୍ଣ୍ଣ ଭାରତୀୟ କରି ଗଢ଼ିଲେ । ନିଦାରୁଣ ସନ୍ଦେହ ଓ ମାନସିକ ଦୁଶ୍ଚିନ୍ତା ମଧ୍ୟରେ ଦିନେ ସେ ଥୋରୋଙ୍କର ସେହି 'ସିଭିଲ୍ ଡିସ୍‌ଓବିଡିଏନ୍ସ' ଲେଖା ମଧ୍ୟରେ ବାସ୍ତବ ଅନୁପ୍ରେରଣାର ସନ୍ଧାନ ପାଇଲେ । ଥୋରୋଙ୍କର ସେହି ରଚନା ଭିତରେ ବ୍ୟକ୍ତିର ମର୍ଯ୍ୟାଦାର ଅଗ୍ନି ସ୍ଫୁଲିଙ୍ଗ ଥିଲା, ବିଶ୍ୱର ରାଜନୈତିକ ସାହିତ୍ୟର ଇତିହାସରେ ତା'ର କେଇଟି ଲାଇନ ଅମର ହୋଇ ରହିଛି ... ।

I was not born to be forced ... I will breath after my own fashion. If a plant cannot live according to its nature, it dies and so dies a man !

ଏହି ଅଗ୍ନିସ୍ଫୁଲିଙ୍ଗଟି ଅପେକ୍ଷା କରୁଥିଲା ଜଣେ ଗାନ୍ଧୀ ପାଇଁ । ଅଗ୍ନି ସ୍ଫୁଲିଙ୍ଗର ମୃତ୍ୟୁ ନାହିଁ । ପାଉଁଶ ଚାପା ପଡ଼ିଥାଏ ମାତ୍ର । ମହାତ୍ମା ଗାନ୍ଧୀ ଖୁବ୍ ବେଶୀ ବହି ପଢ଼ି ନାହାନ୍ତି । ଯେଉଁ କେତେଖଣ୍ଡ ବହି ସେ ଅନ୍ତର ଦେଇ ଗ୍ରହଣ କରିଥିଲେ, ତା' ମଧ୍ୟରେ ଥିଲା ଥୋରୋଙ୍କର ରଚନା ସଂଗ୍ରହ ।

ସା./ପୋ.- ଗୋପାଳପୁର
ଚାନ୍ଦବାଲି, ଭଦ୍ରକ- ୭୫୬୧୩୩

---

# ଓଡ଼ିଶା ଅନଗ୍ରସରବର୍ଗ ଉନ୍ନୟନ ସମବାୟ ନିଗମ ଦ୍ୱାରା ୫୯ ଜଣ ହିତାଧିକାରୀ ଉପକୃତ

ରାଜ୍ୟରେ ବସବାସ କରୁଥିବା ଅନଗ୍ରସରବର୍ଗ ଲୋକମାନଙ୍କର ଅର୍ଥନୈତିକ ଉନ୍ନତି ପାଇଁ ଜାତୀୟ ଅନଗ୍ରସରବର୍ଗ ଉନ୍ନୟନ ଅର୍ଥ ନିଗମଠାରୁ ପାଣ୍ଠି ଆଣି ଓଡ଼ିଶା ଅନଗ୍ରସର ବର୍ଗ ଉନ୍ନୟନ ସମବାୟ ନିଗମ ରାଜ୍ୟରେ ବିଭିନ୍ନ ପ୍ରକାର ଯୋଜନା କାର୍ଯ୍ୟକାରୀ କରୁଛି ।

ଅନଗ୍ରସର ବର୍ଗର ହିତାଧିକାରୀଙ୍କୁ ବିଭିନ୍ନ ପ୍ରକାରର ଉଚ୍ଚ ମୂଲ୍ୟଯୁକ୍ତ ଆୟକାରୀ ଧନ୍ଦା ଓ ଉଦ୍ୟୋଗ, ଯଥା- ବସ୍ ସର୍ଭିସ୍, କାର୍, ଟ୍ରକ୍ ଓ ହୋଟେଲ ଆଦି କରିବା ପାଇଁ ଉକ୍ତ ନିଗମ ଋଣ ପ୍ରଦାନ କରିଥାଏ ।

୨୦୦୪-୦୫ ଆର୍ଥିକ ବର୍ଷରେ ଏହି ଯୋଜନାରେ ନିଗମ ପାଇଁ ୧୦୭.୭୭ ଲକ୍ଷ ଟଙ୍କାର ବ୍ୟୟ ବରାଦ ରହିଥିବା ବେଳେ ୨୦୦୫ ମସିହା ଫେବୃଆରୀ ମାସ ସୁଦ୍ଧା ୪୦.୩୯ ଲକ୍ଷ ଟଙ୍କା ଋଣ ସହାୟତା ୫୯ ଜଣ ପଛୁଆବର୍ଗ ହିତାଧିକାରୀ ନେଇଛନ୍ତି ବୋଲି ଓଡ଼ିଶା ଅନଗ୍ରସର ବର୍ଗ ଅର୍ଥ ଉନ୍ନୟନ ସମବାୟ ନିଗମ ସୂତ୍ରରୁ ପ୍ରକାଶ ।

# ଆମର ପ୍ରିୟ ପ୍ରଧାନମନ୍ତ୍ରୀ ଲାଲବାହାଦୂର ଶାସ୍ତ୍ରୀ

ବୈକୁଣ୍ଠନାଥ ପ୍ରଧାନ

ପୃଥିବୀରେ ଯେତେ ଦେଶ ସେବକ, ନେତା ଜନ୍ମଗ୍ରହଣ କରି ଦେଶ ସେବାରେ ଆତ୍ମୋତ୍ସର୍ଗ କରିଛନ୍ତି, ସେମାନଙ୍କ ମଧ୍ୟରେ ଯୋଗଜନ୍ମା, ସତ୍ୟନିଷ୍ଠ ଲାଲବାହାଦୂର ଶାସ୍ତ୍ରୀଙ୍କ ଜୀବନ ଏକ ଭିନ୍ନ ଧରଣର ଥିଲା । ଅବୋଧ ଶିଶୁ ଅବସ୍ଥାରୁ 'ବାପଛେଉଣ୍ଡ' ଆଖ୍ୟା ଅର୍ଜନ କରିବା ପୂର୍ବକ, କୈଶୋରରେ ଦାରିଦ୍ର୍ୟର କଷାଘାତରେ ନିପୀଡ଼ିତ ହେବା ସଂଗେ ସଂଗେ ଯୌବନରେ ପୂଜ୍ୟ 'ବାପୁଜୀ'ଙ୍କ ନିର୍ଦ୍ଦେଶ ତଥା ଆହ୍ୱାନରେ ବିଦ୍ୟାଧ୍ୟୟନ ପରିତ୍ୟାଗ କରି ସେ ଯେଉଁ ସଂଘର୍ଷପୂର୍ଣ୍ଣ ତ୍ୟାଗପୂତ ଜୀବନଯାତ୍ରା ଆରମ୍ଭ କରିଥଲେ, ସେଥିପ୍ରତି ଦୃଷ୍ଟି ନିକ୍ଷେପ କଲେ କେହି କେବେହେଲେ ଧାରଣା କରିବ ନାହିଁ ଯେ, ଏତେ ନିମ୍ନସ୍ତରରୁ ମଣିଷଟିଏ ଉନ୍ନତିଲାଭ କରିବା ପୂର୍ବକ ଗୋଟିଏ ବିଶାଳ ଦେଶରେ ଭାଗ୍ୟ ନିୟନ୍ତା ପଦରେ ଆସୀନ ହୋଇପାରେ ! କିନ୍ତୁ ତାଙ୍କ ଅଦମ୍ୟ ପ୍ରଚେଷ୍ଟା, ସତ୍ୟନିଷ୍ଠା, ଆତ୍ମତ୍ୟାଗ, କଠୋର ସଂଯମ, ଦୃଢ଼ବ୍ରତ, କର୍ତ୍ତବ୍ୟପରାୟଣତା ତଥା ତ୍ୟାଗପୂତ ନିରଳସ-କର୍ମମୟ ଜୀବନଯାତ୍ରା ଫଳରେ ସେ ଉନ୍ନତିର ଚରମ ସୋପାନକୁ ଆରୋହଣ କରିବା ପାଇଁ ସମର୍ଥ ହୋଇଥିଲେ ।

୧୯୦୪ ମସିହା ଅକ୍ଟୋବର ୨ ତାରିଖରେ ମହାନ୍ ଜନନାୟକ ଶାସ୍ତ୍ରିଜୀ ଜନ୍ମ ଗ୍ରହଣ କରିଥିଲେ ଉତ୍ତରପ୍ରଦେଶର ବନାରସ ଜିଲ୍ଲା ଅନ୍ତର୍ଗତ ମୋଗଲସରାଇଠାରେ । ତାଙ୍କ ପିତାଙ୍କ ନାମ ଥିଲା ଶ୍ରଦ୍ଧା ପ୍ରସାଦ ଓ ମାତାଙ୍କ ନାମ ଥିଲା ରାମଦୁଲାରୀ । ତାଙ୍କ ପିତା ଆହ୍ଲାବାଦର କାୟସ୍ଥ ପାଠଶାଳାରେ ଶିକ୍ଷକତା କରୁଥିଲେ । ୧୯୦୫ ମସିହା ଜାନୁଆରୀ ୧୪ ତାରିଖରେ ସଂକ୍ରାନ୍ତି ପଡ଼ିଥିଲା । ପ୍ରାୟ ଚାରିମାସର ଶିଶୁ ଶାସ୍ତ୍ରିଜୀଙ୍କୁ କୋଳରେ ଧରି ମା' ରାମଦୁଲାରୀ ସ୍ନାନ କରିବା ପାଇଁ ସଙ୍ଗମ ସ୍ଥଳରେ ପହଞ୍ଚିଥିଲେ । ସଂକ୍ରାନ୍ତି ହେତୁ ଭିଡ଼ର ମାତ୍ରା ଅତ୍ୟଧିକ ଥିଲା । ସେଠାରେ ହେଉଥିବା ଠେଲାପେଲାରେ ମା'ଙ୍କ କାନ୍ଧରେ ଥିବା ଶାସ୍ତ୍ରିଜୀ ହଠାତ୍ ଖସି ପଡ଼ିଲେ । ଶାସ୍ତ୍ରିଜୀ ନମିଳିବାରୁ ମା'ଜୀ ମାନସିକ କରିଥିଲେ ଯଦି 'ବଚ୍ଚୱା' (ମା' ତାଙ୍କୁ ସେହି ନାମରେ ଡାକୁଥିଲେ) ତାଙ୍କୁ ମିଳିଯାଏ, ତା'ହେଲେ ବିବାହ ପରେ ପୁଅବୋହୂଙ୍କୁ ସଙ୍ଗରେ ଧରି ସେ ଗଙ୍ଗାମାତାଙ୍କ ଶ୍ରୀଚରଣରେ 'ପିୟରୀ' (ହଳଦିଆ ଧୋତି) ଅର୍ପଣ କରିବା ଲାଗି ଆସିବେ । ଶାସ୍ତ୍ରିଜୀ ଭିଡ଼ରେ ଛିଟିକିଯାଇ ଅନ୍ୟ ଗୋଟିଏ ନୌକାରେ ବସିଥିବା ଦୁଧବାଲାର ଟୋକେଇରେ ପଡ଼ିଥିଲେ । ଶାସ୍ତ୍ରିଜୀଙ୍କ ପିତାମାତା ଦୁଧବାଲା ପାଖରୁ ଶାସ୍ତ୍ରିଜୀଙ୍କୁ ଫେରାଇ ଆଣିଥିଲେ । ଶାସ୍ତ୍ରିଜୀ ବର୍ଷେ ଚାରିମାସର ପିଲା ହୋଇଥିବାବେଳେ ତାଙ୍କ ପିତାଙ୍କର ପରଲୋକ ହୋଇଥିଲା । ପିତା ଶ୍ରଦ୍ଧା ପ୍ରସାଦଙ୍କ ପରି ସେ ଥିଲେ ସରଳତା ଓ ସଚ୍ଚୋଟତାର ମୂର୍ତ୍ତିମନ୍ତ ପ୍ରତୀକ । ମା' ରାମଦୁଲାରୀଙ୍କଠାରୁ ସେ ଦୃଢ଼ ମନୋବଳ ଓ କର୍ତ୍ତବ୍ୟ ପରାୟଣତା ସମ୍ପର୍କରେ ଶିକ୍ଷାଲାଭ କରିଥିଲେ ।

ଶାସ୍ତ୍ରିଜୀ ଆଠବର୍ଷ ବୟସରେ ବନାରସରେ ଥିବା ତାଙ୍କର ଜଣେ ସମ୍ପର୍କୀୟ ବନ୍ଧୁଙ୍କ ଘରକୁ ଆସିଲେ । ସେହି ବନ୍ଧୁ ଦୟା ପରବଶ ହୋଇ ତାଙ୍କ ପଢ଼ାପଢ଼ିର ଭାର ଗ୍ରହଣ କରିଥିଲେ । ଶାସ୍ତ୍ରିଜୀ ହାଇସ୍କୁଲରେ ପଢୁଥିବାବେଳେ ତାଙ୍କ 'ଶ୍ରେଣୀ ଶିକ୍ଷକ' ଥିଲେ ପଣ୍ଡିତ ନିଷ୍କାମେଶ୍ୱର ପ୍ରସାଦ । ଶିକ୍ଷକ ମହୋଦୟ ଶାସ୍ତ୍ରିଜୀଙ୍କୁ ତାଙ୍କ ସରଳତା ପାଇଁ ଅଧିକ ସ୍ନେହ କରୁଥିଲେ । ସେ ଏବଂ ତାଙ୍କ ସ୍ତ୍ରୀ ଶାସ୍ତ୍ରିଜୀଙ୍କୁ ନିଜ ପୁତ୍ରବତ୍ ସ୍ନେହ ଓ ଶ୍ରଦ୍ଧା କରୁଥିଲେ ।

ସେହି ସମୟରେ ଗାନ୍ଧିଜୀଙ୍କ ଆହ୍ୱାନକ୍ରମେ ସତ୍ୟାଗ୍ରହ ଆରମ୍ଭ ହେଲା । ପରୀକ୍ଷା ତ୍ୟାଗପୂର୍ବକ ସତ୍ୟାଗ୍ରହରେ ଭାଗନେବା ପାଇଁ ବାପୁଜୀ ପରୀକ୍ଷାର୍ଥୀମାନଙ୍କୁ ନିବେଦନ କଲେ । ହରିଶ୍ଚନ୍ଦ୍ର କଲେଜର ଫାଟକ ଆଗରେ କେତେଜଣ ସତ୍ୟାଗ୍ରହୀ ଧାରଣା ଦେଇ ପରୀକ୍ଷା ନଦେବାକୁ ଛାତ୍ରଙ୍କଠାରେ ବିନୀତ ନିବେଦନ କଲେ । ଶାସ୍ତ୍ରିଜୀ କଲେଜ ଫାଟକ ନିକଟକୁ ଆସି ହଠାତ୍ ଛିଡ଼ା ହୋଇଗଲେ । ଯାହାକିଛି ହେଉନା କାହିଁକି ସତ୍ୟାଗ୍ରହୀଙ୍କୁ ଡେଇଁ ଭିତରକୁ ଯିବାପାଇଁ ତାଙ୍କୁ ତାଙ୍କ ବିବେକ ମନାକଲା ଓ ସେ ଫେରି ଆସିଲେ । ଶାସ୍ତ୍ରିଜୀ ପରୀକ୍ଷା ବର୍ଜନ କରିବାରୁ ତାଙ୍କର ବନ୍ଧୁବାନ୍ଧବ ତଥା ଶୁଭକାଙ୍କ୍ଷୀମାନେ ତାଙ୍କ ଉପରେ ବିରକ୍ତି

ପ୍ରକାଶ କଲେ । ଶାସ୍ତ୍ରିଜୀ ଦିନେ ଏକାନ୍ତରେ ମା'ଜୀଙ୍କୁ ପଚାରିଲେ - 'ତୁମେ କ'ଣ କହୁଛ ମା' ! ଅନ୍ୟମାନେ ଯାହା କହୁଛନ୍ତି ସେଥିପ୍ରତି କର୍ଣ୍ଣପାତ କର ନାହିଁ। ତୁମେ ଯାହା କହିବ, ମୁଁ ତାହା ହିଁ ପାଳନ କରିବି । ମୁଁ କେବଳ ତାହା ହିଁ ପଚାରିବା ଲାଗି ତୁମ ପାଖକୁ ଆସିଛି ।' ମା'ଜୀ ଶାସ୍ତ୍ରୀଙ୍କ ମୁଣ୍ଡ ଓ ପିଠି ଆଉଁସି ଦେଇ କହିଲେ - 'ବଚ୍ଚା ! ତୁ ଯାହାକିଛି କରିଛୁ ବୁଝି ବିଚାରି କରିଛୁ, ଆଗକୁ ଯାହା କରିବୁ ଭାବିଚିନ୍ତି କରିବୁ, ଏ ଭରସା ମୋର ରହିଛି କିନ୍ତୁ ମୋର କହିବାର କଥା ହେଉଛି, ଆଗକୁ ଯେବେ ଗୋଡ଼ ବଢ଼ାଇଛୁ, ଆଉ ପଛକୁ ପାହୁଣ୍ଡ ପକାନା, ଏତିକି ।' ଶାସ୍ତ୍ରିଜୀ ତାଙ୍କ ମାଆଙ୍କର ଏହି ବାଣୀକୁ ସମୟ ସମୟରେ ମନେ ପକାଉଥିଲେ ।

ଏହାପରେ ସେ କାଶୀ ବିଦ୍ୟାପୀଠରେ ପଢ଼ିବା ସଙ୍ଗେ ସଙ୍ଗେ ଗୋଟିଏ ଖଦୀ ଭଣ୍ଡାରରେ ଚାକିରି କରୁଥିଲେ । ସେଠାରୁ ଦରମା ବାବଦ ଯାହାକିଛି ମିଳୁଥିଲା, ସେଥିରୁ କିଛି ତାଙ୍କ ମା'ଙ୍କୁ ଦେଉଥିଲେ । ଅବଶିଷ୍ଟ ପଇସାରୁ ନିଜ ଖର୍ଚ୍ଚ ଚଳାଇ କିଛି କିଛି ଜମା ରଖୁଥିଲେ । ପରେ ସେ ସେହି ବଳକା କଷ୍ଟୋପାର୍ଜିତ ରୋଜଗାରରେ ତାଙ୍କ ଦୁଇ ଭଉଣୀଙ୍କର ବିବାହ ଖର୍ଚ୍ଚ ତୁଲାଇଥିଲେ ।

ପରେ ଶାସ୍ତ୍ରିଜୀ ଲାଲା ଲଜପତ୍ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ 'ଲୋକସେବକ ମଣ୍ଡଳ'ରେ କାର୍ଯ୍ୟ କଲେ । ସେତେବେଳେ ତାଙ୍କୁ ମାତ୍ର ପଚାଶ ଟଙ୍କା ଦରମା ମିଳୁଥିଲା । ୧୯୨୮ ମସିହା ମେ ୧୬ ତାରିଖରେ ଶାସ୍ତ୍ରିଜୀଙ୍କର ଲଳିତାଦେବୀଙ୍କ ସହିତ ବିବାହ ହୋଇଥିଲା । 'ଲୋକସେବକ ମଣ୍ଡଳ'ର ନିୟମ ଅନୁସାରେ କର୍ମଚାରୀଙ୍କ ବିବାହ ପରେ ତାଙ୍କ ଦରମା ଦଶ ଟଙ୍କା ବଢ଼ାଇ ଦିଆଯାଉଥିଲା । ଏହାଛଡ଼ା ଘରଭଡ଼ା ବାବଦରେ କୋଡ଼ିଏ ଟଙ୍କା ଅଧିକା ମିଳୁଥିଲା, କିନ୍ତୁ ଶାସ୍ତ୍ରିଜୀଙ୍କ ବିବାହ ପରେ ତାଙ୍କୁ ଅଶୀ ଟଙ୍କା ମିଳିବା ପରିବର୍ତ୍ତେ ଶହେ ପାଞ୍ଚ ଟଙ୍କା ଦରମା ମିଳିଲା ତାଙ୍କର ଯୋଗ୍ୟତା, ସତ୍ୟ ନିଷ୍ଠତା ଓ କର୍ତ୍ତବ୍ୟ ପରାୟଣତା ପାଇଁ । ଲୋକସେବକ ମଣ୍ଡଳର ମିରଟସ୍ଥିତ କୁମାର ଆଶ୍ରମଠାରେ ହରିଜନମାନଙ୍କ କଲ୍ୟାଣ ନିମନ୍ତେ କାର୍ଯ୍ୟ କରିବାର ଦାୟିତ୍ୱ ଶାସ୍ତ୍ରିଜୀଙ୍କୁ ପ୍ରଦାନ କରାଯାଇଥିଲା । ନିଜେ ଲାଲବାହାଦୂର କହିଛନ୍ତି, 'ଲୋକ ସେବକ ମଣ୍ଡଳ'ର ସଦସ୍ୟ ହେବା ଫଳରେ ଦେଶର ସେବା କରିବା ଲାଗି ମୁଁ ସବୁଠାରୁ ବେଶୀ ସୁଯୋଗ ପାଇଛି । ଲୋକମାନଙ୍କର ସେବକ ହେବାର ପ୍ରକୃତ ଅର୍ଥ କ'ଣ ତାହା ମୁଁ ଲୋକ ସେବକ ମଣ୍ଡଳରୁ ଶିକ୍ଷା ଲାଭ କରିଛି ।

୧୯୨୮ ମସିହାଠାରୁ ୧୯୪୬ ମସିହା ପର୍ଯ୍ୟନ୍ତ ଶାସ୍ତ୍ରିଜୀ ବହୁ ଦୁଃଖ ଓ ସଂଘର୍ଷମୟ ଜୀବନକୁ ଅତିକ୍ରମ କରିଛନ୍ତି । ଶାସ୍ତ୍ରିଜୀଙ୍କ ମୃତ୍ୟୁର ଅବ୍ୟବହିତ ପରେ ପୂର୍ବଦିନର ସେ ଦୁଃଖପୂର୍ଣ୍ଣ ଅପାଶୋରା ସ୍ମୃତିଚାରଣ କରି ଲଳିତା ଶାସ୍ତ୍ରୀ କହିଛନ୍ତି - 'ଅତୀତର ସେହି ୧୮/୨୦ ବର୍ଷ ମଧ୍ୟରେ ଗରମ କପଡ଼ା ବୋଲି ମୋ' ପାଖରେ ଦୁଇ ଖଣ୍ଡି ଗରମ ବ୍ଲାଉଜ୍ ଥିଲା । ଖଣ୍ଡିଏ ମୋ ମା' ମୋତେ ଦେଇଥିଲେ, ଅନ୍ୟ ଖଣ୍ଡିକ ମୋତେ ରାମନଗର (ଶାସ୍ତ୍ରିଜୀଙ୍କର ଜନ୍ମସ୍ଥାନ)ରେ ମିଳିଥିଲା । ଶାସ୍ତ୍ରିଜୀଙ୍କ ପାଖରେ ଖଣ୍ଡିଏ ମାତ୍ର କୋଟ ଥିଲା । ଶାସ୍ତ୍ରିଜୀଙ୍କର ଚିରା କାମିଜ୍‌କୁ କାଟି ମୁଁ ଗରମ ଓ ବର୍ଷା ସମୟରେ ପିନ୍ଧିବା ଭଳି ବ୍ଲାଉଜ୍ ତିଆରି କରୁଥିଲି ଏବଂ ତାଙ୍କର ଚିରା ଧୋତିଗୁଡ଼ିକୁ ଯୋଡ଼ି ସିଲାଇକରି, ମୁଁ ନିଜ ପିନ୍ଧିବାଲାଗି ଲୁଗା ପ୍ରସ୍ତୁତ କରୁଥିଲି । ଏତେ ସରି ହୋଇଥିଲେ ହେଁ ସେତେବେଳେ ଯେଉଁ ଶାନ୍ତି ଓ ସୁଖ ମୁଁ ପାଉଥିଲି, ସେ ସୁଖ ଆଜି ଭାଗ୍ୟରେ କାହିଁ !!!' ସତେ ଯେମିତି ସ୍ୱାମୀଙ୍କ ଅବର୍ତ୍ତମାନରେ ସେ ପୂର୍ବ ଦୁଃଖଠୁଁ ଅଧିକ ଦୁଃଖିନୀ ହୋଇଯାଇଥିଲେ ।

ଶାସ୍ତ୍ରିଜୀଙ୍କ ପରିବାର ବହୁ ଦୁଃଖ କଷ୍ଟରେ ଜୀବନ ବିତାଉଥିଲେ । ଥରେ ସେ ଭୀଷଣ ଅସୁସ୍ଥ ହୋଇ ପଡ଼ିଲେ । ଖରାଦିନ ହୋଇଥିବାରୁ ଡାକ୍ତରମାନେ ତାଙ୍କୁ କୌଣସି ଏକ ପାହାଡିଆ ସ୍ଥାନକୁ ଯିବାଲାଗି ପରାମର୍ଶ ଦେଲେ, କିନ୍ତୁ ଟଙ୍କା କୁଆଡୁ ଆସିବ ? ଶାସ୍ତ୍ରିଜୀ କାହାରିକୁ ଟଙ୍କା ଉଧାର ମାଗିବାକୁ ପସନ୍ଦ କରୁ ନଥିଲେ । ଅନ୍ୟ କୌଣସି ଉପାୟ ନଦେଖି କେଉଁଠାରୁ ଉଧାର ଆଣିବା ଲାଗି ଲଳିତା ଶାସ୍ତ୍ରୀ ଶାସ୍ତ୍ରିଜୀଙ୍କୁ ବାଧ୍ୟ କଲେ । କିଛି ପଇସାର ଯୋଗାଡ଼ ହୋଇଯିବାରୁ 'ରାଣୀକ୍ଷେତ' ଯିବାର ବନ୍ଦୋବସ୍ତ ହେଲା । ଜବାହରଲାଲ ନେହେରୁଙ୍କ ସେକ୍ରେଟେରୀ ଶିବଦତ୍ତ ଉପାଧ୍ୟାୟ 'ରାଣୀକ୍ଷେତ'ର ବାସିନ୍ଦା ଥିଲେ । ତାଙ୍କ ଜରିଆରେ ସେଠାରେ ଶସ୍ତାରେ ଘରଟିଏ ବନ୍ଦୋବସ୍ତ ହୋଇଗଲା । ଯେଉଁଦିନ ଶାସ୍ତ୍ରିଜୀଙ୍କ ପରିବାର ସେଠାକୁ ଗଲେ, ସେଦିନ ଶାସ୍ତ୍ରିଜୀଙ୍କୁ ସାକ୍ଷାତ୍ କରିବାକୁ ଆସିଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ କେହି ଜଣେ ଭଦ୍ରବ୍ୟକ୍ତି ଅଢ଼େଇ ଶହ ଟଙ୍କା ଦେଇଥିଲେ । ସେ ଦୁର୍ଦ୍ଦିନରେ ଲଳିତା ଶାସ୍ତ୍ରୀ କେମିତି ଘର ଚଳାଉଥିଲେ ତାଙ୍କ ନିମ୍ନଲିଖିତ ବିବରଣୀରୁ ସ୍ପଷ୍ଟ ହୃଦ୍‌ବୋଧ କରାଯାଇଥାଏ ।

'ରାଣୀକ୍ଷେତ'ରେ ଆମ ରହିବା ସ୍ଥାନର ଅଳ୍ପ ଦୂରରେ ଅନେକଗୁଡ଼ିଏ ତେନ୍ତୁଳି ଗଛ ଥିଲା । ଦି' ପହରବେଳେ ମୁଁ ପିଲାମାନଙ୍କୁ ନେଇ ସେଠାକୁ ଚାଲିଯାଏ । ଚୋପା ଛଡ଼େଇ କରି ମେଞ୍ଚାଏ ତେନ୍ତୁଳି ଆଣେ । ଡାଲି ଅଭାବରେ ସେହି ତେନ୍ତୁଳିକୁ ଅଟାରେ ମିଶାଇ 'କଢ଼ି' ତିଆରି କରି ପିଲାଙ୍କୁ ଦିଏଁ ଓ ମୁଁ ଖାଏ । ପଇସା ଖୁବ୍ କମ୍ ଥିଲା, ତେଣୁ ଏ ପ୍ରକାର ଉପାୟରେ ପଇସା ବଞ୍ଚେଇ ମୁଁ ଶାସ୍ତ୍ରିଜୀଙ୍କ ଲାଗି ଖାଇବା ପିଇବାର ଭଲ ବନ୍ଦୋବସ୍ତ କରିପାରିଲି । ଶାସ୍ତ୍ରିଜୀ ପୂର୍ଣ୍ଣ ଆରୋଗ୍ୟ ଲାଭ କରି 'ରାଣୀକ୍ଷେତ'ରୁ ଫେରିଲେ ।

ଶାସ୍ତ୍ରିଜୀଙ୍କ ପରିବାର ବହୁ ଦୁଃଖ କଷ୍ଟରେ ଜୀବନ ବିତାଉଥିଲେ । ଉପର ଲିଖିତ ଦୁଇଟି ବିବରଣୀ ତା'ର ଏକ ନମୁନା ମାତ୍ର । ଦାରିଦ୍ର୍ୟର କଷାଘାତରେ ସେ ନିପୀଡ଼ିତ ହୋଇଥିବାରୁ, ପରବର୍ତ୍ତୀ ସମୟରେ ସେ ଭାରତର ରେଲ୍‌ୱେ ମନ୍ତ୍ରୀ ହୋଇଥିବାବେଳେ ସରକାରୀ ଧନକୁ କେମିତି ବର୍‌ବାଦ୍ କରୁନଥିଲେ, ତାହା ନିମ୍ନଲିଖିତ ଘଟଣାରୁ ସ୍ପଷ୍ଟ ଜଣାପଡ଼େ । ରେଲ୍‌ୱେ ମନ୍ତ୍ରୀ ଥିଲାବେଳେ ଥରେ ଗରମ ଦିନରେ ଲଳିତା ଶାସ୍ତ୍ରୀ ଶାସ୍ତ୍ରିଜୀଙ୍କ ସହିତ ବମ୍ବେ ଯାଉଥିଲେ ।

ଗାଡ଼ି ଚାଲିବାରୁ ଶାସ୍ତ୍ରିଜୀ କହିଲେ, 'ବାହାରେ ତ ଖୁବ୍ ଗରମ ହେଉଛି, ବଗି ଭିତରେ ଏତେ ଥଣ୍ଡା କିପରି ?' ଶାସ୍ତ୍ରିଜୀଙ୍କ ପି.ଏ. କୈଳାଶବାବୁ କହିଲେ, 'ଆଜ୍ଞା, ଏଥିରେ କୁଲର୍ ଲଗାଯାଇଛି ।' ଶାସ୍ତ୍ରିଜୀ ତାଙ୍କ ଆଡକୁ ଆଶ୍ଚର୍ଯ୍ୟ ହୋଇ ଚାହିଁ କହିଲେ - 'କୁଲର୍ ଏଥିରେ ଲାଗିଛି ?' କୈଳାଶବାବୁ ହଁ କହିବାରୁ ଶାସ୍ତ୍ରିଜୀ କୈଳାଶ ବାବୁଙ୍କୁ ନିମ୍ନଲିଖିତ ଟିପ୍ପଣୀ ଦେଇଥିଲେ -

'ମୋତେ ନପଚାରି ? କୌଣସି କାମ କରିବା ପୂର୍ବରୁ ଆପଣମାନେ ମୋତେ ପଚାରୁ ନାହାନ୍ତି କାହିଁକି ? ଅନ୍ୟମାନେ ଯେଉଁ ଗାଡ଼ିରେ ବସିଛନ୍ତି, ସେମାନଙ୍କୁ ଗରମ ଲାଗୁ ନାହିଁ ? ନୀତି ଅନୁସାରେ ମୋର ମଧ୍ୟ ତୃତୀୟ ଶ୍ରେଣୀ ବଗିରେ ଯିବାର କଥା । ଯଦି ତାହା ସମ୍ଭବ ନହେଉଛି, ଯେତିକି କରିବାର କଥା ସେତିକି କରିବା ଉଚିତ । ବେଳେବେଳେ ଆପଣମାନେ ବଡ଼ ଭୁଲ କରୁଛନ୍ତି । ଏହାପରେ ଗାଡ଼ି ଯେଉଁଠି ଅଟକିବ, ସେଠାରେ 'କୁଲର୍' ବାହାର କରାଇ ଦିଅନ୍ତୁ ।' ଶାସ୍ତ୍ରିଜୀଙ୍କ ଆଦେଶ ମୁତାବକ ମଥୁରା ଷ୍ଟେସନରେ ଗାଡ଼ି ଅଟକିଲା ପରେ ଉକ୍ତ ବଗିରୁ କୁଲର୍ ବାହାର କରାଗଲା ଏବଂ ତା'ପରେ ଗାଡ଼ି ସେଠାରୁ ଛାଡ଼ିଲା । ଶାସ୍ତ୍ରିଜୀ କିପରି ନୀତିନିଷ୍ଠ ଥିଲେ, ତାହା ନିମ୍ନଲିଖିତ ବିବରଣୀରୁ ଜଣାପଡ଼େ । ରେଲ୍‌ୱେ ମନ୍ତ୍ରୀ ଥିଲାବେଳେ ସେ ରେଲ୍‌ୱେ ବିଭାଗଟିକୁ ସଜାଡ଼ି ଦେବା ଉଦ୍ଦେଶ୍ୟରେ ଆପ୍ରାଣ ଚେଷ୍ଟା କରିଥିଲେ, ମାତ୍ର ସେ ଯେପରି ଚାହୁଁଥିଲେ, ତାଙ୍କ ଇଚ୍ଛା ଅନୁସାରେ କାର୍ଯ୍ୟ ହୋଇପାରିଲା ନାହିଁ । ଫଳରେ ସେ ଉକ୍ତ ବିଭାଗରୁ ତ୍ୟାଗପତ୍ର ଦେଇଦେଲେ । ମନ୍ତ୍ରୀତ୍ୱ ଛାଡ଼ିବାର ପନ୍ଦର ଦିନ ମଧ୍ୟରେ ସରକାରୀ ଘର ଛାଡ଼ି ଦେବାର ନିୟମ ଥିଲା । ଶାସ୍ତ୍ରିଜୀ ନିର୍ଦ୍ଦିଷ୍ଟ ଦିନ ମଧ୍ୟରେ ସରକାରୀ ଘର ଛାଡ଼ି ଦେଲେ ଓ ସପରିବାର ଯାଇ ଏମ୍.ପି. କ୍ୱାଟରରେ ରହିଲେ ।

ପୁରୁଷୋତ୍ତମ ଦାସ ଟଣ୍ଡନ ଥିଲେ ଲାଲବାହାଦୂର ଶାସ୍ତ୍ରୀଙ୍କର ରାଜନୈତିକ ଗୁରୁ । ପ୍ରତ୍ୟକ୍ଷ ରାଜନୀତିରେ ପ୍ରବେଶ କରିବା ପାଇଁ ୧୯୨୮ ମସିହାରେ ଲାଲବାହାଦୂରଙ୍କୁ ରାଜର୍ଷି ଟଣ୍ଡନ ନିର୍ଦ୍ଦେଶ ଦେଇଥିଲେ । ୧୯୩୦ ମସିହାରେ ଲାଲବାହାଦୂର ଏହ୍ଲାବାଦ ଜିଲ୍ଲା କଂଗ୍ରେସ କମିଟିର ସଭାପତି ଭାବେ ନିର୍ବାଚିତ ହୋଇଥିଲେ । ପରେ ସେ ଉତ୍ତର ପ୍ରଦେଶ କଂଗ୍ରେସ କମିଟିର ସମ୍ପାଦକ ହୋଇଥିଲେ । ମାତ୍ର ୩୧ ବର୍ଷ ବୟସରେ ଭାରତୀୟ ଜାତୀୟ କଂଗ୍ରେସରେ ଏକ ସମ୍ମାନଜନକ ପଦବୀ ପାଇପାରିଥିଲେ । ୧୯୩୨ ମସିହାରେ ଏହ୍ଲାବାଦର କୁକଟାୱାରଠାରେ ତ୍ରିରଙ୍ଗା ପତାକା ଉତ୍ତୋଳନ କରିବା ପାଇଁ ବ୍ରିଟିଶ ସରକାର ଅନୁମତି ଦେଲେ ନାହିଁ । କାଳେ ସଂଗ୍ରାମୀମାନେ ପତାକା ଉତ୍ତୋଳନ କରିଦେବେ, ସେହି ଆଶଙ୍କାରେ ଟାୱାରଠାରେ ଦୃଢ଼ ପୁଲିସ ବ୍ୟବସ୍ଥା ବ୍ରିଟିଶ ସରକାରଙ୍କ ପକ୍ଷରୁ କରାଯାଇଥିଲା । କଂଗ୍ରେସ ସଦସ୍ୟମାନେ ବହୁ ଉଦ୍ୟମ କରି ମଧ୍ୟ ପତାକା ଉତ୍ତୋଳନ କରିବାକୁ ସମର୍ଥ ହେଲେ ନାହିଁ । ମାତ୍ର ଲାଲବାହାଦୂର ଜନୈକ ମୁସଲମାନ ମହିଳାର ଛଦ୍ମବେଶରେ ଯାଇ ଟାୱାର ନିକଟରେ ପହଞ୍ଚିଗଲେ । ପୁଲିସ ତାଙ୍କୁ ସନ୍ଦେହ କରିନଥିଲେ । ଟାୱାର ନିକଟରେ ପହଞ୍ଚିଲାକ୍ଷଣି ସେ ଉପରକୁ ଉଠିଯାଇ ତ୍ରିରଙ୍ଗା ପତାକା ଉଡ଼ାଇ ଦେଲେ । ଏହା କରିବା ପରେ ସିଧା ପୁଲିସ ନିକଟକୁ ଯାଇ କହିଲେ - 'ମୁଁ ଲାଲବାହାଦୂର ଶାସ୍ତ୍ରୀ । ମୁଁ ତ୍ରିରଙ୍ଗା ଉଡ଼ାଇଲି ।' ଏହା ଶୁଣିବାକ୍ଷଣି ପୁଲିସ ତାଙ୍କୁ ଗିରଫ କରିନେଲେ ।

୧୯୨୧ରୁ ୧୯୪୨ ମଧ୍ୟରେ ଅନ୍ୟାନ୍ୟ କଂଗ୍ରେସ ନେତାମାନଙ୍କ ପରି ଲାଲବାହାଦୂର ଦୀର୍ଘକାଳ ବ୍ରିଟିଶ ସରକାରଙ୍କ ବିଭିନ୍ନ ଜେଲମାନଙ୍କରେ ଦିନ କଟାଇଥିଲେ । ଏହି ସମୟ ମଧ୍ୟରେ ସେ ସର୍ବମୋଟ ନଅଥର ଜେଲ୍ ଯାଇ ନଅ ବର୍ଷକାଳ ଜେଲରେ କଟାଇଥିଲେ । ଜେଲ୍‌ରେ ଥିଲାବେଳେ ଜେଲ୍ ପ୍ରକୋଷ୍ଠରେ ସେ ପୃଥିବୀର ପ୍ରସିଦ୍ଧ ଲେଖକମାନଙ୍କ ଦ୍ୱାରା ଲିଖିତ ବିଭିନ୍ନ ପୁସ୍ତକ ଅଧ୍ୟୟନ କରିବା ପାଇଁ ସମର୍ଥ ହୋଇଥିଲେ । ଏତଦ୍‌ଦ୍ୱାରା ଯେଉଁ ଜ୍ଞାନ ଅର୍ଜନ କରିବାକୁ ସେ ସମର୍ଥ ହୋଇଥିଲେ, ତାହାକୁ ଭାରତର ଗଣତାନ୍ତ୍ରିକ ସମାଜରେ ସଫଳ ପ୍ରୟୋଗ କରିଥିଲେ ।

ନିଃସ୍ୱାର୍ଥପର ଭାବେ କଠିନ ପରିଶ୍ରମ କରିଥିବା ଦୃଷ୍ଟେ ସେ ଉତ୍ତରପ୍ରଦେଶରେ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କ ମନ୍ତ୍ରିମଣ୍ଡଳରେ ପାର୍ଲାମେଣ୍ଟାରୀ ସେକ୍ରେଟେରୀଭାବେ ନିଯୁକ୍ତ ହେଲେ । ବର୍ଷକ ମଧ୍ୟରେ ସେ ପୁଲିସ ବିଭାଗର ମନ୍ତ୍ରୀ ହେଲେ । ତାଙ୍କର କର୍ମ ନିପୁଣତା ପାଇଁ ଏହା ପରେ ସେ ଅନେକ ବିଭାଗରେ କାର୍ଯ୍ୟ କରିବା ପାଇଁ ସୁଯୋଗ ପାଇଥିଲେ । ତାଙ୍କର ପ୍ରେରଣା ଯୋଗୁଁ ଉତ୍ତରପ୍ରଦେଶ ପୁଲିସ ବିଭାଗ ସାମ୍ପ୍ରଦାୟିକତାବାଦ ଦ୍ୱାରା ପ୍ରଭାବିତ ନହୋଇ ଏକ ସୁଶୃଙ୍ଖଳ ତଥା ବଳିଷ୍ଠବାହିନୀ ଭାବେ କାର୍ଯ୍ୟ କରିପାରିଲେ । ସ୍ୱାଧୀନତା ପରେ ଉତ୍ତରପ୍ରଦେଶର ସାମାଜିକ ଓ ପ୍ରଶାସନିକ କ୍ଷେତ୍ରରେ ସେ ବହୁ ସଂସ୍କାର ଆଣିବାକୁ ସମର୍ଥ ହୋଇପାରିଥିଲେ । ତାଙ୍କ ଉଦ୍ୟମ ଫଳରେ ଉତ୍ତରପ୍ରଦେଶରେ ଜଣେ ଭାରତୀୟ ପ୍ରଥମ ଥର ପାଇଁ ଇନିସ୍‌ପେକ୍ଟର ଜେନେରାଲ ଅଫ୍ ପୋଲିସ ହୋଇପାରିଥିଲେ ।

ପ୍ରଥମ ସାଧାରଣ ନିର୍ବାଚନ ପରେ ୧୯୫୨ ମସିହାରେ ଲାଲବାହାଦୂର ରାଜ୍ୟସଭାକୁ ନିର୍ବାଚିତ ହେଲେ । ଜବାହରଲାଲ ନେହେରୁଙ୍କ ମନ୍ତ୍ରିମଣ୍ଡଳରେ ସେ ରେଳବାଇ ଓ ପରିବହନ ମନ୍ତ୍ରୀ ହେଲେ । ରେଳବାଇ ମନ୍ତ୍ରୀ ଭାବେ ସେ ଅନେକଗୁଡ଼ିଏ ନୂଆ ଯୋଜନାର ପ୍ରବର୍ତ୍ତନ କଲେ । ତୃତୀୟ ଶ୍ରେଣୀ ରେଳକୋଚର ବ୍ୟବସ୍ଥା ହେଲା । ସେଥିରେ ଶୋଇବା ବ୍ୟବସ୍ଥା ରହିଲା । ଏତଦ୍ ସଂଗେସଂଗେ ରେଳବାଇ ନିରାପତ୍ତା ବାହିନୀର ସୃଷ୍ଟି ମଧ୍ୟ କରାଗଲା । ରେଳବାଇକୁ ଆଧୁନିକ ରୂପରେଖ ଦେବାର ପ୍ରକ୍ରିୟା ସେ ଆରମ୍ଭ କରିଥିଲେ । ୧୯୫୭ରୁ ୧୯୬୧ ମସିହା ଯାଏ ସେ କେନ୍ଦ୍ରୀୟ ମନ୍ତ୍ରିମଣ୍ଡଳରେ ବହୁ ଗୁରୁତ୍ୱପୂର୍ଣ୍ଣ ବିଭାଗ ତଥା ପରିବହନ, ଯୋଗାଯୋଗ, ବାଣିଜ୍ୟ, ଶିଳ୍ପ ଏବଂ ସ୍ୱରାଷ୍ଟ୍ର ବିଭାଗରେ କାର୍ଯ୍ୟ କରିଥିଲେ ।

ପଣ୍ଡିତ ଜବାହରଲାଲ ନେହେରୁଙ୍କ ବିୟୋଗ ପରେ ଶାସ୍ତ୍ରିଜୀ ଦେଶର ପ୍ରଧାନମନ୍ତ୍ରୀ ହେଲେ । ପ୍ରଧାନମନ୍ତ୍ରୀ ହିସାବରେ ସେ ନିରୀହ ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ପ୍ରତି ସବୁବେଳେ ଗୁରୁତ୍ୱ ଦେଉଥିଲେ । ଦୁର୍ନୀତି, କଳାବଜାରୀ, ମହଜୁଦକାରୀ ଏବଂ ବୈଦେଶିକ ମୁଦ୍ରା ହେରଫେର କରୁଥିବା ସଂସ୍ଥାମାନଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ସେମାନଙ୍କୁ ଦମନ କରିବାରେ ସେ ସମର୍ଥ ହୋଇଥିଲେ । ଦେଶରେ ଆର୍ଥିକ କ୍ଷେତ୍ରରେ ବିକାଶ ଘଟାଇବା ଓ ସାମାଜିକ ନ୍ୟାୟ ପ୍ରଦାନ କ୍ଷେତ୍ରରେ ସେ ଯଥେଷ୍ଟ ଗୁରୁତ୍ୱ ଦେଲେ । ଭାରତ ପାକିସ୍ଥାନ ଯୁଦ୍ଧବେଳେ ସେ ବିବ୍ରତ ନହୋଇ ତା'ର କଡ଼ା ମୁକାବିଲା କଲେ । ତାଙ୍କର 'ଜୟ ଜବାନ୍, ଜୟ କିଷାନ୍' ଡାକରା ସମସ୍ତଙ୍କୁ ଉଦ୍‌ବୁଦ୍ଧ କଲା । ପାକିସ୍ଥାନ ପରାଜିତ ହେଲା । ରୁଷିଆର ପ୍ରଧାନମନ୍ତ୍ରୀ କୋସିଜିନ୍, ଶାସ୍ତ୍ରିଜୀ ଓ ପାକିସ୍ଥାନର ରାଷ୍ଟ୍ରପତି ଆୟୁବ ଖାଁଙ୍କ ମଧ୍ୟରେ ଆପୋଷ ସମାଧାନ ଲାଗି ଉଭୟଙ୍କୁ ତାସ୍‌କେଣ୍ଟ ଆମନ୍ତ୍ରଣ କରିଥିଲେ । ୧୯୬୬ ମସିହା ଜାନୁଆରୀ ୧୦ ତାରିଖ ଦିନ ପାକିସ୍ଥାନର ରାଷ୍ଟ୍ରପତି ଆୟୁବ ଖାଁଙ୍କ ସହିତ ଶାସ୍ତ୍ରିଜୀ ଐତିହାସିକ 'ତାସ୍‌କେଣ୍ଟ ଚୁକ୍ତି'ରେ ସ୍ୱାକ୍ଷର କରିଥିଲେ । ଏହି ଶାନ୍ତି ଚୁକ୍ତି ପାଇଁ ତାଙ୍କୁ ବିଭିନ୍ନ ମହଲରୁ ସ୍ୱାଗତ କରାଯାଇଥିଲା । ୧୯୬୬ ମସିହା ଜାନୁଆରୀ ୧୧ ତାରିଖ ସକାଳେ ଖବର ପ୍ରଚାର ହୋଇଗଲା ଯେ ଲାଲବାହାଦୁର ଆଉ ଇହ ଜଗତରେ ନାହାନ୍ତି । ତାସ୍‌କେଣ୍ଟରେ ତାଙ୍କର ଅକାଳ ବିୟୋଗ ହେଲା ।

ଶାସ୍ତ୍ରିଜୀଙ୍କ ସଦୃଶ୍ୟ ଦୃଢ଼ ପ୍ରତିଜ୍ଞ, ନିଷ୍ଠାବାନ୍ ଓ କର୍ମଠ ବ୍ୟକ୍ତି ବିଶ୍ୱରେ ଜନ୍ମ ଗ୍ରହଣ କରି ଇତିହାସରେ ସ୍ଥାନ ସଂରକ୍ଷଣ କରିଥିବା ପରି ମନେହୁଏ ନାହିଁ । ତାଙ୍କ କର୍ମମୟ ଜୀବନର ପ୍ରତ୍ୟେକ ଘଟଣା କେବଳ ଭାରତରେ କାହିଁକି, ବିଶ୍ୱର ଆବାଳ-ବୃଦ୍ଧ-ବନିତାଙ୍କ ପକ୍ଷରେ ଅତ୍ୟନ୍ତ ଶିକ୍ଷଣୀୟ । ପ୍ରଖ୍ୟାତ ଇଂରେଜ କବି ଲର୍ଡ଼ ଟେନିସନ୍‌ଙ୍କ 'Noble Nature' କବିତାର ସାରାଂଶ ହେଉଛି - ଗୋଟିଏ ଦିନ ପ୍ରସ୍ଫୁଟିତ ହେଉଥିବା କଇଁଫୁଲର ସୌନ୍ଦର୍ଯ୍ୟ ତଥା ସ୍ଥିତି, ଶହେ ବର୍ଷ ବଞ୍ଚି ରହୁଥିବା ଓକ୍ ଗଛର ସ୍ଥିତିଠାରୁ ମହତ୍ତର । ସେହିପରି ଭାରତର ପ୍ରଧାନମନ୍ତ୍ରୀ ହିସାବରେ ସ୍ୱଳ୍ପକାଳ ରହିଥିବା ଲାଲବାହାଦୁର ଶାସ୍ତ୍ରୀଙ୍କ କାର୍ଯ୍ୟ ଦକ୍ଷତା ବହୁବର୍ଷ ରହିଥିବା ଭାରତର ଅନ୍ୟାନ୍ୟ ପ୍ରଧାନମନ୍ତ୍ରୀମାନଙ୍କ କାର୍ଯ୍ୟ ଦକ୍ଷତାଠାରୁ ନିଶ୍ଚିତ ଭାବରେ ଅଧିକ ମହତ୍ତର ।

**ସହାୟକ ଗ୍ରନ୍ଥ ସୂଚୀ**

୧. ମୋ ପତି ମୋ ଦେବତା (ଶ୍ରୀମତୀ ଲଳିତା ଶାସ୍ତ୍ରୀଙ୍କ ସଂସ୍ମରଣ), ମୂଳ ହିନ୍ଦୀ ଲେଖା- ଉମାଶଙ୍କର, ଅନୁବାଦକ - ପଣ୍ଡିତ ନୀଳମଣି ମିଶ୍ର ।

୨. ଉତ୍କଳ ପ୍ରସଙ୍ଗ, ୧୯୯୭ ଅକ୍ଟୋବର ସଂଖ୍ୟା ।

ନାଇଦୋଳି
କୁମ୍ଭାରମୂଳି, ବାଲେଶ୍ୱର

---

# କେନ୍ଦ୍ରୀୟ ସହାୟତା ଯୋଜନାରେ ୨୦୦୫-୦୬ ଆର୍ଥିକ ବର୍ଷରେ ୮ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି

ଆଦିମ ଆଦିବାସୀମାନଙ୍କ ଉନ୍ନୟନ ପାଇଁ କେନ୍ଦ୍ରୀୟ ସହାୟତା ଯୋଜନାରେ ଅର୍ଥ ବିନିଯୋଗ କରାଯାଇ ଚଳିତ ବର୍ଷ ସେମାନଙ୍କ ସ୍ୱାସ୍ଥ୍ୟ, ଶିକ୍ଷା ଏବଂ ଗ୍ରାମ୍ୟ ବିଦ୍ୟୁତ୍‌କରଣ ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ଆଦିମ ଆଦିବାସୀ ପିଲାଙ୍କୁ ଶିକ୍ଷିତ କରାଇବା ଓ ସେମାନଙ୍କ ଦ୍ୱାରା ବିଦ୍ୟାଳୟର ଉପସ୍ଥାନ ବୃଦ୍ଧି କରିବା ପାଇଁ, ଛାତ୍ରଛାତ୍ରୀ ଓ ଅଭିଭାବକମାନଙ୍କୁ ଏହି ଯୋଜନା ମାଧ୍ୟମରେ ପ୍ରୋତ୍ସାହନ ଭତ୍ତା ମଧ୍ୟ ପ୍ରଦାନ କରାଯାଉଛି ।

ଶିକ୍ଷାର ପ୍ରସାରକୁ ପ୍ରାଧାନ୍ୟ ଦିଆଯାଇ ଭୁବନେଶ୍ୱରସ୍ଥିତ ଆଦିବାସୀ ଭାଷା ଓ ସଂସ୍କୃତି ଅନୁଷ୍ଠାନଠାରେ ସେମାନଙ୍କ ଭାଷା ଉପରେ ସେ ଅଞ୍ଚଳର ବିଦ୍ୟାଳୟମାନଙ୍କରେ ଥିବା ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ତାଲିମ ଦିଆଯିବାର ବ୍ୟବସ୍ଥା କରାଯାଉଥିବାବେଳେ ଆଦିମ ଆଦିବାସୀଙ୍କ ସହିତ ସୁସଂପର୍କ ରଖିବା ଓ ମିଳିମିଶି ସେମାନଙ୍କ ଶିକ୍ଷାର ଉଦ୍ଦେଶ୍ୟ ଉପରେ ସଚେତନ କରାଇବା ପାଇଁ ମଧ୍ୟ ତାଲିମ ଦିଆଯାଉଛି ।

ଆଦିମ ଆଦିବାସୀଙ୍କ ସାମୂହିକ ବିକାଶ ୨୦୦୫-୦୬ ଆର୍ଥିକ ବର୍ଷରେ ଏହି ଯୋଜନା ବାବଦରେ ୮ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ବୋଲି ଅନୁସୂଚିତ ଜାତି ଓ ଜନଜାତି ଉନ୍ନୟନ ବିଭାଗ ସୂତ୍ରରୁ ପ୍ରକାଶ ।

# ସଂଗ୍ରାମୀ ନୀଳମଣି ରାଉତରାୟ : ଏକ ଶ୍ରଦ୍ଧାଞ୍ଜଳି

ଗୁରୁକଲ୍ୟାଣ ମହାପାତ୍ର

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ବିନା ହିଂସାକାଣ୍ଡରେ ଯେଉଁ ସ୍ୱାଧୀନତା ଆନ୍ଦୋଳନ ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିଥିଲା, ତହିଁରେ ଓଡ଼ିଶାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ଏହି ଆନ୍ଦୋଳନରେ ଝାସ ଦେଇ ଅନେକ ଶହୀଦ ହୋଇଥିଲେ । ଆଉ କେତେକ ଅକର୍ମଣ୍ୟ ବି ହୋଇଥିଲେ । ଯେଉଁମାନେ ଶହୀଦ ହୋଇ ନଥିଲେ କି ଅକର୍ମଣ୍ୟ ହୋଇ ନଥିଲେ, ସେମାନେ ତତ୍କାଳୀନ ବ୍ରିଟିଶ ପୁଲିସର ଅତ୍ୟାଚାରର ଶରବ୍ୟ ହୋଇଥିଲେ, ଏଥିରେ ସନ୍ଦେହ ନାହିଁ । ସେମାନେ ନିଜ ନିଜ ପାରିବାରିକ ସୁଖ ସ୍ୱାଚ୍ଛନ୍ଦ୍ୟ ବା ସଂପତ୍ତିର ମୋହକୁ ପଛରେ ପକାଇ ଦେଶ ପାଇଁ ଆନ୍ଦୋଳନ କରି କାରାବରଣ କରିଥିଲେ । ସେହିପରି ଜଣେ ଆଜୀବନ ସଂଗ୍ରାମୀ ଥିଲେ ସ୍ୱର୍ଗୀୟ ନୀଳମଣି ରାଉତରାୟ । ଯେଉଁ ସଂଗ୍ରାମୀମାନେ ଆଜି ବି ଆମ ଗହଣରେ ରହିଛନ୍ତି, ଆଉ କିଛି ବର୍ଷ ପରେ ସେମାନେ ହୁଏତ ନଥିବେ । କିନ୍ତୁ ସେମାନଙ୍କ ତ୍ୟାଗ ଓ ନିଷ୍ଠାକୁ ଭୁଲିଯିବା ଆମର ପରମ୍ପରା ପାଇଁ ଅହିତକର ବୋଲି ମନେ ହୋଇଥାଏ ।



ଏଇ ବର୍ଷକ ତଳେ ଆମ ଗହଣରେ ଥିବା ନୀଳମଣି ବାବୁ ଆଜି ନାହାନ୍ତି । ଏ କଥା ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି । ଭାରତରେ ଜଣେ କ୍ୟାବିନେଟ୍ ପାହ୍ୟାର ମନ୍ତ୍ରୀ ଭାବେ ବା ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବେ ତାଙ୍କର ଯାବତୀୟ କାର୍ଯ୍ୟାବଳୀର ପୃଷ୍ଠଭୂମିରେ ତାଙ୍କର ସଂଗ୍ରାମୀ ମନୋବୃତ୍ତି ଯେ ରହିଥିଲା, ଏହା ନିଃସନ୍ଦେହରେ କୁହାଯାଇପାରେ ।

ଭଦ୍ରକ ଜିଲ୍ଲାର ତିହିଡି ଥାନା ଅନ୍ତର୍ଗତ ମୁକୁନ୍ଦପୁର ଗ୍ରାମରେ ୧୯୨୦ ମସିହା ମଇ ମାସ ୨୪ ତାରିଖରେ ଏକ ନିମ୍ନ ମଧ୍ୟବିତ୍ତ ପରିବାରରେ ଜନ୍ମ ଗ୍ରହଣ କରିଥିବା ନୀଳମଣିଙ୍କ ଜୀବନ ବହୁ ଦୃଷ୍ଟିରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ତାଙ୍କ ଜୀବନର ଅବସାନ ଘଟିଲା ସତ କିନ୍ତୁ ଜୀବନୀ ଅସରନ୍ତି ପରି ମନେ ହୋଇଥାଏ ।

ଆଶ୍ଚର୍ଯ୍ୟର କଥା ଯେ ମାତ୍ର ଦଶବର୍ଷ ବୟସରେ ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ମାତ୍ର ଦଶଦିନ ପାଇଁ କାରାରୁଦ୍ଧ ହୋଇଥିଲେ । ଗଂଜେଇ ଓ ଅଫିମ ପ୍ରଭୃତି ନିଶାଦ୍ରବ୍ୟ ବିକ୍ରୀ ବିରୋଧରେ ଯେଉଁ ସତ୍ୟାଗ୍ରହୀମାନେ ପିକେଟିଙ୍ଗ କରି କାରାବରଣ କରିଥିଲେ, ସେହି ସରକାରୀ କାର୍ଯ୍ୟର ପ୍ରତିବାଦ କରିବା ଅଭିଯୋଗରେ ମାତ୍ର ଦଶବର୍ଷ ବୟସରେ ନୀଳମଣିଙ୍କୁ ଜେଲ୍ ଯିବାକୁ ପଡ଼ିଥିଲା । ତତ୍କାଳୀନ ବ୍ରିଟିଶ ମାଜିଷ୍ଟ୍ରେଟ୍ କିନ୍ତୁ ଦୟା ପରବଶ ହୋଇଥିଲେ ଶିଶୁ ନୀଳମଣିଙ୍କୁ ଦେଖି । ତେଣୁ ଦଶଦିନ ପରେ ତାଙ୍କୁ ସେ କାରାମୁକ୍ତ କରିଥିଲେ । ଆମ ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏହିପରି ଅନେକ ଛୋଟବଡ଼ ଘଟଣା ରହିଛି । ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଭଦ୍ରକ ହାଇସ୍କୁଲରେ ଛାତ୍ର ଥିଲାବେଳେ ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ଅର୍ଜନ କରି ବାର୍ଷିକ ଉତ୍ସବରେ ଏତେ ପୁରସ୍କାର ପାଇଥିଲେ ଯେ ସେ ଏତେଗୁଡ଼ିଏ ପୁରସ୍କାର ହାତରେ ଧରିପାରିନଥିଲେ । କିନ୍ତୁ ଦୁଃଖର କଥା, ଯେଉଁ ବ୍ରିଟିଶ ଅଫିସର ତାଙ୍କ ହାତରେ ଏହି ସବୁ ପୁରସ୍କାର ଦେଇଥିଲେ, ସେହି ଅଫିସର ଜଣକ ମାଜିଷ୍ଟ୍ରେଟ ଭାବେ ସେହି ସ୍କୁଲରୁ ତାଙ୍କୁ ଗିରଫ କରିବାକୁ ମଧ୍ୟ ହାତକାଟି ଲେଖି ଦେଇଥିଲେ । ଭାରତୀୟ ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏହିସବୁ ଘଟଣା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ହୋଇଥିଲେ ମଧ୍ୟ ଲିପିବଦ୍ଧ କରାଯାଇନାହିଁ ।

ସେହି ଇତିହାସ ପ୍ରସିଦ୍ଧ ଭଦ୍ରକ ହାଇସ୍କୁଲରେ ଅଧ୍ୟୟନ କରୁଥିବାବେଳେ ଭଦ୍ରକ ସହର ଅନ୍ତର୍ଗତ କୁଆଁସ ପଡ଼ିଆଠାରେ ଏକ ସାଧାରଣ ସଭାର ଆୟୋଜନ ନିଜର ସାଥୀମାନଙ୍କ ସହ ମିଶି ନୀଳମଣି କରାଇଥିଲେ । ସେହି ସଭାରେ ସେ ଅଧ୍ୟକ୍ଷତା ମଧ୍ୟ କରିଥିଲେ । ମାତ୍ର ସରକାରୀ ନିଷେଧାଦେଶକୁ ଅମାନ୍ୟ କରିଥିବା ଅଭିଯୋଗକ୍ରମେ ସେହି ସଭାସ୍ଥଳରୁ ନୀଳମଣିଙ୍କୁ ହିଁ ବ୍ରିଟିଶ ପୁଲିସ୍ ଗିରଫ କରିଥିଲେ ।

ଏହାଫଳରେ ନୀଳମଣି ବିଦ୍ରୋହୀ ହୋଇ ପଡ଼ିଲେ । ଅଧିକାଂଶ କ୍ଷେତ୍ରରେ ଅନ୍ୟାୟ ବିରୋଧରେ ପ୍ରତିବାଦ କରିବା ତାଙ୍କର ଏକ ଅଭ୍ୟାସରେ ପରିଣତ ହୋଇଥିଲା । ଭଦ୍ରକ ହାଇସ୍କୁଲରେ ନୀଳମଣିଙ୍କର ସହପାଠୀ ଥିବା ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଓ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର କନିଷ୍ଠ ପୁତ୍ର ଶ୍ରୀ ଗୌରଚନ୍ଦ୍ର ମହାପାତ୍ର, ସ୍କୁଲ ଦିନରୁ କଥାକୁ ସ୍ମରଣ କରି କୁହନ୍ତି, 'ଛାତ୍ର ଜୀବନରେ ନୀଳମଣି ଅତି ନିର୍ଭୀକ ଭାବେ ସ୍ପଷ୍ଟ ମତ ପ୍ରଦାନ କରି ଆସୁଥିଲେ ।'

ଭଦ୍ରକ ହାଇସ୍କୁଲରେ ପାଠ ସମାପନ କରି ନୀଳମଣି କଟକର ଇତିହାସ ପ୍ରସିଦ୍ଧ ରେଭେନ୍ସା କଲେଜରେ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ମାତ୍ର ସେଠାରେ କଲେଜ ଛାତ୍ର ୟୁନିଅନର ସଭାପତି ପଦବୀରେ କଲେଜର ଅଧକ୍ଷ ରହିବା ଏକ ଅଗଣତାନ୍ତ୍ରିକ କଥା ବୋଲି ସେ ସ୍ୱର ଉତ୍ତୋଳନ କରି ତାହା ବିରୋଧରେ ଆନ୍ଦୋଳନ ଆରମ୍ଭ କରି ଦେଲେ । ଫଳରେ ଛାତ୍ର ୟୁନିଅନର ସଭାପତି ପଦବୀ ପାଇଁ ନିର୍ବାଚନ ହୋଇ ଜଣେ ଛାତ୍ର ରହିବାର ବ୍ୟବସ୍ଥା କରାଗଲା । ସେହି କଲେଜରେ ଅଧ୍ୟୟନ କାଳରେ ୧୯୪୦ ଜାନୁଆରୀ ୨୬ ତାରିଖରେ ସେତେବେଳେ ଜାନୁଆରୀ ୨୬କୁ ସଂଗ୍ରାମୀମାନେ ଭାରତର ସ୍ୱାଧୀନତା ଦିବସ ଭାବେ ପାଳନ କରୁଥିଲେ । ନୀଳମଣି କଲେଜ ପ୍ରାଙ୍ଗଣରେ ଭାରତର ଚରଖା ଚିହ୍ନିତ ଜାତୀୟ ପତାକା ଉତ୍ତୋଳନ କାର୍ଯ୍ୟରେ ନେତୃତ୍ୱ ନେଇଥିଲେ । ଫଳରେ କଲେଜ କର୍ତ୍ତୃପକ୍ଷ ତାଙ୍କୁ କ୍ଷମାଭିକ୍ଷା କରିବାକୁ ଆଦେଶ ଦେବା ସଂଗେସଂଗେ ତାଙ୍କ ଉପରେ ୨୫ ହଜାର ଟଙ୍କାର ଜୋରିମାନା କରିଥିଲେ । ମାତ୍ର ନୀଳମଣି ନା କ୍ଷମାଭିକ୍ଷା କରିଥିଲେ ନା ଜୋରିମାନା ଦେଇଥିଲେ । ତେଣୁ ତାଙ୍କୁ ରେଭେନ୍ସା କଲେଜରୁ କେବଳ ନୁହେଁ, ପାଟଣା ବିଶ୍ୱବିଦ୍ୟାଳୟରୁ ହିଁ ବହିଷ୍କାର କରାଯାଇଥିଲା । ତଦ୍ୱାରା ତାଙ୍କର ଛାତ୍ର ଜୀବନର ପରିସମାପ୍ତି ହୁଏ ତ ଘଟିଥାନ୍ତା । ମାତ୍ର ତାଙ୍କୁ ସେସମୟରେ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ ଭାରତର ମହାନ୍ ଦେଶପ୍ରେମୀ ଡଃ ଶ୍ୟାମାପ୍ରସାଦ ମୁଖାର୍ଜୀ । ସେ ଥିଲେ ଭାରତର ଅନ୍ୟତମ ବରପୁତ୍ର ତଥା କଲିକତା ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ସାର୍ ଆଶୁତୋଷ ମୁଖାର୍ଜୀଙ୍କର ତନୟ । ଡଃ ମୁଖାର୍ଜୀ କଲିକତାର ତତ୍କାଳୀନ ବିଦ୍ୟାସାଗର କଲେଜ ଅଧକ୍ଷଙ୍କ ସହ କଥାବାର୍ତ୍ତା କରି ନୀଳମଣିଙ୍କ ନାମ ଲେଖାଇଥିଲେ । ସେତେବେଳେ ସାଧାରଣତଃ ଗୋଟିଏ ବିଶ୍ୱବିଦ୍ୟାଳୟରୁ ବହିଷ୍କୃତ ଛାତ୍ରଙ୍କୁ ଅନ୍ୟ ବିଶ୍ୱବିଦ୍ୟାଳୟରେ ସ୍ଥାନ ମିଳୁ ନଥିଲା । କିନ୍ତୁ ନୀଳମଣିଙ୍କ କ୍ଷେତ୍ରରେ ଏହାର ବ୍ୟତିକ୍ରମ ପରିଲକ୍ଷିତ ହୋଇଥିଲା ।

କଲିକତା (ଏବର କୋଲକାତା)ରେ ଅଧ୍ୟୟନ କାଳରେ ନୀଳମଣି ଛାତ୍ର ରାଜନୀତି ସହିତ ଓତଃପ୍ରୋତଃ ଭାବେ ଜଡ଼ିତ ହୋଇ ପଡ଼ିଥିଲେ ଏବଂ ତତ୍କାଳୀନ ବ୍ରିଟିଶ ସରକାରଙ୍କ ବିରୋଧରେ ବିଭିନ୍ନ ସଭା ଓ ଶୋଭାଯାତ୍ରା ପ୍ରଭୃତିର ଆୟୋଜନ କରି ଜଣେ ଛାତ୍ରନେତା ଭାବେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଏପରିକି ନେତାଜୀ ସୁଭାଷଚନ୍ଦ୍ର ବୋଷ ନୀଳମଣିଙ୍କୁ ତାଙ୍କ ଘରକୁ ଡକାଇ ଓଡ଼ିଶାର ଫରୱାର୍ଡ଼ ବ୍ଲକ୍‌କୁ ସୁଦୃଢ଼ କରିବାକୁ ମଧ ପ୍ରବର୍ତ୍ତାଇ ଥିଲେ ।

କଲିକତାରେ ସ୍ନାତକ ଡିଗ୍ରୀ ହାସଲ କରିବା ପରେ, ନୀଳମଣି ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନର ସ୍ନାତକୋତ୍ତର ପାଠ୍ୟକ୍ରମରେ ନାମ ଲେଖାଇଥିଲେ । ସେଠାରେ ସେହି ସମୟରେ ସେ ଆଇନ ପାଠ୍ୟକ୍ରମରେ ମଧ ନାମ ଲେଖାଇଥିଲେ । ଏହାପରେ ସେ ସେଠାରେ ଛାତ୍ର ଫେଡେରେସନ୍ ସଂଗଠନରେ ସାମିଲ ହୋଇ ଛାତ୍ରନେତା ଭାବେ ପରିଚିତ ହୋଇଥିଲେ । ଫଳରେ ୧୯୪୨ ଅଗଷ୍ଟ ମାସରେ ଭାରତଛାଡ଼ ଆନ୍ଦୋଳନ ସମୟରେ ସେହି ବିଶ୍ୱବିଦ୍ୟାଳୟ ପରିସର ମଧ ସରଗରମ ହୋଇ ପଡ଼ିଥିଲା । ବ୍ରିଟିଶ ପୁଲିସ୍ ବାଧ ହୋଇ ଛାତ୍ରମାନଙ୍କୁ ବିଶ୍ୱବିଦ୍ୟାଳୟ ପରିସରରୁ ବିତାଡିତ କରିଥିଲେ । ନୀଳମଣିଙ୍କ ବିରୋଧରେ ୱାରେଣ୍ଟ ଜାରି କରି ପୁଲିସ ତାଙ୍କୁ ଗିରଫ କରିବାକୁ ଉଦ୍ୟମ କରିଥିଲେ । ମାତ୍ର କୌଶଳକ୍ରମେ ସେ ବନାରସରୁ ପଳାୟନ କରି ଭଦ୍ରକରେ ପହଞ୍ଚି ଯାଇଥିଲେ । ଭଦ୍ରକରେ ସରକାରୀ ସଂପତ୍ତି ଉପରେ ଆକ୍ରମଣ ପାଇଁ ମସୁଧା କରିବା ଓ ସରକାରଙ୍କୁ ଟିକସ ନଦେବାକୁ ପ୍ରବର୍ତ୍ତାଇଥିବା ଅଭିଯୋଗରେ ପୁଲିସ୍ ତାଙ୍କୁ ସେଠାରେ ଗିରଫ କରିଥିଲେ । ପରେ ବାଲେଶ୍ୱରରୁ ଖଲାସ ହେବା ପରେ ସେ କଲିକତା ବିଶ୍ୱିଦ୍ୟାଳୟରୁ ଆଇନରେ ସ୍ନାତକ ଡିଗ୍ରୀ ହାସଲ କରି ୧୯୪୭ରେ ଓଡ଼ିଶାକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଓଡ଼ିଶାରେ ସେ ଜନସାଧାରଣଙ୍କ କାର୍ଯ୍ୟରେ ନିଜକୁ ସଂପୂର୍ଣ୍ଣ ଭାବେ ନିୟୋଜିତ କରିବାକୁ ଚାହିଁଥିଲେ । ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ସ୍ୱାଧୀନଚେତା ବ୍ୟକ୍ତି ହୋଇଥିବା କାରଣରୁ କୌଣସି ସରକାରୀ ଚାକିରି ନକରି ସେ କିଛିଦିନ ପାଇଁ ଆଇନ ବ୍ୟବସାୟରେ ସାମିଲ ହୋଇଥିଲେ । ପରେ ଡଃ ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରତିଷ୍ଠିତ 'ପ୍ରଜାତନ୍ତ୍ର' ସମ୍ବାଦପତ୍ରରେ ସାଧାରଣ ପରିଚାଳକ ଓ ସଂପାଦକ ଭାବେ କାର୍ଯ୍ୟ କରି ପ୍ରଶଂସିତ ହୋଇଥିଲେ । ଛାତ୍ର ଜୀବନରେ ସେ ସାମୟିକ ଭାବେ ବିଭିନ୍ନ ଇଂରାଜୀ ଦୈନିକର ସମ୍ବାଦଦାତା ଭାବେ ମଧ କାର୍ଯ୍ୟ କରିଥିଲେ ।

୧୯୪୮ ମସିହାରେ ପ୍ରଥମଥର ଲାଗି ସେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ ସକ୍ରିୟ ରାଜନୀତିରେ ଭାଗ ନେଇଥିଲେ । ବିଧାୟକ ହେବାର ପ୍ରାୟ ବର୍ଷକ ପରେ ସେ ସମାଜସେବିକା ଓ ଲେଖିକା ନଳିନୀ ଦେବୀଙ୍କୁ (ଏବେ ସ୍ୱର୍ଗରେ) ବିବାହ କରିଥିଲେ । ୧୯୫୨ର ପ୍ରଥମ ସାଧାରଣ ନିର୍ବାଚନରେ ଧାମନଗର ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳରେ ସେ ପ୍ରଥମେ ଉପମନ୍ତ୍ରୀ ହେବାର ଗୌରବ ଅର୍ଜନ କରିଥିଲେ । ଘରୋଇ ବିଭାଗ ଦାୟିତ୍ୱରେ ଥିବାବେଳେ ସେ ତାଙ୍କ ଅଧୀନରେ ଥିବା ଜେଲ୍‌ଗୁଡ଼ିକର ସଂସ୍କାର ଦିଗରେ ପଦକ୍ଷେପ ନେଇଥିଲେ । ପରେ ହରେକୃଷ୍ଣ ମହତାବ ମନ୍ତ୍ରିମଣ୍ଡଳରେ ଜଣେ ମନ୍ତ୍ରୀଭାବେ ସେ ମଧ ନିଜର ଦକ୍ଷତା ପ୍ରମାଣିତ କରିଥିଲେ ।

ସ୍ୱାଧୀନୋତ୍ତର କାଳରେ ଅଧିକାଂଶ ସମୟରେ ନୀଳମଣି କ୍ଷମତା ରାଜନୀତିରେ ଏପରିକି ସରକାରରେ ରହି ଆସିଥିଲେ ମଧ୍ୟ ଜଣେ ସ୍ୱାଧୀନତା ସଂଗ୍ରାମୀ ହୋଇଥିବାରୁ ଜନସାଧାରଣଙ୍କ କାର୍ଯ୍ୟକୁ ସଦାସର୍ବଦା ସେ ଗୁରୁତ୍ୱ ଦେଇ ଆସିଥିଲେ । ଛାତ୍ର ଜୀବନରେ ସେ ବିହାର ଭୂମିକମ୍ପ ସମୟରେ ହେଉ କିମ୍ବା ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ଓଡ଼ିଶାରେ ହୋଇଥିବା ଦୁର୍ଭିକ୍ଷଜନିତ ପରିସ୍ଥିତିରେ ହେଉ, ବିପନ୍ନ ଲୋକଙ୍କ ଉଦ୍ଧାର ଓ ରିଲିଫ୍ କାର୍ଯ୍ୟରେ ସେ ଆଗ୍ରହ ପ୍ରକାଶ କରି ଆସୁଥିଲେ । ଏମିତିକି ୧୯୫୫ରେ ଉପକୂଳ ଓଡ଼ିଶାରେ ସୃଷ୍ଟି ହୋଇଥିବା ଭୟାବହ ବନ୍ୟା ପରିସ୍ଥିତିକୁ ସେ ଗୁରୁତ୍ୱ ଦେବାରୁ ଉଦ୍ଧାର ଓ ରିଲିଫ୍ କାର୍ଯ୍ୟ ଠିକ୍ ଭାବେ ଚାଲିଥିଲା ।

୧୯୭୧ ମସିହାରେ ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳରେ ସେ ଅନ୍ୟତମ ଉପମୁଖ୍ୟମନ୍ତ୍ରୀ ଭାବେ ଘରୋଇ, ଖଣି ଓ ଭୂତତ୍ତ୍ୱ, ଯୋଗାଣ ଓ ସରକାରୀ ଉଦ୍ୟୋଗ ବିଭାଗର ଦାୟିତ୍ୱରେ ରହି ସେ ତାଙ୍କର ଦକ୍ଷତା ପ୍ରଦର୍ଶନ କରିଥିଲେ । ଏହା ପୂର୍ବରୁ ସେ ୧୯୫୨ରେ ନବକୃଷ୍ଣ ଚୌଧୁରୀ ଓ ୧୯୫୭ରେ ହରେକୃଷ୍ଣ ମହତାବଙ୍କ ମନ୍ତ୍ରିମଣ୍ଡଳରେ ଯୋଗାଣ, ପରିବହନ ଓ ଶ୍ରମ ବିଭାଗର କ୍ୟାବିନେଟ ମନ୍ତ୍ରୀ ହୋଇଥିଲେ । ୧୯୬୧ରେ ବିଜୁ ପଟ୍ଟନାୟକ ଓ ୧୯୬୩ରେ ବୀରେନ ମିତ୍ରଙ୍କ ମନ୍ତ୍ରିମଣ୍ଡଳରେ ମଧ୍ୟ ସେ ରହି ଦକ୍ଷତା ପ୍ରଦର୍ଶନ କରିବା ପରେ ୧୯୭୭ରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାର ଗୌରବ ଅର୍ଜନ କରିଥିଲେ । ୧୯୭୬ରେ ସେ ରାଜ୍ୟସଭାକୁ ନିର୍ବାଚିତ ହୋଇ ଓଡ଼ିଶାର ସମସ୍ୟାକୁ ଜାତୀୟ ସ୍ତରରେ ଉପସ୍ଥାପନ କରିବାର ସୁଯୋଗ ପାଇଥିଲେ । ୧୯୮୯ରେ ସେ ପୁରୀ ଲୋକସଭା ଆସନରୁ ନିର୍ବାଚିତ ହୋଇ କେନ୍ଦ୍ରରେ ବିଶ୍ୱନାଥ ପ୍ରତାପ ସିଂଙ୍କ ମନ୍ତ୍ରିମଣ୍ଡଳରେ ପ୍ରଥମେ ସ୍ୱାସ୍ଥ୍ୟ ଓ ପରେ ଜଙ୍ଗଲ ତଥା ପରିବେଶ ବିଭାଗର କ୍ୟାବିନେଟ୍ ମନ୍ତ୍ରୀ ଭାବେ ନିଜର ଦକ୍ଷତା ପ୍ରଦର୍ଶନ କରିଥିଲେ । ଏହି ସମୟରେ ସେ ଓଡ଼ିଶା ତଥା ଭାରତର ବହୁ ଜନହିତକର କାର୍ଯ୍ୟ ହାତକୁ ନେଇଥିଲେ ।

ବିଭିନ୍ନ ସମସ୍ୟାକୁ ଗଭୀର ଭାବେ ଅଧ୍ୟୟନ କରି ତା'ର ସମାଧାନର ପଥ ଖୋଜି ପାଇବା ଦିଗରେ ସେ ସମୟ ବିତାଇ ଆସୁଥିଲେ । ସେ ବହୁ ବିଷୟରେ ଜ୍ଞାନାର୍ଜନ କରିଥିଲେ ହେଁ ଲେଖିଥିଲେ ଅତି ଅଳ୍ପ । କିନ୍ତୁ ବିଶିଷ୍ଟ ସାହିତ୍ୟିକ ଓ ସାମ୍ବାଦିକ ଶ୍ରୀ ଶଶୀଭୂଷଣ ମିଶ୍ରଙ୍କ (ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗର ପୂର୍ବତନ ନିର୍ଦ୍ଦେଶକ ମଧ୍ୟ) ଅନୁରୋଧକ୍ରମେ ନୀଳମଣି ତାଙ୍କର ଆତ୍ମଜୀବନୀ ଲେଖି ଚାଲିଲେ । ସେହି ଆତ୍ମଜୀବନୀ ସ୍ମୃତି ଓ ଅନୁଭୂତି ନାମରେ ପ୍ରଥମେ ୧୯୮୬ ଅକ୍ଟୋବର ମାସରେ 'ବିଜୟା ଦଶମୀ'ରେ ପ୍ରକାଶ ପାଇଥିଲା । ତାହାକୁ ଅନେକ ସମାଲୋଚକ ବିବାଦୀୟ ବୋଲି କହିଥିଲେ ମଧ୍ୟ ଅର୍ଦ୍ଧ ଶତାବ୍ଦୀ ବ୍ୟାପୀ ଓଡ଼ିଶାର ସାମାଜିକ ଓ ରାଜନୀତିକ ଜୀବନର ଚିତ୍ର ତହିଁରେ ଦେଖିବାକୁ ମିଳିଥାଏ । କଟକରେ ସେହି ୧୯୮୬ ଅକ୍ଟୋବର ମାସରେ 'ସ୍ମୃତି ଓ ଅନୁଭୂତି' ପୁସ୍ତକଟି ଆନୁଷ୍ଠାନିକ ଭାବରେ 'ୟୁନିଭର୍ସ' ପରିସରରେ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଉନ୍ମୋଚିତ ହୋଇଥିଲା । ତତ୍କାଳୀନ ସମାଜର ସଂପାଦକ ଡଃ ରାଧାନାଥ ରଥ ସେହି ଆତ୍ମଜୀବନୀକୁ ଉନ୍ମୋଚନ କରିଥିଲେ । ଜଣେ ସାମ୍ବାଦିକ ଓ ଲେଖକ ଭାବେ ଏଇ ଲେଖକ ନିମନ୍ତ୍ରିତ ହୋଇ ଯାଇଥିଲା । ପୁସ୍ତକର ପ୍ରକାଶକ ଗ୍ରନ୍ଥ ମନ୍ଦିରର ସତ୍ତ୍ୱାଧିକାରୀ ଶ୍ରୀ ଅଭିରାମ ମହାପାତ୍ର, ଶ୍ରୀ ଶଶୀଭୂଷଣ ମିଶ୍ର ଓ ଶ୍ରୀ ବ୍ରଜକିଶୋର ପଟ୍ଟନାୟକ ପ୍ରଭୃତି ସେହି ଉନ୍ମୋଚନ ଉତ୍ସବରେ ଉପସ୍ଥିତ ଥିଲେ । ସ୍ୱର୍ଗୀୟ ରାଧାନାଥ ରଥଙ୍କ ଇଚ୍ଛାକ୍ରମେ ଶ୍ରୀ ଗିରିଜାଭୂଷଣ ପଟ୍ଟନାୟକ ଅନୁରୋଧ କରିବାରୁ 'ସମାଜ'ରେ ସେ ସଂକ୍ରାନ୍ତୀୟ ବିବରଣୀ ପ୍ରକାଶନ ନିମନ୍ତେ ମୋତେ ଲେଖିବାକୁ ପଡ଼ିଥିଲା । ପରେ ସେହି ପୁସ୍ତକର ପରିମାର୍ଜିତ ଓ ପରିବର୍ଦ୍ଧିତ ସଂସ୍କରଣ ପ୍ରକାଶ ପାଇ ଗତ ୨୦୦୧ ମସିହା ଅଗଷ୍ଟ ମାସରେ ଭୁବନେଶ୍ୱରର ରବୀନ୍ଦ୍ର ମଣ୍ଡପଠାରେ ଉନ୍ମୋଚିତ ହୋଇଥିଲା । ଭଦ୍ରକ ସମ୍ମିଳନୀ ନାମକ ଏକ ସଂସ୍ଥା ସହିତ ଏଇ ଲେଖକ ମଧ୍ୟ ସେହି ଉନ୍ମୋଚନ ଉତ୍ସବରେ ସହଯୋଗ କରିଥିଲା । ସ୍ୱୟମ୍ ନୀଳମଣି ବାବୁ ସେହି ଉତ୍ସବରେ ଉପସ୍ଥିତ ଥିଲେ । ବର୍ଷୀୟାନ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଜୟକୃଷ୍ଣ ମହାନ୍ତି, ବିଶିଷ୍ଟ ସାହିତ୍ୟିକ ଶ୍ରୀ ଚିତ୍ତରଂଜନ ଦାସ ଓ ଶ୍ରୀ ଭବାନୀଚରଣ ପଟ୍ଟନାୟକ ପ୍ରଭୃତି ଏହି ଉତ୍ସବରେ ଯୋଗ ଦେଇଥିଲେ । ନୀଳମଣି ବାବୁଙ୍କ ଏକମାତ୍ର ପୁତ୍ର ଶ୍ରୀ ବିଜୟଶ୍ରୀ ରାଉତରାୟ (ଓଡ଼ିଶା ସରକାରରେ ଏବେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ) ମଧ୍ୟ ସେହି ଉତ୍ସବରେ ଉପସ୍ଥିତ ଥିଲେ ।

ବଡ଼ ବିଚିତ୍ର ଘଟଣା ଯେ ସଂଗ୍ରାମୀ ନୀଳମଣି ବାବୁ ତାଙ୍କର ଅନ୍ୟତମ ପ୍ରିୟ କର୍ମଭୂମି କଟକ ସହରରେ ଗତବର୍ଷ ଅକ୍ଟୋବର ୪ ତାରିଖରେ ସ୍ୱର୍ଗାରୋହଣ କରିଥିଲେ । ତାଙ୍କ ବିୟୋଗରେ ରାଜ୍ୟ ସରକାରଙ୍କ ସମେତ ବେସରକାରୀ ସଂସ୍ଥା, ରାଜ୍ୟ ଶାଖା ସ୍ୱାଧୀନତା ସଂଗ୍ରାମୀ ଉତ୍ତରାଧିକାରୀ ସଂଗଠନ ଭୁବନେଶ୍ୱରରେ ଶୋକ ସଭାମାନ ଆୟୋଜନ କରିଥିଲେ ।

ସ୍ୱାଧୀନ ଭାରତରେ ସେ ଯେଉଁସବୁ ସଂସ୍କାରମୂଳକ ପଦକ୍ଷେପ କ୍ଷମତା ରାଜନୀତିରେ ରହି ସେ ନେଇପାରିଥିଲେ, ସେସବୁ ଯେ ସ୍ୱାଧୀନତା ସଂଗ୍ରାମର ପୃଷ୍ଠଭୂମିର ପ୍ରେରଣାରୁ ସମ୍ଭବ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । ତାଙ୍କର ପ୍ରଥମ ବାର୍ଷିକ ଶ୍ରାଦ୍ଧ ବାର୍ଷିକରେ ଏଇ ଲେଖକ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ସାଧାରଣ ସଂପାଦକ
ଅଖିଳ ଭାରତ ସ୍ୱାଧୀନତା ସଂଗ୍ରାମୀ
ଉତ୍ତରାଧିକାରୀ ସଂଗଠନ (ଓଡ଼ିଶା ଶାଖା)
ଘର ନଂ-ଡି,୧୦/୫, ୟୁନିଟ୍-୮, ଭୁବନେଶ୍ୱର-୧୨

# ଭାଷା ସଂଗ୍ରାମ ଓ ନବ ଓଡ଼ିଶାର ସ୍ଥାପନା

ସୁରସିଂହ ପଟ୍ଟନାୟକ

ଓଡ଼ିଶାର ସ୍ୱାଧୀନତାର ୧୫୬୮ ମସିହାର ଅବଲୁପ୍ତି ପରେ, କ୍ରମଶଃ ସଙ୍କୁଚିତ ହୋଇ ଓଡ଼ିଶାର ସୀମା ୧୮୦୩ ବେଳକୁ କ୍ଷୁଦ୍ର ଓଡ଼ିଶା ଡିଭିଜନର ୩ ଗୋଟି ଜିଲ୍ଲା ଓ କେତେଗୋଟି ଗଡ଼ଜାତ ମଧ୍ୟରେ ଆବଦ୍ଧ ରହିଥିଲା । ଓଡ଼ିଆ ଭାଷାକୁ ନିର୍ବାପିତ କରିବା ପାଇଁ ୧୮୬୭ରୁ ୧୮୭୦ ମଧ୍ୟରେ ଯେଉଁ ହୀନଚକ୍ରାନ୍ତ ସଂଗଠିତ ହୋଇଥିଲା, ତାହାର ବିରୁଦ୍ଧରେ ଗୌରୀଶଙ୍କର ଓ ଫକୀରମୋହନଙ୍କର ସଞ୍ଚାଳିତ ଆନ୍ଦୋଳନକୁ ରେଭେନ୍ସା ଓ ବୀମସ୍ ସାହେବଙ୍କର ଅକୁଣ୍ଠ ସମର୍ଥନ, ସମସ୍ୟାର ଆଶୁ ସମାଧାନ ଘଟାଇ ଥିଲା ।

ମାତ୍ର ଏଣେ ୧୫.୦୧.୧୮୯୫ରେ ମଧ୍ୟପ୍ରଦେଶ ସରକାରଙ୍କର ସମ୍ବଲପୁର ଜିଲ୍ଲାରୁ ଓଡ଼ିଆ ଭାଷାର ଉଚ୍ଛେଦ ଓ ହିନ୍ଦୀ ଭାଷା ପ୍ରଚଳନ ପାଇଁ ଜାରି ହୋଇଥିବା ନିର୍ଦ୍ଦେଶନାମା ବିରୁଦ୍ଧରେ ଧରଣୀଧର ମିଶ୍ର ଓ ସ୍ୱଭାବ କବି ଗଙ୍ଗାଧରଙ୍କର ଅଧିନାୟକତ୍ୱରେ ଯେଉଁ ସ୍ୱତଃସ୍ଫୂର୍ତ୍ତ ସଂଗ୍ରାମ ସଞ୍ଚାଳିତ ହୋଇଥିଲା, ତାହାର ପଟ୍ଟାନ୍ତର ନାହିଁ । ଓଡ଼ିଆ ଭାଷା ଉଚ୍ଛେଦ ପାଇଁ ମଧ୍ୟପ୍ରଦେଶ ସରକାରଙ୍କର ନିର୍ଦ୍ଦେଶନାମାରେ ଏପରି ଉଲ୍ଲେଖ ରହିଥିଲା । 'ସମ୍ବଲପୁରର ଓଡ଼ିଆ ଭାଷା, ଓଡ଼ିଶାରେ ପ୍ରଚଳିତ ଓଡ଼ିଆ ଭାଷା ନୁହେଁ । ଏହା ଏକ ସ୍ଥାନୀୟ ଭାଷା ଯହିଁରେ ବ୍ୟାପକ ଭାବେ ଛତିଶିଗଡ଼ୀ ଓ ହିନ୍ଦୀଭାଷାର ମିଶ୍ରଣ ରହିଅଛି ।'

ଏହି ଯୁକ୍ତିର ପ୍ରତ୍ୟୁତ୍ତରରେ ଧରଣୀଧର ମିଶ୍ରଙ୍କ ନେତୃତ୍ୱରେ ୫.୭.୧୮୯୫ରେ ୨୩୬୪ ବ୍ୟକ୍ତିଙ୍କର ସ୍ୱାକ୍ଷର ସମ୍ବଳିତ ଯେଉଁ ମେମୋରାଣ୍ଡମ ଭାରତର ବଡ଼ଲାଟ୍ ଲର୍ଡ଼ ଏଲଗିନ୍‌ଙ୍କୁ ପ୍ରେରିତ ହୋଇଥିଲା, ସେଥିରେ ଏହିଭଳି ଉଲ୍ଲେଖ ରହିଥିଲା ।

'ସମ୍ବଲପୁରର ଭାଷା ଓଡ଼ିଶାର ଓଡ଼ିଆ ନୁହେଁ, ଏକଥା ସତ୍ୟ ନୁହେଁ । ଓଡ଼ିଶାର ସ୍କୁଲ ଇନ୍‌ସପେକ୍ଟର କିମ୍ବା ଓଡ଼ିଆ ଉଚ୍ଚ ପଦସ୍ଥ ବିଦ୍ୱାନ ବ୍ୟକ୍ତିମାନଙ୍କର ନିକଟରେ ଜିଜ୍ଞାସା କଲେ ସରକାର ଏହାର ପ୍ରକୃତ ଭାବ ଜାଣି ପାରିବେ । ଦୂରତ୍ୱ ଯୋଗୁଁ ପ୍ରତ୍ୟେକ ଭାଷାର ପ୍ରାଦେଶିକ ଭେଦ ଦେଖାଯାଏ । କଲିକତାର ବଙ୍ଗଳା ସହିତ ନଦିଆର ବଙ୍ଗଳା ଭାଷାରେ ପ୍ରଭେଦ ଅଛି । ଢାକାର ବଙ୍ଗ ଭାଷାର ଅଧିକ ପ୍ରଭେଦ ଦୃଷ୍ଟ ହୁଏ । ଇଂଲଣ୍ଡର ୟାର୍କ ସାୟାରରେ ପ୍ରଚଳିତ ଭାଷା ଲଣ୍ଡନରୁ ଭିନ୍ନ ହେଲେ ମଧ୍ୟ ତାହା ଇଂରାଜୀ ଅଟେ ।

ଚିଫ୍ କମିଶନର ସାହେବ ବାହାଦୂର, ହିନ୍ଦୀ ପ୍ରଚଳିତ ହେବା ବିରୋଧରେ ଯେଉଁ ଦରଖାସ୍ତ ପ୍ରାପ୍ତ ହୋଇଥିଲେ, ତାହା ଭାବୋଚ୍ଛ୍ୱାସ ପ୍ରଣୋଦିତ ବୋଲି ଅଗ୍ରାହ୍ୟ କରିଥିବା ଜାଣି ଆବେଦନକାରୀମାନେ ଦୁଃଖିତ । ଆବେଦନକାରୀମାନେ ପ୍ରଦର୍ଶନ କରିବାକୁ ବାଧ୍ୟ ହେଉଛନ୍ତି ଯେ ଓଡ଼ିଆ ଭାଷା ସୁପାଠ୍ୟ, ପ୍ରାଚୀନ ଓ ଆଧୁନିକ ସାହିତ୍ୟରେ ପରିପୂର୍ଣ୍ଣ । ଓଡ଼ିଆ ଭାଷାରେ ସେହି ସମସ୍ତ ଚିହ୍ନ ସମ୍ପୂର୍ଣ୍ଣ ରୂପେ ରହିଅଛି, ଯହିଁରୁ ଜଣାଯାଏ ଯେ ଏହି ଭାଷା ସ୍ୱାଧୀନ ଏବଂ କେବେ ବିନାଶ ପ୍ରାପ୍ତ ହେବ ନାହିଁ । ଶ୍ରୀଯୁକ୍ତ ବୀମ୍‌ସ ସାହେବଙ୍କର ଓଡ଼ିଆ ଭାଷା ବିଷୟକ ପ୍ରସିଦ୍ଧ ଗ୍ରନ୍ଥ ପାଠକଲେ ଏହା ଜଣାପଡ଼ିବ ।

ଶ୍ରୀଯୁକ୍ତ ଚାର୍ଲ୍ସ ଗ୍ରାଣ୍ଟ ସାହେବ, ମଧ୍ୟପ୍ରଦେଶ ଗେଜେଟିଆରର ଭୂମିକାରେ ଲେଖି ଅଛନ୍ତି ଯେ ସମ୍ବଲପୁର ଓ ତାହାର ଗଡ଼ଜାତ ମାହାଲ ସହିତ, ଛତିଶିଗଡ଼ ଅନ୍ୟାଂଶର କୌଣସି ଭୌଗଳିକ ବା ଐତିହାସିକ ସଂପର୍କ ନାହିଁ ।

ଆବେଦନକାରୀମାନେ ସ୍ପଷ୍ଟ ରୂପେ ପ୍ରଦର୍ଶନ କରୁଅଛନ୍ତି ଯେ ଭାଷାଦି ଶିକ୍ଷାର ସୁବିଧା ନିମିତ୍ତ ହେଉ ଅଥବା ଐତିହାସିକ କାରଣରୁ ହେଉ ସମ୍ବଲପୁରରେ ଓଡ଼ିଆ ଭାଷା ଅକ୍ଷୁଣ୍ଣ ରହିବା ଉଚିତ୍ । କିନ୍ତୁ ଏହା ମଧ୍ୟ ପ୍ରଦର୍ଶନ ହୋଇଛି ଶାସନ କାର୍ଯ୍ୟରେ ସେପରି କିଛି ବାଧା ଉପୁଜିବ ନାହିଁ । ତଥାପି କାର୍ଯ୍ୟର ସୁକରଣ ନିମନ୍ତେ ଯଦି ଭାଷା ପରିବର୍ତ୍ତନ ବାଞ୍ଛନୀୟ ହୁଏ, ତେବେ ସମ୍ବଲପୁର ଓ ତାହାର ଗଡ଼ଜାତ ମାହାଲମାନଙ୍କୁ ବଙ୍ଗ ଗଭର୍ଣ୍ଣମେଣ୍ଟଙ୍କର ହସ୍ତରେ ସମର୍ପଣ କରି ଦିଆଯାଉ, କାରଣ ଓଡ଼ିଆ ଲୋକଙ୍କର ସହିତ ଏହି ଲୋକମାନଙ୍କର ଭୌଗଳିକ, ଐତିହାସିକ ଓ ସାମାଜିକ ସଂପର୍କ ଥିବାରୁ, ଏହି ପ୍ରକାର ପରିବର୍ତ୍ତନ ସମ୍ବଲପୁରବାସୀଙ୍କ ପକ୍ଷେ ମଙ୍ଗଳକର ହେବ । ସମ୍ବଲପୁର କଟକର ଦୂରତ୍ୱ ରାୟପୁର ଦୂରତ୍ୱରୁ ଅଧିକ ନୁହେଁ । ଏହି ବକ୍ତବ୍ୟ ମାଧ୍ୟମରେ ଦେଶ ବତ୍ସଳତାର ଯେଉଁ ଦୁର୍ବାର ଅଗ୍ନିଶିଖା ପ୍ରଜ୍ଜ୍ୱଳିତ ହୋଇଥିଲା ତାହାର ତୁଳନା ନାହିଁ ।

ଓଡ଼ିଆ ଭାଷା ବିଲୁପ୍ତି ଆଦେଶ ପ୍ରଚାରିତ ହେବାପରେ କଟକରେ ଉତ୍କଳ ସଭାର ସଭାପତି ମଧୁସୂଦନ ଦାସ କ୍ରମାନ୍ୱୟରେ ଉତ୍କଳ ଦୀପିକାରେ 'ମଧ୍ୟପ୍ରଦେଶରୁ ଓଡ଼ିଆ ଭାଷାର ନିର୍ବାସ' ଶୀର୍ଷକ ଇଂରାଜୀରେ ସାତଗୋଟି ଭାଷାତାତ୍ତ୍ୱିକ ପ୍ରବନ୍ଧ ଲେଖି ଏହାର ଶାଣିତ ଓ ତୀବ୍ର ପ୍ରତିବାଦ କରିଥିଲେ । ତାହା ସହିତ ୨୦.୬.୧୮୯୫ରେ ସେ ଯେଉଁ ମେମୋରଣ୍ଡମ ବଡ଼ଲାଟଙ୍କୁ ପ୍ରେରିତ କରିଥିଲେ ସେଥିରେ ଉଲ୍ଲେଖ କରିଥିଲେ ଯେ 'ମାତୃଭାଷାର କଣ୍ଠରୋଧ କରିବା ଭଳି ବିଭତ୍ସ ଅପରାଧ ବର୍ବରତମ ପ୍ରଶାସନରେ ମଧ୍ୟ ଦେଖାଯାଏ ନାହିଁ ।'

ଏଣେ ୧୮୯୯ ବେଳକୁ ସମ୍ବଲପୁର ଜିଲ୍ଲାରେ ୮୨ ଗୋଟି ଓଡ଼ିଆ ପ୍ରାଥମିକ ସ୍କୁଲର ଉଚ୍ଛେଦ, ତୃତୀୟ ଶ୍ରେଣୀଠାରୁ ହିନ୍ଦୀ ଭାଷାର ବାଧ୍ୟତାମୂଳକ ପ୍ରଚଳନ ସହିତ ବିଭିନ୍ନ ଆଦେଶ, ସମନ, ଆଉ ଜମି ସଂପର୍କୀୟ ଦସ୍ତାବିଜ ହିନ୍ଦୀ ଭାଷାରେ ଲିଖିତ ହେବାରୁ, ସମଗ୍ର ଜିଲ୍ଲାରେ ଅଣନିଃଶ୍ୱାସୀ ରୁଦ୍ଧଶ୍ୱାସର ଅବସ୍ଥା ସୃଷ୍ଟି ହୋଇଥିଲା । ଏହା ବିରୁଦ୍ଧରେ ଦ୍ୱିତୀୟ ମେମୋରଣ୍ଡମ୍ ମଦନ ମୋହନ ମିଶ୍ର, ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୂପକାର ଓ ମହନ୍ତ ବିହାରୀ ଦାସଙ୍କର ନେତୃତ୍ୱରେ ୨୭.୦୧.୧୯୦୧ରେ ଭାରତର ବଡ଼ଲାଟଙ୍କୁ ପ୍ରେରିତ ହୋଇଥିଲା ।

ପ୍ରାୟ ୧୮୯୯ ମସିହାରେ ଏଲଗିନଙ୍କ ସ୍ଥାନରେ ଲର୍ଡ଼ କର୍ଜନଙ୍କୁ ଭାରତର ବଡ଼ଲାଟ ରୂପରେ ଅଧିଷ୍ଠିତ କରାଯାଇଥିଲା । ମଧୁସୂଦନଙ୍କର ୧୮୯୭ରେ ଇଂଲଣ୍ଡ ପରିଦର୍ଶନ ପରେ ସେ କ୍ରମାନ୍ୱୟରେ ବଡ଼ଲାଟଙ୍କୁ ଭାଷା ସମସ୍ୟା ସଂପର୍କୀୟ ଦାବିପତ୍ର ମାନ ପ୍ରେରିତ କରୁଥିଲେ । ଏହିଭଳି ଏକ ଦାବିପତ୍ର ପ୍ରାପ୍ତ ହୋଇ ଲର୍ଡ଼ କର୍ଜନଙ୍କର ନିମନ୍ତ୍ରଣରେ, ମଧୁସୂଦନ ବଡ଼ଲାଟଙ୍କୁ ସିମିଲାଠାରେ ୧୯୦୦ ମସିହା ଅକ୍ଟୋବର ତୃତୀୟ ସପ୍ତାହରେ ଭେଟି ଓଡ଼ିଆ ଜାତିର ଅନ୍ତର୍ଦାହ, ଭାଷା ସମସ୍ୟା ଓ ବିଭାଜିତ ଓଡ଼ିଆ ଭାଷୀ ଅଞ୍ଚଳର ମିଶ୍ରଣ ଲାଗି ଦାବି ଅତ୍ୟନ୍ତ ବିହ୍ୱଳିତ କଣ୍ଠରେ ଉପସ୍ଥାପିତ କରିଥିଲେ, ଯାହା ଲର୍ଡ଼ କର୍ଜନଙ୍କୁ ଅଭିଭୂତ କରିଥିଲା । ମଧୁସୂଦନଙ୍କର ସ୍ୱତନ୍ତ୍ର ନିମନ୍ତ୍ରଣରେ ୧୬.୧୨.୧୯୦୦ରେ ଲର୍ଡ଼ କର୍ଜନ ପୁରୀ ଓ ଭୁବନେଶ୍ୱରର ଅପୂର୍ବ କଳା ଭାସ୍କର୍ଯ୍ୟ ସମ୍ବଳିତ ମନ୍ଦିରାବଳୀ ପରିଦର୍ଶନ ପରେ ସେ ବିଖଣ୍ଡିତ ଓଡ଼ିଆ ଭାଷୀ ଅଞ୍ଚଳର ସମାଧାନ ସୂତ୍ର ବାହାର କରିବା ପାଇଁ ପ୍ରତିଶ୍ରୁତିବଦ୍ଧ ହେଲେ ।

ଓଡ଼ିଶାରୁ ଫେରିବାର ଦୁଇମାସ ମଧ୍ୟରେ ଭାରତର ବଡଲାଟ ଲର୍ଡ଼ କର୍ଜନ ମଦନ ମୋହନ ମିଶ୍ର ଆଦିଙ୍କର ପ୍ରେରିତ ମେମୋରଣ୍ଡମ ସମ୍ବଲପୁରରୁ ପ୍ରାପ୍ତ ହୋଇ ଏହି ସଂପର୍କରେ ବିଧିବଦ୍ଧ ଅନୁସନ୍ଧାନ କରବା ପାଇଁ ଏକ ଆଦେଶ ଦେଇଥିଲେ ।

ଏଣେ ୧୯୦୧ ମସିହାର ସେପ୍ଟେମ୍ବର ମାସରେ ସିମିଲାଠାରେ ଶିକ୍ଷା ସମ୍ମିଳନୀ ଅନୁଷ୍ଠିତ ହେବାର ପରିପ୍ରେକ୍ଷୀରେ, ମଧ୍ୟପ୍ରଦେଶ ଚିଫ୍ କମିଶନର ସାର ଏଣ୍ଡ୍ରୁ ଫ୍ରେଜରଙ୍କ ସହିତ ବଡ଼ଲାଟଙ୍କର ସାକ୍ଷାତକାର ହେବାର ସମ୍ଭାବନା ଦୃଷ୍ଟିରୁ ମଧୁସୂଦନ ୧୯୦୧ ମସିହାର ଅଗଷ୍ଟ ଶେଷ ସପ୍ତାହରେ ଭାଷା ସଂକ୍ରାନ୍ତୀୟ ସମସ୍ତ କାଗଜପତ୍ର, ଚିଠି ଓ ଟେଲିଗ୍ରାମ ଜରିଆରେ ବଡ଼ଲାଟଙ୍କର ପ୍ରାଇଭେଟ ସେକ୍ରେଟେରୀ ଓ ମଧୁସୂଦନଙ୍କର ଅନ୍ତରଙ୍ଗ ବନ୍ଧୁ ୱାଲ୍ଟର ଲରେନ୍ସଙ୍କୁ ପ୍ରେରିତ କରି ବଡ଼ଲାଟ ଓ ମଧ୍ୟପ୍ରଦେଶର ଚିଫ୍ କମିଶନରଙ୍କ ମଧ୍ୟରେ ଏକ ଆଲୋଚନା ସଞ୍ଚାଳିତ କରିବା ପାଇଁ ସବିଶେଷ ଅନୁରୋଧ କରିଥିଲେ । ବଡ଼ଲାଟଙ୍କର ପ୍ରାଇଭେଟ ସେକ୍ରେଟେରୀ ୱାଲଟର ଲରେନ୍ସ ୧୨.୦୯.୧୯୦୧ରେ ଜଣାଇଲେ ଯେ 'ମୁଁ ଆପଣଙ୍କ ପାଖରୁ ଆସିଥିବା ସମସ୍ତ ପତ୍ର ଓ ଟେଲିଗ୍ରାମ ବଡ଼ଲାଟଙ୍କ ପାଖରେ ଉପସ୍ଥାପିତ କରିଥିଲି । ଆଲୋଚନା ସଞ୍ଚାଳିତ ହେବା ପରେ ମଧ୍ୟପ୍ରଦେଶର ଚିଫ୍ କମିଶନ ସମ୍ବଲପୁରରୁ ପ୍ରାପ୍ତ ଏକ ଦରଖାସ୍ତ ଉପରେ ଅନୁସନ୍ଧାନ କାର୍ଯ୍ୟ ଶୀଘ୍ର ସମାପ୍ତ କରବା ପାଇଁ ଧାର୍ଯ୍ୟ ହେଲା ।' ବଡ଼ଲାଟଙ୍କର ଏହି ଆଦେଶ ପ୍ରାପ୍ତ ହୋଇ ମଧ୍ୟପ୍ରଦେଶର କମିଶନର ସାର୍ ଏଣ୍ଡ୍ରୁ ଫ୍ରେଜର ୨୬.୯.୧୯୦୧ରେ ସମ୍ବଲପୁରରେ ଅନୁସନ୍ଧାନ କାର୍ଯ୍ୟ ଆରମ୍ଭ କରିବେ ବୋଲି ସ୍ଥିର କରିଥିଲେ ।

ଏଣେ ବ୍ରଜମୋହନ ପଟ୍ଟନାୟକଙ୍କର ନେତୃତ୍ୱରେ ସମ୍ବଲପୁରର ନେତୃମଣ୍ଡଳୀ ସେହି ବର୍ଷ ଜୁଲାଇ ଶେଷ ଭାଗରେ ନାଗପୁରଠାରେ ଚିଫ୍ କମିଶନର ସାର୍ ଏଣ୍ଡ୍ରୁ ଫ୍ରେଜରଙ୍କୁ ଭେଟିବା ପରେ ଅଗଷ୍ଟ ମାସ ଶେଷ ସପ୍ତାହରେ ଶ୍ରୀପତି ମିଶ୍ରଙ୍କ ସହ ବଡ଼ଲାଟଙ୍କୁ ଭେଟିବା ପାଇଁ ଯାତ୍ରା ଆରମ୍ଭ କରି ସିମଲାଠାରେ ସେପ୍ଟେମ୍ବର ମାସର ମଧ୍ୟ ଭାଗରେ ପହଞ୍ଚିଥିଲେ । ମାତ୍ର ଏଣ୍ଡ୍ରୁ ଫ୍ରେଜରଙ୍କର ଗସ୍ତ କାର୍ଯ୍ୟକ୍ରମ ସଂପର୍କରେ ଅବଗତ ହେବା ପରେ ସେମାନେ ସମ୍ବଲପୁର ଫେରିଆସିଥିଲେ ।

ସାର୍ ଏଣ୍ଡ୍ରୁ ଫ୍ରେଜର ୧୯୦୧ ମସିହାର ସେପ୍ଟେମ୍ବର ୨୬ରୁ ୩୦ ତାରିଖ ମଧ୍ୟରେ ସମ୍ବଲପୁରରେ ଅନୁସନ୍ଧାନ ସାରି ୫.୭.୧୯୦୧ରେ ତାହାଙ୍କର ଯେଉଁ ରିପୋର୍ଟ ପ୍ରେରିତ କରିଥିଲେ ତାହାରି ଆଧାରରେ ଲର୍ଡ଼ କର୍ଜନ ୧.୧.୧୯୦୩ରୁ ସମ୍ବଲପୁରରେ ଓଡ଼ିଆ ଭାଷା ପୁନଃ ସଞ୍ଚାଳିତ କରିଥିଲେ ।

ଏହି ଭାଷା ସଂଗ୍ରାମୀ ପଞ୍ଚସଖାଙ୍କ ସହ ସମ୍ବଲପୁରର ଆସିଷ୍ଟାଣ୍ଟ କମିଶନର ବୈକୁଣ୍ଠନାଥ ପୂଜାରୀ, ୧୯୦୧ ମସିହାରେ ଓଡ଼ିଆ ଭାଷା ଜନସଂଖ୍ୟା ସୁରକ୍ଷିତ ରଖିବା ପାଇଁ ଅହୋରାତ୍ର ଅଶ୍ୱପୃଷ୍ଠରେ ଭ୍ରମଣ କରି ନିଜର ଜୀବନକୁ ଉତ୍ସର୍ଗ କରିଥିଲେ । ସ୍ୱାଧୀନତା ସଂଗ୍ରାମୀ ଚନ୍ଦ୍ରଶେଖର ବେହେରା ମଧ୍ୟ ଏହି ଭାଷା ସଂଗ୍ରାମକୁ ମାର୍ଗ ଦର୍ଶନ ପ୍ରଦାନ କରିଥିଲେ । ସେମାନଙ୍କର ଅବଦାନ ଅବିସ୍ମରଣୀୟ ।

ସମଗ୍ର ଭାରତରେ ପ୍ରାଦେଶିକ ସୀମା ପରିବର୍ତ୍ତନ ପାଇଁ ବଡ଼ଲାଟ୍ ଯେଉଁ ପରିକଳ୍ପନାର ସଂଯୋଜନା କରିଥିଲେ ତାହାକୁ ୧୯୦୩ରେ ପ୍ରକାଶିତ ସରକୁଲାର୍ ମାଧ୍ୟମରେ ପ୍ରଚାରିତ କରିଥିଲେ । ଏହି ସଂଯୋଜନା ମଧ୍ୟରେ ବଂଗର ବିଭାଜନ, ବେରାର୍‌ର ମଧ୍ୟପ୍ରଦେଶ ସହିତ ମିଶ୍ରଣ, ଛୋଟ ନାଗପୁର ଡିଭିଜନରୁ କିଛି ଗଡ଼ଜାତର

ମଧ୍ୟପ୍ରଦେଶର ମିଶ୍ରଣ ସହିତ ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳର ବଙ୍ଗପ୍ରଦେଶ ସହିତ ମିଶ୍ରଣର ପରିକଳ୍ପନା ସ୍ଥାନ ପାଇଥିଲା । ମାତ୍ର ପତ୍ନୀଙ୍କର ଅସୁସ୍ଥତା ଯୋଗୁଁ ୧୯୦୪ ମସିହାର ଏପ୍ରିଲ୍ ମାସରେ ଲର୍ଡ଼ କର୍ଜନ ଦୀର୍ଘ ଛୁଟି ନେଇ ଚାଲି ଯିବାରୁ ଅସ୍ଥାୟୀଭାବେ ବଡ଼ଲାଟ୍ ଦାୟିତ୍ୱରେ ଥିବା ମାନ୍ଦ୍ରାଜ ଗଭର୍ଣ୍ଣର ଲର୍ଡ଼ ଏମ୍‌ଥିଲ୍ ଦକ୍ଷିଣ ଓଡ଼ିଶାର ବଙ୍ଗ ସହିତ ମିଶ୍ରଣର ସିଦ୍ଧାନ୍ତ ବିରୁଦ୍ଧରେ ଏକ ପୂର୍ଣ୍ଣଚ୍ଛେଦ ଟାଣି ଦେଇଥିଲେ । ଲର୍ଡ଼ କର୍ଜନ ୧୯୦୫ ମସିହାର ପୂର୍ବଭାଗରେ ପୁଣି ବଡ଼ଲାଟ୍ ପଦରେ ଯୋଗଦେବା ପରେ ୧୬.୧୦.୧୯୦୫ରେ ରିସଲେ ସରକୁଲାର୍‌କୁ କାର୍ଯ୍ୟକାରୀ କରିଥିଲେ । ଏହି ପରିପ୍ରେକ୍ଷୀରେ ୧୬.୧୦.୧୯୦୫ରେ ସମ୍ବଲପୁରଠାରେ ବଙ୍ଗର ଗଭର୍ଣ୍ଣର୍ ସାର୍ ଏଣ୍ଡ୍ର ଫ୍ରେଜରଙ୍କ ଦ୍ୱାରା ଏକ ଭବ୍ୟ ଦରବାରର ଆୟୋଜନ କରାଯାଇଥିଲା ଯହିଁରେ, ମଧ୍ୟପ୍ରଦେଶର ଛତିଶଗଡ଼ ଡିଭିଜନରୁ ସମ୍ବଲପୁର ଜିଲ୍ଲା କଳାହାଣ୍ଡି, ପାଟନା, ସୋନପୁର, ରେଢ଼ାଖୋଲ ଓ ବାମଣ୍ଡା ଗଡ଼ଜାତମାନ ଓ ଛୋଟନାଗପୁର ଡିଭିଜନରୁ ଗାଙ୍ଗପୁର ଓ ବଣେଇ ଗଡ଼ଜାତମାନ ଆସି ଓଡ଼ିଶା ଡିଭିଜନ୍‌ରେ ମିଶିବା ପରିପ୍ରେକ୍ଷୀରେ ଏହି ସାତଗୋଟି ଗଡ଼ଜାତମାନଙ୍କର ରାଜାମାନଙ୍କୁ ସ୍ୱତନ୍ତ୍ର ସନନ୍ଦମାନ ପ୍ରଦାନ କରାଯାଇଥିଲା ।

ସୁଦୀର୍ଘ ଚାରିଦିନ ବ୍ୟାପୀ ନବ ମିଶ୍ରଣର ଉଲ୍ଲାସଭରା, ଆହ୍ଲାଦମୟ ଉତ୍ସବରେ ଉତ୍କଳ ସମ୍ମିଳନୀ ପକ୍ଷରୁ ମଧୁସୂଦନ ଦାସଙ୍କ ଦ୍ୱାରା ପ୍ରେରିତ ଦାମୋଦର କର, ଚନ୍ଦ୍ରଶେଖର ନନ୍ଦ, ବ୍ରହ୍ମାନନ୍ଦ ଷଡଙ୍ଗୀ ପ୍ରଭୃତି କବି ଗୋଷ୍ଠୀ ଯୋଗଦାନ କରି ଏକ ନିବିଡ଼ ଆନ୍ତରିକତାର ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି କରିଥିଲେ ।

ଏହି ୧୬.୧୦.୧୯୦୫ରେ ଅନୁଷ୍ଠିତ ତାତ୍ପର୍ଯ୍ୟପୂର୍ଣ୍ଣ ମିଶ୍ରଣର ଠିକ୍ ଏକମାସ ପରେ ୧୮.୧୧.୧୯୦୫ରେ ଏହି ମିଶ୍ରଣର ସର୍ବମୟ କର୍ତ୍ତା ଲର୍ଡ଼ କର୍ଜନଙ୍କୁ ଦେଖିବାକୁ ମିଳିଥିଲା, ବମ୍ବେର ବନ୍ଦରର ଅସ୍ତମିତ ସୂର୍ଯ୍ୟର ଦୀପ୍ତିମନ୍ତ ଆଲୋକରେ ଏକ ଲଣ୍ଡନଗାମୀ ଜାହାଜରେ ଆରୋହଣ କରିବା ସମୟରେ ଠିକ୍ ସୂର୍ଯ୍ୟାସ୍ତର ବେଳାରେ । ଖଣ୍ଡେ ଦୂରରେ ବିଦାୟ ସମ୍ବର୍ଦ୍ଧନା ଜଣାଉଥାନ୍ତି ନବନିଯୁକ୍ତ ବଡ଼ଲାଟ୍ ଲର୍ଡ଼ ମିଣ୍ଟୋ । ସୂର୍ଯ୍ୟାସ୍ତର ସେହି ବିଭାମଣ୍ଡିତ ବର୍ଣ୍ଣିଳ ଆଲୋକରେ ଲର୍ଡ଼ କର୍ଜନ ଆଜି ଅସ୍ତମିତ । ମାତ୍ର ସେ ସଦା ଭାସ୍ୱର ରହିଛନ୍ତି ଅମଳିନ ଦ୍ୟୁତିରେ ଓଡ଼ିଆର ଅନ୍ତରରେ ନବ ଓଡ଼ିଶାର ଅନ୍ୟତମ ସ୍ରଷ୍ଟାରୂପରେ ।

ଏହି ପଶ୍ଚିମ ଭୂଖଣ୍ଡର ୧୬.୧୦.୧୯୦୫ରେ ଗୌରବାବହ ମିଶ୍ରଣ, ପ୍ରକୃତରେ ଓଡ଼ିଶାକୁ ଏକ ସବ୍ ପ୍ରଭିନ୍ସ (କ୍ଷୁଦ୍ର ପ୍ରଦେଶ) ସ୍ତରକୁ ଉନ୍ନୀତ କରିଥିଲା, ଯାହାର ଅନ୍ତିମ ପରିଣତିରେ ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ତେଣୁ ଏହି ଅବିସ୍ମରଣୀୟ ତାତ୍ପର୍ଯ୍ୟପୂର୍ଣ୍ଣ ୧୬.୧୦.୧୯୦୫ ତାରିଖଟି ହେଉଛି ନବ ଓଡ଼ିଶାର ଅଦ୍ୟ ଜନ୍ମୋତ୍ସବ, ଯାହାର ଏହି ବର୍ଷ ୨୦୦୫ ମସିହାରେ ପାଳିତ ହେଉଛି ଭବ୍ୟ ଶତାବ୍ଦୀ ସମାରୋହ, ଏକ ଅନ୍ତରଂଗ ଉଦ୍‌ବେଳିତ ଆବାହନରେ । ଏଣୁ ୧୬.୧୦.୨୦୦୫ରେ ନବ ଓଡ଼ିଶା ଗଠନର ଶତାବ୍ଦୀ ସମାରୋହ ମହା ଉଦ୍ଦୀପନାର ସହ ପାଳନ କରିବା ପାଇଁ ସବିନୟ ନିବେଦନ ।

ଏହି ଅବସରରେ ସେହି ଗାରିମାମୟ ମହିମାମଣ୍ଡିତ ଭାଷା ସଂଗ୍ରାମୀମାନଙ୍କର ଚରଣ ପ୍ରାନ୍ତରେ ଦେଶ ଆଜି ଭାବ ବିହ୍ୱଳ ଉଚ୍ଛ୍ୱସିତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ବତୀଘର ଛକ
ଗୋପାଳପୁର, ଗଞ୍ଜାମ



ପାରାଦୀପଠାରେ ମହାମାନ୍ୟ ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁର ଡଃ ବି.ଆର୍. ଆମ୍ବେଦକରଙ୍କ ଜନ୍ମବାର୍ଷିକ ଅବସରରେ ଶ୍ରଦ୍ଧାଞ୍ଜଳି ଜଣାଉଛନ୍ତି । (୧୨.୯.୦୫)

# ଓଡ଼ିଆ ଆତ୍ମପରିଚିତିର ସଂକଟ

ଇନ୍ଦୁଭୂଷଣ କର

ଜଗତୀକରଣର କୁପ୍ରଭାବରୁ ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତିକୁ ରକ୍ଷା କରିବାକୁ ହେଲେ ଓଡ଼ିଆ ଆତ୍ମପରିଚିତିର ଅନ୍ୱେଷଣର ଆବଶ୍ୟକତା ରହିଛି । ଏ ବିଷୟରେ କବି, ସୁସାହିତ୍ୟିକ ଓ ଓଡ଼ିଶା ସାହିତ୍ୟ ଏକାଡେମୀର ପୂର୍ବତନ ସଚିବ ଶ୍ରୀ ଇନ୍ଦୁଭୂଷଣ କରଙ୍କ ଏକ ମନୋଜ୍ଞ ଆଲୋଚନା ।
- ସଂପାଦକ

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବାର ପ୍ରାୟ ୭୦ ବର୍ଷ ଅତିବାହିତ ହେଲାଣି । ଆଜି ଓଡ଼ିଆ ଜନସାଧାରଣ, ବୁଦ୍ଧିଜୀବୀ ଓ ଲେଖକମାନଙ୍କ ମଧ୍ୟରେ ଏକ ଆତ୍ମସଚେତନତା, ଏକ ଅନ୍ୱେଷା - ଏକ ସ୍ୱାଭିମାନର ସ୍ୱର ଶୁଣିବାକୁ ମିଳୁଛି । ଜଗତୀକରଣ ଫଳରେ ପୃଥିବୀର ବିଭିନ୍ନ ଦେଶଗୁଡ଼ିକର ଧର୍ମ ଓ ସଂସ୍କୃତି ମଧ୍ୟରେ ସଂଘର୍ଷ ଘଟୁଛି । ବିଶ୍ୱ ଏକ 'ଗ୍ଲୋବାଲ ଭିଲେଜ'ରେ ପରିଣତ ହେଲାଣି । ବୈଦ୍ୟୁତିକ ଗଣମାଧ୍ୟମର ବଳିଷ୍ଠ ମାଧ୍ୟମଗୁଡ଼ିକ ପୃଥିବୀର ସାଂସ୍କୃତିକ ପରମ୍ପରା, ଅର୍ଥନୈତିକ ସ୍ଥିତି ଓ ରାଜନୈତିକ ବିଚାରଧାରାକୁ ବିଶ୍ୱର ପ୍ରତ୍ୟେକ ଅଞ୍ଚଳରେ ସୁପରିଚିତ କରାଇପାରୁଛି । ଏତିକିବେଳେ 'ଆମେ ଯେ ଓଡ଼ିଆ - ଆମର ଏକ ସ୍ୱତନ୍ତ୍ର ଆତ୍ମପରିଚିତି ରହିଛି'- ଏହି ପ୍ରକାର ଚିନ୍ତା ଓ ଚେତନାର ଉନ୍ମେଷ ହେଉଛି । କାରଣ, ଜଗତୀକରଣର ଅପସଂସ୍କୃତିର ଶକ୍ତି ଏତେ ପ୍ରଖର ହୋଇ ପଡ଼ିଛି ଯେ, ଯାହାଫଳରେ ଆମର ଯୁବପିଢ଼ି କ୍ରମେ କ୍ରମେ ବିଶ୍ୱର ପପଷ୍ଟାର ସାମ୍ରାଜ୍ଞୀ ସୁନ୍ଦରୀ ମେଡୋନା, ଜାକଷ୍ଟାର ଜ୍ୟାକସନର ନୃତ୍ୟଗୀତ ପ୍ରତି ଆକୃଷ୍ଟ ଓ ମୋହଗ୍ରସ୍ତ ହେଉଛନ୍ତି ଓ ଭୋଗବାଦୀ - ସଂସ୍କୃତି (Consumerist Culture) ହେତୁ ଓଡ଼ିଆ ସଂସ୍କୃତି ପ୍ରତି ଆପଣାର-ଭାବ (Belongingness) ଆମ ଯୁବପିଢ଼ି ମନରୁ ଧୀରେ ଧୀରେ ଅପସରି ଯାଉଛି । 'ପୁଅ ଝିଅମାନେ ବିଦେଶକୁ ଯାଇ ରହନ୍ତୁ ଓ ଡଲାର ସେମାନଙ୍କୁ ପ୍ରବାସୀ କରି ରଖୁ' ଏହା ଆଜିର ଦୃଷ୍ଟିଭଙ୍ଗୀ । ଏହି ଆଶଙ୍କା ଆମର ବୁଦ୍ଧିଜୀବୀ ଲେଖକ ଓ ସଚେତନ ଓଡ଼ିଆ ସଂସ୍କୃତିପ୍ରେମୀ ବୟୋବୃଦ୍ଧ ନାଗରିକମାନଙ୍କୁ ବ୍ୟଥିତ କରୁଛି । ଏହି ଦୃଷ୍ଟିରୁ ଓଡ଼ିଆ ଆତ୍ମପରିଚିତି (Oriya Identity)ର ପୁନଃସମୀକ୍ଷା ଓ ଅନ୍ୱେଷଣର ପ୍ରାସଙ୍ଗିକତା ରହିଛି । ଏ ବିଷୟରେ ଓଡ଼ିଶାର ଖ୍ୟାତନାମା ଗବେଷକ ଡଃ ବେଣୀମାଧବ ପାଢ଼ୀ ଓଡ଼ିଆ ନାଗରିକମାନଙ୍କୁ ସଚେତନ କରାଇ ଯଥାର୍ଥରେ କହିଛନ୍ତି - 'ଆଜିର ଏ ନବାଗତ ସଂସ୍କୃତି, ବ୍ୟକ୍ତିକୈନ୍ଦ୍ରିକ ହେବାକୁ ପ୍ରୋତ୍ସାହନ ଦେବାରେ ଲାଗିଛି । ଏହାର ମୂଳଲକ୍ଷ୍ୟ ହେଉଛି ବ୍ୟକ୍ତିର ବିକାଶ, ଯାହାକୁ ଇଂରାଜୀରେ Individuality କୁହାଯାଏ - ଏହାଦ୍ୱାରା ମଣିଷ ସ୍ୱାର୍ଥସର୍ବସ୍ୱ ହୋଇ କ୍ରମଶଃ ପରିବାର, ଗୋଷ୍ଠୀ ଏବଂ ସମାଜରୁ ବିଚ୍ୟୁତ ହୋଇପଡୁଛି । ମଣିଷ ପ୍ରତି, ସମାଜ ପ୍ରତି, ପ୍ରକୃତି ବା ପରିବେଶ ପ୍ରତି ଯେଉଁ କର୍ତ୍ତବ୍ୟ ତାହା ସେ ଭୁଲିବାକୁ ବସିଛି ।' (ଇନ୍ଦୁଭୂଷଣ କର ଓ ଡଃ ଖଗେଶ୍ୱର ମହାପାତ୍ର ସଂପାଦିତ 'ନବଗୁଞ୍ଜର - ଓଡ଼ିଶାର ସାଂସ୍କୃତିକ ବିଭବ' ପୁସ୍ତକରେ ପ୍ରକାଶିତ ଡଃ ପାଢ଼ୀଙ୍କ ପ୍ରବନ୍ଧ 'ଓଡ଼ିଶାର ସାଂସ୍କୃତିକ ପରମ୍ପରା' - ଇମେଜ୍ ପବ୍ଲିକେସନ୍ସ, ଭୁବନେଶ୍ୱର, ୨୦୦୧, ପୃ.୨୯) ।

ଜଗତୀକରଣର କୁପ୍ରଭାବରୁ ଓଡ଼ିଆ ସଂସ୍କୃତିକୁ ରକ୍ଷା କରିବା ପାଇଁ ଓଡ଼ିଆ ଆତ୍ମପରିଚିତିର ଚର୍ଚ୍ଚା ଓ ଅନୁଶୀଳନ ଏକାନ୍ତ ଆବଶ୍ୟକ । ଓଡ଼ିଆତ୍ୱକୁ ଯେତେ ଆମେ ନିଜ ମଧ୍ୟରେ ହୃଦୟଙ୍ଗମ କରିବା ସେତେ ଆମର ସାମାଜିକ ପ୍ରଗତିରେ ସହାୟକ ହେବ । ଏହି ବିଶ୍ୱଗ୍ରାମରେ (Global Village) ଜଣେ ଓଡ଼ିଆର ପରିଚୟ କ'ଣ ? ସେ କ'ଣ କେବଳ ଦାଦନ ଶ୍ରମିକର ଦେଶ ? ସେ କ'ଣ କେବଳ ଜଗନ୍ନାଥ ଧାମର ଲୋକ । ଓଡ଼ିଶାର ଦାରିଦ୍ର୍ୟ କ'ଣ ତା'ର ଏକମାତ୍ର ପରିଚୟ ? ଏହା କ'ଣ ଏକ ସୀମାବଦ୍ଧ ଭୌଗଳିକ ଅଞ୍ଚଳ ଯେଉଁଠାରେ କେତୋଟି ଜିଲ୍ଲା, କେତୋଟି ନଦୀ, ପର୍ବତ ଓ କେତେ ପ୍ରକାର ଜନଜାତିର ବସତି ରହିଛି । ନା ଏହାର ଅନ୍ୟ ପରିଚୟ କିଛି ଅଛି ? ନିଜସ୍ୱ ଜୀବନର ପରିଚୟ ଐତିହ୍ୟ ଜାଣିବା ଦ୍ୱାରା ନିଜର ଯେପରି ଆତ୍ମବିଶ୍ୱାସ ଓ କର୍ମ ପ୍ରବଣତା ବୃଦ୍ଧିପାଏ, ସେହିପରି ଗୋଟିଏ ଜାତି ସଂପର୍କରେ ଏହା ଏକାନ୍ତ ସତ୍ୟ ଯେ, ନିଜ ନିଜ ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରତି ଆପଣାର ଭାବ (Belongingness) ଗୋଟିଏ ଜାତିକୁ ଉନ୍ନତ ଓ ବିଶ୍ୱଦରବାରରେ ଯଶସ୍ୱୀ କରେ । ଅର୍ଥନୈତିକ ମାନଦଣ୍ଡରେ ସେ ଦରିଦ୍ର ହୋଇପାରେ, କିନ୍ତୁ ମାନସିକ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ସେ ଦୁର୍ବଳ ନୁହଁ - ଖୁବ୍ ଶକ୍ତିଶାଳୀ ଓ ଚିରଭାସ୍ୱର ।

**ଓଡ଼ିଆ ଆତ୍ମପରିଚିତିର ସଂଜ୍ଞା**

ଓଡ଼ିଆ ଆତ୍ମପରିଚିତିର ସଂଜ୍ଞା କଥା ଆଲୋଚନା ବେଳେ ପୂର୍ବପୁରୁଷମାନଙ୍କର ଦେଶପ୍ରେମିକତା ଓ ବିଭିନ୍ନ ଗବେଷକମାନଙ୍କର ଗବେଷଣା କଥା ସ୍ମରଣ କରିବା ଉଚିତ । ଏ ବିଷୟରେ ଡଃ ବେଣୀମାଧବ ପାଢ଼ୀ, ସୁରେନ୍ଦ୍ର ମହାନ୍ତି, ଡଃ ଗଗନ ଚନ୍ଦ୍ର ଦାସ, ଚିତ୍ତରଞ୍ଜନ ଦାସ ଓ ଡଃ ଶୁଭକାନ୍ତ ବେହେରା ପ୍ରଭୃତି ଗବେଷକମାନଙ୍କ ଦ୍ୱାରା ଲିଖିତ ପୁସ୍ତକ, ପ୍ରବନ୍ଧ ଓ ଆଲୋଚନା ପଢ଼ିବା ଉଚିତ । ୧୯୩୬ ମସିହା ଏପ୍ରିଲ୍ ପହିଲାରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେଲା । କିନ୍ତୁ ଏହାର ବହୁ ବର୍ଷ ପୂର୍ବରୁ ଓଡ଼ିଆ ଜାତୀୟତାର ଆନ୍ଦୋଳନ ଓ କଳାତ୍ମକ ପରମ୍ପରା ଫଳରେ ଓଡ଼ିଆର ଭାଷା, ସାହିତ୍ୟ ଓ ସଂସ୍କୃତିର ସ୍ୱାତନ୍ତ୍ୟ ଓ ବୈଶିଷ୍ଟ ପ୍ରତିପାଦିତ ହୋଇଛି । ଓଡ଼ିଆର ଆତ୍ମପରିଚିତିର ପ୍ରତିଛବି ରହିଛି, ଏହାର ଗୌରବାବହ ସାଂସ୍କୃତିକ ପରମ୍ପରା ମଧ୍ୟରେ । ଓଡ଼ିଆର ସାମରିକ କଳା, ବିଦେଶର ନୌବାଣିଜ୍ୟର ପରାକାଷ୍ଠା, କୋଣାର୍କ ମନ୍ଦିର ଗାତ୍ରରେ ଓଡ଼ିଆର କଳା ଭାସ୍କର୍ଯ୍ୟର ବିଶ୍ୱବନ୍ଦିତ ସୌନ୍ଦର୍ଯ୍ୟର ପ୍ରତିଚ୍ଛବି, ଓଡ଼ିଶୀ ନୃତ୍ୟ ସଂଗୀତ, ଓଡ଼ିଶୀ ପଟ୍ଟଚିତ୍ର ଓ ଚାନ୍ଦୁଆ ତାରକସୀ, ସମନ୍ୱିତ ସଂସ୍କୃତିର ବାହକ ଓଡ଼ିଶାର ଜଗନ୍ନାଥ ସଂସ୍କୃତି ଓ ଓଡ଼ିଆର ଆତିଥ୍ୟ ପରାୟଣତା ପ୍ରଭୃତି ବିଶ୍ୱଦରବାରରେ ଓଡ଼ିଆ ଆତ୍ମପରିଚିତିର ବୈଶିଷ୍ଟ୍ୟକୁ ପ୍ରମାଣ କରିଛି । ପାଶ୍ଚାତ୍ୟ ଗବେଷକମାନଙ୍କ ମଧ୍ୟରେ ପାରସୀ ବ୍ରାଉନ୍, ଚାର୍ଲ୍ସ ଫେବ୍ରୀ, ଜେମସ୍ ଫାରଗୁସନ୍, ହାଭେଲ୍ ଓଡୋନାଲ୍ଡ୍‌ସନ୍, ପ୍ରଫେସର କୁଲକେ ପ୍ରଭୃତି ବହୁ ବିଦ୍ୱାନ, ପ୍ରାଚ୍ୟ ତତ୍ତ୍ୱବିତ୍ ଓ ଗବେଷକମାନେ ଓଡ଼ିଆ କଳା, ସ୍ଥାପତ୍ୟ ଓ ଆତ୍ମପରିଚିତିର ଉଜ୍ଜ୍ୱଳ ସ୍ୱାକ୍ଷର 'ଜଗନ୍ନାଥ ସଂସ୍କୃତି'ର ଭୂୟସୀ ପ୍ରଶଂସା କରିଛନ୍ତି । ଏଥିପାଇଁ ଜଣେ ଓଡ଼ିଆର ଆତ୍ମପରିଚିତି ହେଉଛି ସେ ଉତ୍କୃଷ୍ଟ କଳାର ଦେଶର ଅଧିବାସୀ । ଆଧୁନିକ ଯୁଗରେ ଯେତେବେଳେ ଧର୍ମାନ୍ଧତାରୁ ଉଦ୍ଭୁତ ସନ୍ତ୍ରାସବାଦ, ଅତି ଭୋଗବାଦ, ସାଂପ୍ରଦାୟିକତା, ବର୍ଣ୍ଣଗତ, ଜାତିଗତ ବିଦ୍ୱେଷ ଓ ରାଜନୀତିର ଅପରାଧୀକରଣ ବିଶ୍ୱର ସୁଖଶାନ୍ତିକୁ ପ୍ରତିହତ କରୁଅଛି, ସେତେବେଳେ ଓଡ଼ିଆ ସଂସ୍କୃତିର ମହାନ ପରମ୍ପରା, ଜଗନ୍ନାଥ ସଂସ୍କୃତିର ଉଦାରତା, ବିଶ୍ୱ ମାନବବାଦ ଓ ସମନ୍ୱିତ ଧର୍ମଧାରା ହିଁ ସନ୍ତ୍ରାସବାଦ ଓ ନୂତନ ସାମ୍ରାଜ୍ୟବାଦରେ ଆତଙ୍କିତ ବିଶ୍ୱସମାଜକୁ ନୂତନ ଦିଗ୍‌ଦର୍ଶନ ଦେଇପାରିବ । ଏହା ହିଁ ଓଡ଼ିଆ ଆତ୍ମପରିଚିତିର ନୂତନ ଆହ୍ୱାନ । ଏହି ପରିପ୍ରେକ୍ଷୀରେ ପ୍ରତ୍ୟେକ ଓଡ଼ିଆ ନିଜର ମହାନ୍ ଜଗନ୍ନାଥ ସଂସ୍କୃତି ଓ ଐତିହ୍ୟ ମଧ୍ୟରେ ନିଜକୁ ଚିହ୍ନିବା ଉଚିତ ଓ ସେହି ଆଦର୍ଶ ଅନୁସାରେ ନିଜକୁ ଗଢ଼ିବା ଉଚିତ । ନିଜ ସଂସ୍କୃତିରୁ ଆମ ଯୁବପିଢ଼ି ବିଚ୍ଛିନ୍ନ ଓ ଛିନ୍ନମୂଳ (Rootless) ହୋଇଗଲେ - ଆମର ସାମାଜିକ ସଂହତି ନଷ୍ଟ ହେବ । ଆମ ଯୁକ୍ତ ପରିବାର ଓ ସମାଜ ମଧ୍ୟରେ ଏବେ 'ଜେନେରେସନ ଗ୍ୟାପ୍' (Generation Gap) ସୃଷ୍ଟି ହେବା ଫଳରେ ସାମାଜିକ ସୁଖ ଓ ଶାନ୍ତି ବ୍ୟାହତ ହେଉଛି - ତାହାକୁ ଏବେଠୁ ରୋକିବାକୁ ହେବ । ଓଡ଼ିଆ ଭାଷାକୁ ଭୁଲି ଆମର ପିଲାମାନେ ଇଂଲିଶ ମିଡିୟମରେ ପଢ଼ନ୍ତୁ ଓ ପ୍ରଦେଶ ଛାଡ଼ି ଆମେରିକା ଯାଆନ୍ତୁ - ଅଧିକ ଧନୀ ହେବା ପାଇଁ ଅଧିକ ଡଲାର ଉପାର୍ଜନ କରନ୍ତୁ - ଏହା ହିଁ ଆମର ଓଡ଼ିଆ ଶିକ୍ଷିତ ନାଗରିକ ଓ ଅଭିଭାବକମାନେ ଚାହୁଁଛନ୍ତି । ଏହା ହେଉ ଏଥିରେ କିଛି କହିବାର ନାହିଁ, ଓଡ଼ିଆ ଭାଷା, ନିଜ ଭାଷା, ସଂସ୍କୃତି ଓ ଜାତିକୁ ଭୁଲିଯିବା ଉଚିତ୍ ନୁହେଁ । ତେଣୁ ସମୟ ଆସିଛି ଓଡ଼ିଆ ଭାଷା ଓ ସଂସ୍କୃତିର ସଚେତନ ନାଗରିକମାନେ ଓଡ଼ିଆ ଆତ୍ମପରିଚିତିର ଏହି ସଂକଟକୁ ଠିକ୍ ଭାବେ ଚିହ୍ନିବା ଉଚିତ ଓ ତା'ର ପ୍ରତିକାର ପାଇଁ ଗଠନମୂଳକ, ବଳିଷ୍ଠ କାର୍ଯ୍ୟପନ୍ଥା ଗ୍ରହଣ କରିବା ଉଚିତ । କେବଳ ଭାଷଣ, ବେଳାଭୂମି ଓ ଖାରବେଳ ପ୍ରଭୃତି ମହୋତ୍ସବରେ ମାତିଲେ ଚଳିବ ନାହିଁ ।

**ଓଡ଼ିଆ ଆତ୍ମପରିଚିତିର ସଂକଟ ଓ ପ୍ରତିକାର**

ଏ କଥା ସତ ଯେ, ଓଡ଼ିଶାର ଭାଷା, ସାହିତ୍ୟ ଓ ସଂସ୍କୃତି ବିଷୟରେ ଆମ ସାଧାରଣ ଛାତ୍ରଛାତ୍ରୀମାନେ ଆଦୌ ଆଗ୍ରହୀ ନୁହଁନ୍ତି । କାରଣ ସେମାନଙ୍କର ବାପ, ମା', ଶିକ୍ଷକମାନେ ଏ ଦିଗରେ ଆଦୌ ସଚେତନ ନୁହଁନ୍ତି । କେବଳ ସଭାସମିତିରେ ଆମର ବରିଷ୍ଠ ସାହିତ୍ୟିକ ଓ ରାଜନେତାମାନେ ଅତୀତ ପରମ୍ପରାକୁ ବଖାଣି ପୂର୍ବସ୍ମୃତିକୁ ଝୁରି ଦୁଃଖ କରନ୍ତି । ନଚେତ ରାଜଧାନୀରେ ନୃତ୍ୟ ସଙ୍ଗୀତ ଉତ୍ସବରେ ମୁଖ୍ୟ ପୁରୋଧା ହୋଇ ଫୁଲମାଳ ପିନ୍ଧିବାକୁ ସୁଖମଣନ୍ତି । ସେମାନେ କୌଣସି ସକାରାତ୍ମକ କାର୍ଯ୍ୟପନ୍ଥା ଗ୍ରହଣ କରନ୍ତି ନାହିଁ । ଏ ପ୍ରକାର ସାମାଜିକ ଉଦାସୀନତା ଓ ସରକାରୀ ନିଷ୍କ୍ରିୟତା, ଓଡ଼ିଆ ଆତ୍ମପରିଚିତିର ବିକାଶର ମୁଖ୍ୟ ଅନ୍ତରାୟ । ଓଡ଼ିଆ ଭାଷା, ସରକାରୀ କାର୍ଯ୍ୟ ପରିଚାଳନାରେ ପ୍ରଚଳିତ ହେବ ବୋଲି ୧୯୫୪ ମସିହାରୁ ଆଇନ ହୋଇଥିଲେ ମଧ୍ୟ ଓଡ଼ିଶାର ରାଜନୈତିକ ନେତୃବୃନ୍ଦମାନଙ୍କ ଦୃଢ଼ ଇଚ୍ଛାଶକ୍ତିର ଅଭାବରୁ ଅମଲାତନ୍ତ୍ର ଏହି ଭାଷାନୀତିକୁ ଜିଲ୍ଲା ଅଫିସ ଓ ସଚିବାଳୟରେ କାର୍ଯ୍ୟକାରୀ କରୁନାହାନ୍ତି । ଜନଗଣର ଦୁଃଖ ଦୁର୍ଦ୍ଦଶା ବୁଝିବାକୁ ହେଲେ ଓଡ଼ିଶାର ଶାସକବର୍ଗ ଓଡ଼ିଆ ଭାଷାକୁ ଶିଖିବା, ପଢ଼ିବା ଓ ଓଡ଼ିଆ ଭାଷାରେ, ଜନସଂପର୍କ ସ୍ଥାପନ କରିବା ଉଚିତ । ଶାସନ କାଳର ସ୍ୱଚ୍ଛତା ପାଇଁ (ଟ୍ରାନ୍ସପାରେନ୍‌ସି) ଏକାନ୍ତ ଆବଶ୍ୟକ । ଶାସନ ପରିଚାଳନାରେ ମାତୃଭାଷା ମାଧ୍ୟମରେ ଜନସହଯୋଗ ଅଧିକ ମିଳିପାରିବ । କର୍ଣ୍ଣାଟକ, ଆନ୍ଧ୍ର, ତାମିଲନାଡୁ, କେରଳ ପ୍ରଭୃତି ପ୍ରଦେଶମାନ ସେମାନଙ୍କର ଭାଷା ଓ ସାହିତ୍ୟର ଦ୍ରୁତ ସମୃଦ୍ଧି ପାଇଁ 'ସ୍ୱତନ୍ତ୍ର ଭାଷା-ବିଶ୍ୱବିଦ୍ୟାଳୟ' ପ୍ରତିଷ୍ଠା କରିଛନ୍ତି । ତାମିଲନାଡୁର ତାଞ୍ଜୋଉରଠାରେ 'ତାମିଲ ବିଶ୍ୱବିଦ୍ୟାଳୟ', ଆନ୍ଧ୍ରପ୍ରଦେଶର ହାଇଦ୍ରାବାଦଠାରେ 'ତେଲୁଗୁ ବିଶ୍ୱବିଦ୍ୟାଳୟ', କର୍ଣ୍ଣାଟକ ପ୍ରଦେଶର ହାମ୍ପିଠାରେ 'କନ୍ନଡ ଭାଷା ବିଶ୍ୱବିଦ୍ୟାଳୟ' ଓ କେରଳର ତ୍ରିଭେନ୍ଦ୍ରମ୍‌ଠାରେ International School of Dravidan Language University ପ୍ରତିଷ୍ଠା ହେଲାଣି । ଆମ ଓଡ଼ିଆ

ଭାଷାର ବିକାଶ ଓ ଜନସାଧାରଣଙ୍କ ମଧ୍ୟରେ ଓଡ଼ିଆତ୍ୱ, ଓଡ଼ିଆ ଆତ୍ମପରିଚିତି, ତା'ର ସ୍ୱାତନ୍ତ୍ର୍ୟ ସଂସ୍କୃତିର ପ୍ରସାର ପାଇଁ ଏପରି ଏକ ଓଡ଼ିଆଭାଷୀ ବିଶ୍ୱବିଦ୍ୟାଳୟ (Language University)ର ଆବଶ୍ୟକତା ରହିଛି ବୋଲି ବହୁ ଓଡ଼ିଆ ସାହିତ୍ୟିକ, ବୁଦ୍ଧିଜୀବୀ ଓ ଭାଷାତତ୍ତ୍ୱବିତ୍‌ମାନଙ୍କର ଅଭିମତ । ଓଡ଼ିଶାରେ ଉଙ୍କି ମାରିଥିବା ସଂକୀର୍ଣ୍ଣ ଆଞ୍ଚଳିକତା ଓ ଭାଷାଗତ ବିଦ୍ୱେଷ ଦୂର କରିବା ପାଇଁ ଏହି ଓଡ଼ିଆ ଭାଷା ବିଦ୍ୟାଳୟ ପ୍ରତିଷ୍ଠା ଏକାନ୍ତ କାମ୍ୟ । ଏହି ଭାଷା ବିଶ୍ୱବିଦ୍ୟାଳୟ ମାଧ୍ୟମରେ ଆଞ୍ଚଳିକ ଭାଷା ଓ ଶବ୍ଦର ମହତ୍ତ୍ୱ ବଢ଼ିବ । ଆମ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ମଧ୍ୟରେ ଭାବଗତ ସଂହତି ବଢ଼ିବ । ଏହାଦ୍ୱାରା ଆମ ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ମଧ୍ୟ ସମ୍ଭବ ହୋଇ ପାରିବ ବୋଲି ମୋର ଦୃଢ଼ ବିଶ୍ୱାସ । ଓଡ଼ିଆ ଜାତି ମଧ୍ୟରେ ସୃଜନଶୀଳ ଶକ୍ତି ଅତୀତରେ ଥିଲା ଓ ଏବେ ମଧ୍ୟ ରହିଛି, ଯାହାର ଗୌରବମୟ ଅତୀତ ପରମ୍ପରାର ସୁଦୀର୍ଘ ଇତିହାସ ରହିଛି - ତା'ର ପୁନର୍ନିର୍ମାଣ ଓ ପୁନର୍ଜାଗରଣ ପାଇଁ ଏହି ଓଡ଼ିଆ ଆତ୍ମପରିଚିତିର ଅନୁଶୀଳନ ଓ ଗଠନମୂଳକ ଆନ୍ଦୋଳନ ଅଧିକରୁ ଅଧିକତର ହେବା ଉଚିତ । ଏହି ଓଡ଼ିଆ - ଆତ୍ମପରିଚିତିର ଆନ୍ଦୋଳନକୁ ଅଧିକ ସକ୍ରିୟ କରିବା ପାଇଁ ଓଡ଼ିଶାର ପ୍ରମୁଖ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ (Literary & Cultural NGO) ଓ ଓଡ଼ିଶା ସରକାର ସମ୍ମିଳିତ ଉଦ୍ୟମ କରିବା ଉଚିତ୍ । ଓଡ଼ିଆ ଜାତିର ସୃଜନଶକ୍ତିକୁ ଶକ୍ତିଶାଳୀ ଓ ଜାଗ୍ରତ କରିବାକୁ ହେଲେ ଓଡ଼ିଆ ଜାତିପ୍ରାଣ ପଣ୍ଡିତ ଗୋପବନ୍ଧୁ ଓ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଭଳି ମହାନ୍ ନେତାମାନଙ୍କ ଦୂରଦୃଷ୍ଟି (Vision), ଦେଶପ୍ରେମ (Patriovision) ଓ ବଳିଷ୍ଠ ନେତୃତ୍ୱ (Leadership)ର ଆବଶ୍ୟକତା ରହିଛି । ଓଡ଼ିଆ ଆତ୍ମପରିଚିତିର ଯେ ପ୍ରକୃତ ସଂକଟ ଉପୁଜିଛି - ଏହା ଓଡ଼ିଆ ସଂସ୍କୃତିପ୍ରେମୀ ନାଗରିକମାନେ ଉପଲବ୍ଧି କରିବା ଉଚିତ ଓ ବଳିଷ୍ଠ କାର୍ଯ୍ୟପନ୍ଥା ଗ୍ରହଣ କରିବା ଉଚିତ ।

'ଶ୍ରଦ୍ଧା', ପ୍ଲଟ ନଂ- ୧୫୯୫
ଉତ୍କମଧୁ ନଗର
ଭୁବନେଶ୍ୱର-୭୫୧୦୩୦




ପାରାଦୀପଠାରେ ମହାମାନ୍ୟ ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁର ଉତ୍କଳମଣି ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତିରେ ପୁଷ୍ପମାଳା ଅର୍ପଣ କରୁଛନ୍ତି । (୧୨.୯.୦୫)

# ସ୍ୱାୟତ୍ତ ଶାସନ ପ୍ରତିଷ୍ଠାନ ଓ ଓଡ଼ିଶା ପ୍ରସଙ୍ଗ

ତାରାକାନ୍ତ ମହାନ୍ତି

ପୌର ଅନୁଷ୍ଠାନଗୁଡ଼ିକର ସ୍ଥିତି ସମ୍ପର୍କରେ ଡଟକେଭିଲେ ଯଥାର୍ଥରେ କହିଛନ୍ତି, 'ସ୍ୱାଧୀନ ରାଷ୍ଟ୍ରଗୁଡ଼ିକରେ ସ୍ୱାୟତ୍ତ ଅନୁଷ୍ଠାନମାନେ ହେଉଛନ୍ତି ବଳ ସଦୃଶ, ଗୋଟିଏ ରାଷ୍ଟ୍ର ଏକ ସ୍ୱାଧୀନ ସରକାରର ପଦ୍ଧତି ପ୍ରତିଷ୍ଠା କରିପାରନ୍ତି, ମାତ୍ର ପୌର ଅନୁଷ୍ଠାନ ବିନା ସ୍ୱାଧୀନତାର ସ୍ୱାଦ ଚାଖି ପାରନ୍ତି ନାହିଁ।' ସ୍ୱାୟତ୍ତ ଶାସନ ସଂସ୍ଥାର ଆବଶ୍ୟକତା ଓ ଗୁରୁତ୍ୱ ସମ୍ପର୍କରେ ମିଷ୍ଟର ଲିକକ୍ କହିଛନ୍ତି 'ଗଣତନ୍ତ୍ରରେ ସ୍ୱାୟତ୍ତ ଶାସନ ଅନୁଷ୍ଠାନଗୁଡ଼ିକ ହେଉଛନ୍ତି ଝୁଲନ୍ତା ଦୋଳିପରି। ଉତ୍ତମ ନାଗରିକ ଗଠନ କରିବାରେ ସେମାନେ ଉତ୍ତମ ତାଲିମ ଯୋଗାନ୍ତି। ଭିବଷ୍ୟତରେ ଉତ୍ତମ ସାଂସଦ ଓ ଭଲ ନେତା ସୃଷ୍ଟି କରିବାରେ ସେମାନେ ହେଉଛନ୍ତି ପ୍ରାଥମିକ ବିଦ୍ୟାଳୟ ସଦୃଶ।'

ଭାରତ ମାଟିରେ ସ୍ୱାୟତ୍ତ ଅନୁଷ୍ଠାନଗୁଡ଼ିକର ମୂଳ ହେଉଛି ବହୁତ ଗଭୀର। ଇତିହାସ ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ ଯେ, ଅତୀତରେ ପ୍ରତ୍ୟେକ ଗ୍ରାମରେ ଗୋଟିଏ ଗ୍ରାମପଞ୍ଚାୟତ ଥିଲା ଓ ତାହା ସ୍ୱୟଂଶାସିତ ଥିଲା। ଯଦିଓ ୧୬୮୭, ୧୭୭୦ ଏବଂ ୧୭୯୩ରେ ମାଡ୍ରାସ୍, କଲିକତା ଓ ବମ୍ବେରେ ଇଷ୍ଟଇଣ୍ଡିଆ କମ୍ପାନୀ ଯଥାକ୍ରମେ ତିନୋଟି ନିଗମ ପ୍ରତିଷ୍ଠା କରିଥିଲା, ସ୍ଥାନୀୟ ଜନସାଧାରଣ ସେଥିରେ (ସ୍ଥାନୀୟ ପ୍ରଶାସନ) ପର୍ଯ୍ୟାପ୍ତ ଭାବେ ଅଂଶଗ୍ରହଣ କରିବାର ସୁଯୋଗ ପାଉନଥିଲେ। କାରଣ ଶେଷ ଏବଂ ପ୍ରକୃତ ନିୟନ୍ତ୍ରଣ ବ୍ରିଟିଶଙ୍କଠାରେ ନ୍ୟସ୍ତ ଥିଲା। ଲର୍ଡ଼ ମେୟୋଙ୍କ ଶାସନ କାଳରେ ସ୍ୱାୟତ୍ତଶାସନ ପ୍ରତିଷ୍ଠା କରିବାର ବିଭିନ୍ନ ପଦକ୍ଷେପ ନିଆଯାଇଥିଲା। ଲର୍ଡ଼ ରିପନ୍ ଯାହାଙ୍କୁ ଯଥାର୍ଥରେ ଭାରତରେ ସ୍ୱାୟତ୍ତ ଶାସନର ଜନ୍ମଦାତା ବୋଲି ଅଭିହିତ କରାଯାଏ, ସେ ଏହାକୁ ସୁଦୃଢ଼ କରିବା ପାଇଁ ବହୁ ପଦକ୍ଷେପ ଗ୍ରହଣ କରିଥିଲେ। ସେ ପ୍ରାଦେଶିକ ସରକାରଙ୍କୁ ଲୋକାଲ ବୋର୍ଡ଼ ପ୍ରତ୍ୟେକ ଜିଲ୍ଲାରେ ଗଠନ କରି ଉକ୍ତ ବୋର୍ଡ଼ଙ୍କ ନିୟନ୍ତ୍ରଣରେ ବୋର୍ଡ଼ର ସ୍ୱତନ୍ତ୍ର, ସ୍ୱାଧୀନ ଭାବରେ ସମ୍ବଳ ସୃଷ୍ଟି କରିବାକୁ ନିର୍ଦ୍ଦେଶ ଦେଇଥିଲେ। ସେ ଏହି ଜିଲ୍ଲା ବୋର୍ଡ଼ଗୁଡ଼ିକରେ ଲିମିଟେଡ଼ ଜୁରିସ୍‌ଡିକ୍ସନ୍ ରଖିବାକୁ ନିର୍ଦ୍ଦେଶ ଦେଇଥିଲେ ଏବଂ ଏଥିରେ ସରକାରୀ ସଦସ୍ୟଙ୍କ ସଂଖ୍ୟା ମୋଟ ସଂଖ୍ୟାର ଏକ ତୃତୀୟାଂଶରୁ ଅଧିକ ନରଖିବା ପାଇଁ ନିର୍ଦ୍ଦେଶ ଦେଇଥିଲେ। ସେ ଉକ୍ତ ଜିଲ୍ଲାବୋର୍ଡ଼ଗୁଡ଼ିକର ଅଧ୍ୟକ୍ଷ ନିର୍ବାଚନ କରିବାକୁ ନିର୍ଦ୍ଦେଶ ମଧ୍ୟ ଦେଇଥିଲେ। ତାଙ୍କ ପରିକଳ୍ପନା ଏକ ସୁଦୂରପ୍ରସାରୀ ସ୍ୱାୟତ୍ତ ଶାସନ ଭାରତରେ ଗଠନ କରିବାରେ ଏକ ଯୁଗାନ୍ତକାରୀ ପଦକ୍ଷେପ ଥିଲା। ଲର୍ଡ଼ ରିପନ୍‌ଙ୍କର କେତେକ ପରାମର୍ଶ ବ୍ରିଟିଶ କ୍ରାଉନ୍‌ଙ୍କ ଦ୍ୱାରା ଅନୁମୋଦିତ ହୋଇଥିଲା ଏବଂ ଭାରତରେ ସ୍ୱାୟତ୍ତଶାସନ ପ୍ରତିଷ୍ଠା କରିବାର ଶୁଭାରମ୍ଭ ହୋଇଥିଲା। ତାଙ୍କ ପରବର୍ତ୍ତୀ ବ୍ରିଟିଶ୍ ଭାଇସ୍‌ରାୟମାନେ ଏହି ସଂସ୍ଥାର କିପରି ଅଭିବୃଦ୍ଧି ଘଟିବ ସେଦିଗରେ ଗଭୀର ମନୋନିବେଶ କରିନଥିଲେ।

**୨୦୦୪-୦୫ ଅଗଷ୍ଟ ମଧ୍ୟରେ ଓଡ଼ିଶାର ନଗର ଉନ୍ନୟନ ବିଭାଗର ସଫଳ କାର୍ଯ୍ୟାବଳୀ ଉପରେ ଏକ ଦୃଷ୍ଟିପାତ**

୧୯୫୧ ମସିହାରେ ଓଡ଼ିଶାର ସହର ସଂଖ୍ୟା ୧୯ ଥିବା ବେଳେ ଦୀର୍ଘ ପାଞ୍ଚ ଦଶନ୍ଧି ମଧ୍ୟରେ (୧୯୫୧-୨୦୦୧) ମଧ୍ୟରେ ଦ୍ରୁତ ଶିଳ୍ପାୟନ ଓ ବୃହତ୍ ପ୍ରକଳ୍ପଗୁଡ଼ିକ ପ୍ରତିଷ୍ଠା ଫଳରେ ଗ୍ରାମୀଣ ଜନତା ସହରାଭିମୁଖୀ ହେବା ଫଳରେ ବିଭିନ୍ନ ସହର ଗଢ଼ି ଉଠିଲା ଓ ଏହା ୧୯ରୁ ୧୦୩କୁ ବୃଦ୍ଧିପାଇଲା।

୨୦୦୧ ଜନଗଣନା ଅନୁଯାୟୀ ରାଜ୍ୟର ସମୁଦାୟ ୩୬୭.୦୦ ଲକ୍ଷ ଜନସାଧାରଣଙ୍କ ମଧ୍ୟରୁ ୫୪.୯୬ ଲକ୍ଷ ଲୋକ ଅଧୁନା ସହରାଞ୍ଚଳରେ ବାସ କରୁଛନ୍ତି। ଏକ ଦଶକରେ ସହରାଞ୍ଚଳର ଜନସଂଖ୍ୟା ବୃଦ୍ଧି ସମ୍ପର୍କରେ ସମୀକ୍ଷା କଲେ ଜଣାଯାଏ ଶତକଡ଼ା ୨୯.୭୮ ହାରରେ ଜନସଂଖ୍ୟାର ଅଭିବୃଦ୍ଧି ଘଟିଛି।

ବହୁଳ ପରିମାଣରେ ଜନସଂଖ୍ୟାର ସ୍ଥାନାନ୍ତର ଯୋଗୁଁ ଓ ସହରାଭିମୁଖୀ ହେଉଥିବା ଦୃଷ୍ଟିରୁ ଭିତ୍ତିଭୂମି ସୁବିଧା ସମସ୍ୟା, ପାନୀୟଜଳ ଯୋଗାଣ ଓ ସ୍ୱେରେଜ୍ ବ୍ୟବସ୍ଥା ଭଳି ଅନେକ ସମସ୍ୟା ସରକାରଙ୍କ ପାଇଁ ସମସ୍ୟା ସୃଷ୍ଟି କରିଥିବା ହେତୁ ଏହାର ସମାଧାନ କରିବାପାଇଁ ସରକାର ବ୍ୟାପକ ପରିକଳ୍ପନା ମାଧ୍ୟମରେ ଏହାର ନିରାକରଣ କରିବା ପାଇଁ ଯେତେ ସମ୍ଭବ ପରିକଳ୍ପନା ଯେତେ ଶୀଘ୍ର କାର୍ଯ୍ୟକାରୀ ହୋଇପାରିବ, ତାହାର ମୁକାବିଲା କରିବାରେ ଯଥାସମ୍ଭବ ଉଦ୍ୟମ ଅବ୍ୟାହତ ରଖିଛନ୍ତି।

ସମ୍ପ୍ରତି ୬୫୧ ମିଲିୟନ୍ ଲିଟର୍ ପିଇବାପାଣି ପ୍ରତିଦିନ ୧୦୨ ଅର୍ବାନ୍ ଲୋକାଲ୍‌ବଡ଼ି ଓ ଗୋଟିଏ ସେନ୍‌ସସ୍ ଟାଉନ୍‌କୁ ପ୍ରତିଦିନ ଯୋଗାଇ ଦିଆଯାଉଛି ଓ ଏହାଦ୍ୱାରା ୪.୨ ମିଲିୟନ୍ ସହରାଞ୍ଚଳବାସୀ ଉପକୃତ ହେଉଛନ୍ତି । ୧୭୩୭୫୨ ହାଉସ୍ କନେକ୍‌ସନ୍ ଯୋଗାଇ ଦିଆଯିବା ଦ୍ୱାରା ୧.୧ ମିଲିୟନ୍ ସହରବାସୀ ଉପକୃତ ହେଉଛନ୍ତି । ଅବଶିଷ୍ଟ ୩.୧ ମିଲିୟନ୍ ସହରାଞ୍ଚଳ ଜନସାଧାରଣ ୧୬.୧୮୩ରୁ ଉର୍ଦ୍ଧ୍ୱ ପବ୍ଲିକ୍ ଷ୍ଟାଣ୍ଡପୋଷ୍ଟ ଦ୍ୱାରା ପାନୀୟ ଜଳ ପାଇବା ସୁବିଧା ପାଇପାରୁଛନ୍ତି । ଏହାବ୍ୟତୀତ ୧୬.୫୦୩ ହ୍ୟାଣ୍ଡ୍ ପମ୍ପ ଟ୍ୟୁବ୍‌ୱେଲ୍ ବିଭିନ୍ନ ଅର୍ବାନ୍ ଲୋକାଲ୍ ବଡ଼ିରେ କାମ କରୁଛି ।

ଏହା ବ୍ୟତୀତ ୨୦୦୪-୦୫ରେ ୬୬ ଏମ୍.ଏଲଡି ପାନୀୟ ଜଳ ପମ୍ପିଂ ସିଷ୍ଟମ ଦ୍ୱାରା ଯୋଗାଇ ଦିଆଯାଇଛି, ଯାହା ଫଳରେ ୪୨ ଲକ୍ଷ ସହରାଞ୍ଚଳ ଜନସାଧାରଣ ଉପକୃତ ହୋଇଛନ୍ତି ।

୨୦୦୪-୦୫ ଆର୍ଥିକ ବର୍ଷରେ ୩୬୯୯.୪୫ ଲକ୍ଷ ଟଙ୍କାରେ ୮ଟି ପାନୀୟ ଜଳ ପରିକଳ୍ପନା ପାଇଁ ପ୍ରଶାସନିକ ଅନୁମୋଦନ ଲାଭ କରିଛି ଓ ଏଥିପାଇଁ ୨୦୦୪-୦୫ ବର୍ଷରେ ୧୮୪୭.୦୩ କୋଟି ଟଙ୍କାର ବଜେଟ୍ ବ୍ୟବସ୍ଥା କରାଯାଇଛି । ଏହାଦ୍ୱାରା ୪.୩ ଲକ୍ଷ ସହରାଞ୍ଚଳ ଲୋକ ଉପକୃତ ହେବେ ।

ଏହା ବ୍ୟତୀତ ୨୯ଟି ତ୍ୱରାନ୍ୱିତ ନଗରାଞ୍ଚଳ ଜଳ ଯୋଗାଣ ପ୍ରକଳ୍ପ (Urban water supply project) ସରକାରଙ୍କ ବୈଷୟିକ ଓ ପ୍ରଶାସନିକ ମଞ୍ଜୁରୀ ଲାଭ କରି ସାରିଲାଣି ।

ଜାତୀୟ ବସ୍ତି ଉନ୍ନୟନ କାର୍ଯ୍ୟକ୍ରମ (National Slum Development Programme) ଯାହାକି ଏକ କେନ୍ଦ୍ରୀୟ ଯୋଜନା ପରିକଳ୍ପନା ରାଜ୍ୟରେ ୧୯୯୬-୯୭ ମସିହାରୁ କାର୍ଯ୍ୟକାରୀ ହେଉଛି କେବଳ ନଗର ବସ୍ତି ଅଞ୍ଚଳରେ ବସବାସ କରୁଥିବା ଜନସାଧାରଣଙ୍କ ବସବାସ ବ୍ୟବସ୍ଥାରେ ଉନ୍ନତି ଆଣିବା ପାଇଁ କାର୍ଯ୍ୟ କରୁଛି । ବିଗତ ୮ ବର୍ଷ ହେଲା କେନ୍ଦ୍ରୀୟ ମଞ୍ଜୁରୀପ୍ରାପ୍ତ ୨୬୦୪ ଲକ୍ଷ ଟଙ୍କାର ବିଭିନ୍ନ ଅର୍ବାନ୍ ଲୋକାଲ୍ ବଡ଼ିକୁ ସେମାନଙ୍କର ପାଣ୍ଠି ଖର୍ଚ୍ଚ ବ୍ୟବସ୍ଥାକୁ ଦେଖି ଓ ସେଗୁଡ଼ିକର ଚାହିଦାକୁ ଦୃଷ୍ଟିରେ ରଖି ରାଜ୍ୟ ସରକାର ସେହି ଅର୍ବାନ୍ ଲୋକାଲ୍ ବଡ଼ିକୁ ଯୋଗାଇ ଦିଆଯାଇଛି ।

ଆଜକୁ ୮ ବର୍ଷ ତଳୁ ୧-୧୨-୧୯୯୭ରୁ କେନ୍ଦ୍ରୀୟ ପ୍ରାୟୋଜିତ ଯୋଜନା ପରିକଳ୍ପନା ସ୍ୱର୍ଣ୍ଣ ଜୟନ୍ତୀ ସହରୀ ରୋଜଗାର ଯୋଜନା (SJSRY) ରାଜ୍ୟର ସମସ୍ତ ଅର୍ବାନ୍ ଲୋକାଲ୍ ବଡ଼ିଗୁଡ଼ିକରେ କାର୍ଯ୍ୟକାରୀ ହେଉଛି । ନଗରାଞ୍ଚଳର ଦରିଦ୍ର ବିଶେଷ କରି ମହିଳା, ହରିଜନ, ଆଦିବାସୀ, ଶାରୀରିକ ବିକଳାଙ୍ଗ ପରିବାର ଯାହାର ମୁଖ୍ୟ ଜଣେ ମହିଳା ହୋଇଥିବେ, ସେମାନେ ଏହି ଯୋଜନାରୁ ଉପକୃତ ହୋଇଛନ୍ତି । ସ୍ୱଳ୍ପ ରୋଜଗାର ବସ୍ତିବାସିନ୍ଦାଙ୍କ ପାଇଁ ରାଜ୍ୟର ସମସ୍ତ ୧୦୩ଟି ସହରାଞ୍ଚଳରେ ଏହି ଯୋଜନା କାର୍ଯ୍ୟକାରୀ ହେଉଛି । ରାଜ୍ୟର ସହରାଞ୍ଚଳରେ ଥିବା ବେକାର ଯୁବକଯୁବତୀଙ୍କ ପାଇଁ ୨୦୦୩-୦୪ରେ କିଓସ୍କୋ ମାଧ୍ୟମରେ ଆତ୍ମନିଯୁକ୍ତି ସୃଷ୍ଟି କରିବା ପାଇଁ ଏକ ଅଭିଯାନ ଆରମ୍ଭ କରାଯାଇଛି ଓ ତାହା ଅଦ୍ୟାବଧି ଅବ୍ୟାହତ ଅଛି । ସେମାନଙ୍କ ପାଇଁ ଆତ୍ମନିଯୁକ୍ତି ସୁବିଧା ସୁଯୋଗ ସୃଷ୍ଟି କରିବା ଏହି ପରିକଳ୍ପନାର ମୁଖ୍ୟ ଉଦ୍ଦେଶ୍ୟ । ବେକାର ଯୁବକ ଯୁବତୀମାନଙ୍କ ପାଇଁ ସେମାନଙ୍କ ଦ୍ୱାରା ପ୍ରସ୍ତାବିତ କିଓସ୍କୋ/ସପିଙ୍ଗ ୟୁନିଟ୍ ପାଇଁ ବିନା ପ୍ରିମିୟମରେ ଜମି ଯୋଗାଇ ଦିଆଯାଉଛି । ଯାହାକୁ ସରକାରୀ ସବ୍‌ସିଡି ରୂପେ ଗଣ୍ୟ କରାଯାଇପାରେ ।

୨୦୦୧-୦୨ରୁ ରାଜ୍ୟରେ କେନ୍ଦ୍ରୀୟ ପ୍ରାୟୋଜିତ 'ବାଲ୍ମିକୀ ଆମ୍ବେଦକର ଯୋଜନା' (VAMBAY) ନାମକ ଏକ ଯୋଜନା କାର୍ଯ୍ୟକାରୀ କରାଯାଉଛି । ଅଦ୍ୟାବଧି ୨୧ ଅର୍ବାନ୍ ଲୋକାଲ ବଡ଼ି ୨୧୮.୬୦ ଲକ୍ଷ ଟଙ୍କା ଭାରତ ସରକାରଙ୍କଠାରେ ମ୍ୟାଚିଙ୍ଗ୍ ସେୟାର ଆକାରରେ ଜମା କରିଛନ୍ତି । ଭାରତ ସରକାର ଅଦ୍ୟାବଧି ୧୧୨୦୦ ଲକ୍ଷ ଟଙ୍କା ୧୩ଟି ଅର୍ବାନ୍ ଲୋକାଲ୍‌ବଡ଼ିଗୁଡ଼ିକ ସେଣ୍ଟ୍ରାଲ୍ ସବ୍‌ସିଡି ଆକାରରେ ନିଜେ ରିଲିଜ୍ କରିଛନ୍ତି ।

ଓଡ଼ିଶା ୱାଟର ସପ୍ଲାୟ ଆଣ୍ଡ୍ ସ୍ୱିରେଜ୍ ବୋର୍ଡ଼ସ (OWSSB) ରାଜ୍ୟର ବଡ଼ ବଡ଼ ସହରଗୁଡ଼ିକ ଲାଗି ୱାଟର ସପ୍ଲାୟ ପ୍ରୋଜେକ୍ଟ (ଜଳଯୋଗାଣ ପ୍ରକଳ୍ପ) ହୁଡ୍‌କୋ ସଂସ୍ଥା ରାଜ୍ୟ ସରକାରଙ୍କଠାରୁ ମାର୍ଜିନ୍ ଟଙ୍କା ନେଇ ଏହି କାର୍ଯ୍ୟ ଅବ୍ୟାହତ ରଖିଛନ୍ତି । ୨୦୦୧ରୁ ୨୦୦୪-୦୫ ମଧ୍ୟରେ ଓଡ଼ିଶା ୱାଟର ସପ୍ଲାୟ ଆଣ୍ଡ୍ ସ୍ୱରେଜ୍ ବୋର୍ଡ଼ ୪ଟି ଜଳଯୋଗାଣ ପ୍ରକଳ୍ପର କାର୍ଯ୍ୟ ସଫଳତାର ସହିତ ସମ୍ପୂର୍ଣ୍ଣ କରିଛନ୍ତି । ଏଗୁଡ଼ିକ ହେଲା କଟକ, ଜୟପୁର, ସମ୍ବଲପୁର ଓ କେନ୍ଦ୍ରାପଡ଼ା, ରାଉରକେଲା ସିଭିଲ୍ ଟାଉନ୍ ୱାଟର ସପ୍ଲାୟ ପ୍ରୋଜେକ୍ଟ ବଣ୍ଡମୁଣ୍ଡା ବ୍ୟତୀତ ସମ୍ପୂର୍ଣ୍ଣ ହେଲାଣି । ୩ ଗୋଟି ୱାଟର ସପ୍ଲାୟ ପ୍ରୋଜେକ୍ଟ ଟିଟିଲାଗଡ଼, ଅନୁଗୋଳ ଓ ତାଳଚେରର ନିର୍ମାଣ କାର୍ଯ୍ୟ ଦ୍ରୁତଗତିରେ ଚାଲିଛି ଓ ଏହା ଖୁବ୍ ଶୀଘ୍ର ସମ୍ପୂର୍ଣ୍ଣ ହେବ । ସମନ୍ୱିତ କ୍ଷୁଦ୍ର ଓ ମଧ୍ୟମ ସହର ଉନ୍ନୟନ (IDSMT) ଏକ କେନ୍ଦ୍ରୀୟ ପ୍ରାୟୋଜିତ ଯୋଜନା ମାଧ୍ୟମରେ କାର୍ଯ୍ୟକାରୀ ହେଉଛି ।

ଏହାର ଲକ୍ଷ୍ୟ ହେଉଛି ଗ୍ରାମାଞ୍ଚଳରୁ, ଛୋଟ ସହରରୁ ବଡ଼ ବଡ଼ ନଗରକୁ ବହୁ ସଂଖ୍ୟାରେ ଚାଲି ଆସୁଥିବା ଲୋକମାନଙ୍କୁ ଦୂରରେ ରଖି ରାଜ୍ୟର ବଡ଼ ବଡ଼ ନଗରୀର ବର୍ଦ୍ଧିତ ଜନସଂଖ୍ୟାକୁ ରୋକିବା ଉଦ୍ଦେଶ୍ୟରେ ଏହି ପ୍ରକଳ୍ପ କାର୍ଯ୍ୟକାରୀ କରିବ । ଏହି ଯୋଜନାରେ ଏପର୍ଯ୍ୟନ୍ତ ୬୫ ଗୋଟି ସହରକୁ ଅନ୍ତର୍ଭୁକ୍ତ କରାଯାଇଛି । ୨୦୦୪-୦୫ ବର୍ଷରେ ଭାରତ ସରକାର ଏହିସବୁ ଛୋଟ ସହରର ଉନ୍ନତିକଳ୍ପେ ୧୧୭.୦୦ ଲକ୍ଷ ଟଙ୍କା ଅନୁଦାନ ରାଶି ଆକାରରେ ପ୍ରଦାନ କରିଛନ୍ତି । ଏହିସବୁ ସହରଗୁଡ଼ିକ ହେଲା- ବଡ଼ବିଲ୍, ମାଲକାନଗିରି, ଖଡ଼ିଆଳ ଏବଂ ଖଡ଼ିଆଳ ରୋଡ଼ । ବାଙ୍କୀ ସହରର ଉନ୍ନତି ପାଇଁ ୩୨ ଲକ୍ଷ ଟଙ୍କା ମଞ୍ଜୁର କରାଯାଇଛି । ଏହାବ୍ୟତୀତ

୫୦ ଅର୍ବାନ୍ ଲୋକାଲ୍ ବଡ଼ିରେ ସର୍ବସାଧାରଣ ସୁଲଭ ଶୌଚାଳୟ ସୁବିଧା ସରକାରଙ୍କ ଦ୍ୱାରା ଉପଲବ୍ଧ କରାଯାଉଛି । ୧୦ମ ପଞ୍ଚବାର୍ଷିକ ଯୋଜନା କାଳରେ ୮ କୋଟି ଟଙ୍କା ବ୍ୟୟରେ ୧୫୦ଟି ସୁଲଭ ସର୍ବସାଧାରଣ ଶୌଚାଳୟ ନିର୍ମାଣ କରିବା ପାଇଁ ନିଷ୍ପତ୍ତି ନିଆଯାଇଛି । ୧.୧୨.୯୯ରୁ ଅକ୍ଟ୍ରୋଇ ଟ୍ୟାକ୍ସ ବା ପଣ୍ୟକର ଉଚ୍ଛେଦ କରାଯାଇଛି । ୧୯୮୮-୯୯କୁ ମୂଳ ବର୍ଷ ରୂପେ ଧରି ସେହି ସମୟ ମଧ୍ୟରେ ଯେଉଁ ପଣ୍ୟକର ଆଦାୟ କରାଯାଇଥିବ ତାହାର କ୍ଷତି ପୂରଣ ବାବଦରେ ପ୍ରବେଶ କର ହକ୍‌ଦାର ସମସ୍ତ ଅର୍ବାନ୍ ଲୋକାଲବଡ଼ିଗୁଡ଼ିକୁ ଦେୟ କରିବା ପାଇଁ ସରକାର ନୀତିଗତ ନିଷ୍ପତ୍ତି ନେଇଛନ୍ତି । ୨୦୦୪-୦୫ରେ ୧୨୮.୫୫ କୋଟି ଟଙ୍କା ପ୍ରବେଶ କର ଆକାରରେ ସମସ୍ତ ଅର୍ବାନ୍ ଲୋକାଲ୍‌ବଡ଼ିଙ୍କୁ ଯୋଗାଇ ଦେବା ପାଇଁ ବଜେଟ୍ ବ୍ୟବସ୍ଥା କରାଯାଇଛି ।

**ଓଡ଼ିଶାରେ ପୌରାଞ୍ଚଳ ଏକ ବିହଙ୍ଗାବଲୋକନ**

ମ୍ୟୁନିସିପାଲ୍ କର୍ପୋରେସନ
(୧) କଟକ ମ୍ୟୁନିସିପାଲ୍ କର୍ପୋରେସନ୍
(୨) ଭୁବନେଶ୍ୱର ମ୍ୟୁନିସିପାଲ୍ କର୍ପୋରେସନ
(୩) ମ୍ୟୁନିସିପାଲଟି - ୩୫
(୪) ବିଜ୍ଞାପିତ ଅଞ୍ଚଳ ପରିଷଦ- ୬୭

**୨୦୦୩ ପୌର ନିର୍ବାଚନ - ଏକ ସଂକ୍ଷିପ୍ତ ସମୀକ୍ଷା**

ନିର୍ବାଚନ ହୋଇଥିଲା ୯୬ଟି ଅର୍ବାନ୍ ଲୋକାଲବଡ଼ିଙ୍କ ପାଇଁ

ୱାର୍ଡ଼ ସଂଖ୍ୟା ୧୬୨୯

ବିଭିନ୍ନ ରାଜନୈତିକ ଦଳର ଆସନ ଦଖଲ
(୧) ବିଜେଡ଼ି - ୫୩୦
(୨) ବିଜେପି - ୩୩୪
(୩) କଂଗ୍ରେସ (ଆଇ) - ୫୦୨
(୪) ସ୍ୱାଧୀନ - ୨୧୨
(୫) ଅନ୍ୟଦଳ - ୪୬

ସଂପ୍ରତି ରାଜ୍ୟର ସମୁଦାୟ ଲୋକସଂଖ୍ୟା ମଧ୍ୟରୁ ଶତକଡ଼ା ୧୬ରୁ ୧୭ ଜଣ ବ୍ୟକ୍ତି ନଗରାଞ୍ଚଳରେ ରହୁଛନ୍ତି ଏବଂ ୨୦୧୧ ମସିହା ସୁଦ୍ଧା ୨୫% ଲୋକ ସହରାଞ୍ଚଳରେ ବସବାସ କରିବେ ବୋଲି ଏକ ପ୍ରାଥମିକ ଆକଳନରୁ ଜଣାପଡ଼ିଛି ।

ସମ୍ପ୍ରତି ନଗରାଞ୍ଚଳର ପ୍ରଶାସନିକ ପଦ୍ଧତିରେ ଏକ ବୈପ୍ଳବିକ ପରିବର୍ତ୍ତନ ୭୪ତମ ସମ୍ବିଧାନ ସଂଶୋଧନ ଆଇନ ୧୯୯୨ରେ ଥିବା ପୌର ଆଇନକୁ ରାଜ୍ୟ ସରକାର ସଂଶୋଧନ କରିଛନ୍ତି । ଯାହାଫଳରେ ରାଜ୍ୟରେ ଏକ ନିର୍ବାଚନ କମିଶନ ଗଠିତ ହୋଇଛି । ଯାହା ପଞ୍ଚାୟତ ଓ ପୌର ନିର୍ବାଚନକୁ ପରିଚାଳନା କରୁଛନ୍ତି । ପୌର ନିର୍ବାଚନରେ ଏକ ତୃତୀୟାଂଶ ସ୍ଥାନ ଆଦିବାସୀ, ହରିଜନ, ପଛୁଆବର୍ଗ ଓ ମହିଳାଙ୍କ ପାଇଁ ସଂରକ୍ଷଣ କରାଯାଇଛି । ରାଜ୍ୟ ଅର୍ଥକମିଶନ ଇତିମଧ୍ୟରେ ପୌର ସଂସ୍ଥା ସମ୍ପର୍କରେ ତାଙ୍କର ରିପୋର୍ଟ ପ୍ରଦାନ କରିଛନ୍ତି । ରାଜ୍ୟ ଅର୍ଥ କମିଶନଙ୍କ ଆକଳନ ଅନୁଯାୟୀ ପୌରାଞ୍ଚଳର ରକ୍ଷଣାବେକ୍ଷଣ ଓ ନୂତନ ପ୍ରକଳ୍ପ ପ୍ରତିଷ୍ଠା ପାଇଁ ଦ୍ରୁତଗତିରେ ବ୍ୟୟଭାର ବଢ଼ି ଚାଲିଛି । ପୌର ସଂସ୍ଥାଗୁଡ଼ିକର ବାର୍ଷିକ ଆୟରେ ୧୨୦ କୋଟି ଟଙ୍କା ନିଅଣ୍ଟ ପଡୁଛି । ଏହାର ଅନୁସୃତ ନୀତିରେ ଓ କାର୍ଯ୍ୟ ପ୍ରଣାଳୀରେ ପରିବର୍ତ୍ତନ ନ ଆସିଲେ ତାହା ଆଉ କେତେ ବର୍ଷ ଭିତରେ ୧୫୫୭ କୋଟି ଟଙ୍କାରୁ ବଳି ପଡ଼ିବ ।

ସରକାର ନଗରାଞ୍ଚଳରେ ରହୁଥିବା ଜନସାଧାରଣଙ୍କ ଜୀବନ ଧାରଣର ମାନଦଣ୍ଡ ବୃଦ୍ଧି କରିବାରେ ଅବିରତ ପ୍ରୟାସ ଜାରି ରଖିଛନ୍ତି ।

୨୦୦୫ ମସିହା ସ୍ୱାୟତ୍ତ ଶାସନ ଦିବସର ଅନୁଚିନ୍ତା ଏକ ପ୍ରଦୂଷଣମୁକ୍ତ ସହର ହେଉ ଓ ଏଥିପାଇଁ ଆମ୍ଭେ ସମସ୍ତେ ଚାଲନ୍ତୁ ଏକା ସାଙ୍ଗରେ ଶପଥ ନେବା ଯେ ଆମେ ସବୁ ଯେଉଁ ସହରରେ ବାସ କରୁଛୁ ତାକୁ ପ୍ରଦୂଷଣମୁକ୍ତ ସହର ରୂପେ ଗଢ଼ିତୋଳିବା ଓ ପ୍ରୟାସ ଜାରି ରଖିବା ।

୨୦୦୫ର ସ୍ୱାୟତ୍ତ ଶାସନ ଦିବସ ପାଳନ ଅବସରରେ ପାରାଦୀପ ପୌର ପାଳିକା ତା'ର ୬୫ ହଜାର ବସ୍ତିବାସିନ୍ଦାଙ୍କୁ ପାନୀୟ ଜଳ ଯୋଗାଇ ଦେବା ପାଇଁ ୧୦ କୋଟି ଟଙ୍କା ବ୍ୟୟରେ ବିଜୟଚନ୍ଦ୍ରପୁରଠାରେ ଏକ ବୃହତ୍ ଜଳଭଣ୍ଡାର ନିର୍ମାଣ କରିବା ପାଇଁ ପଦକ୍ଷେପ ନେଉଛନ୍ତି ବୋଲି ଏକ ସଦ୍ୟ ସମ୍ବାଦରୁ ଜଣାପଡ଼ିଛି ।

ଉପନିର୍ଦ୍ଦେଶକ (ପ୍ରିଣ୍ଟ ମିଡିଆ ଓ ବିଜ୍ଞାପନ)
ତଥା ଉପଶାସନ ସଚିବ, ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର

----

# ଓଡ଼ିଆ ପରମ୍ପରାର ପରିଭାଷା : ଖୁଦୁରୁକୁଣୀ ଓଷା

ସୀମା ସାହୁ

ଖୁଦୁରୁକୁଣୀ ଓଷା ଉତ୍କଳୀୟ ସମୃଦ୍ଧ ପରମ୍ପରାର ହୃଦୟସ୍ପର୍ଶୀ କାହାଣୀ । ପଲ୍ଲୀ ସଂସ୍କୃତିକୁ ଖୁଦୁରୁକୁଣୀ ଓଷା ପ୍ରାଣବନ୍ତ ଓ ରସସିକ୍ତ କରିବା ଦିଗରେ ସାର୍ଥକ ଭୂମିକା ଗ୍ରହଣ କରେ । ମେଘ ବିଦୁର ଭାଦ୍ରବ ମାସର ପ୍ରତ୍ୟେକ ରବିବାର ଖୁଦୁରୁକୁଣୀ ଓଷା ପାଇଁ ଚଳଚଞ୍ଚଳ ଓ ଉତ୍ସବ ମୁଖରିତ ହୋଇଉଠେ, କୁମାରୀମାନଙ୍କର ଅନେକ ଦିନର ଆକାଂକ୍ଷିତ ଓ ପ୍ରତିକ୍ଷିତ ଏହି ଓଷା, ସେମାନଙ୍କ ହୃଦୟର ଭାଷାରୁ ହିଁ ପ୍ରତୀୟମାନ ହୁଏ । ମୁଖ୍ୟତଃ ଉପକୂଳବର୍ତ୍ତୀ ଓଡ଼ିଶାର କୁମାରୀମାନେ ଖୁଦୁରୁକୁଣୀ ଓଷାକୁ ମଙ୍ଗଳମୟୀ ମା' ମଙ୍ଗଳାଙ୍କ ଉଦ୍ଦେଶ୍ୟରେ ସମର୍ପିତ କରିଥାନ୍ତି । ଖୁଦୁରୁକୁଣୀ ଓଷାର ମହାତ୍ମ୍ୟ ସ୍ୱର୍ଗତଃ ଗୋପୀନାଥ ଦାସଙ୍କ ରଚିତ ପୁସ୍ତକରେ ବର୍ଣ୍ଣିତ । ପଲ୍ଲୀବାଳାମାନେ ନିଜର ତଥା ପରିବାରର ଶୁଭ ଓ ସୌଭାଗ୍ୟ କାମନା କରି ଏହି ଓଷାକୁ ନିଷ୍ଠା ଓ ଆଗ୍ରହର ସହିତ ପାଳନ କରନ୍ତି । ଭଉଣୀମାନେ ନିଜଭାଇର ଉଜ୍ଜଳ ଭବିଷ୍ୟତ, ନିରାମୟ ଓ ଦୀର୍ଘଜୀବନ କାମନା କରି ଖୁଦୁରୁକୁଣୀ ଓଷାରେ ମା' ମଙ୍ଗଳାଙ୍କୁ ସ୍ମରଣ କରନ୍ତି ।

ଏହି ଓଷା ଓଡ଼ିଶାରେ କେବେଠାରୁ ପ୍ରଚଳିତ ଏହାର କୌଣସି ଐତିହାସିକ ତଥ୍ୟ ଏ ପର୍ଯ୍ୟନ୍ତ ହସ୍ତଗତ ହୋଇନାହିଁ । ତତ୍କାଳୀନ ବଡ଼ମ୍ବା ଗଡ଼ଜାତର ରାଜକବି ରାମଚନ୍ଦ୍ର ପଟ୍ଟନାୟକ ହାରାବତୀ ନାମକ ଏକ ଜନପ୍ରିୟ କାବ୍ୟ ରଚନା କରିଥିଲେ । ଏହି ପୋଥି ଏବେ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ । ଏହି କାବ୍ୟର ନାୟିକା ଗୁଡ଼ିଆଘରର ଝିଅ ହାରାବତୀ ଗ୍ରାମର ଜଣେ ରସିକ ଯୁବକ ସହିତ ଖୁଦୁରୁକୁଣି ଓଷା ଦିନ ପୋଖରୀ କୂଳରେ ମିଳିତ ହୋଇଥିଲା । ତେଣୁ ଏହି କାବ୍ୟରୁ ପ୍ରମାଣିତ ହୁଏ ଯେ, ଖୁଦୁରୁକୁଣି ଓଷା ଅଷ୍ଟାଦଶ ଶତାବ୍ଦୀରେ ଓଡ଼ିଶାରେ ଲୋକପ୍ରିୟ ଥିଲା । ଗୋପୀନାଥ ଦାସଙ୍କ ରଚିତ 'ଖୁଦୁରୁକୁଣୀ ଓଷା' ଓଡ଼ିଶାର ଏକ ଜନପ୍ରିୟ ଲୋକକଥା ଉପରେ ଆଧାରିତ । ଅଲିଅଳି ସାଧବ ଦୁଲଣୀ ତଅପୋଇର ଅଶ୍ରୁଳ ଓ କରୁଣ କାହାଣୀକୁ ଗୋପୀନାଥ ଦାସ ଜୀବନ୍ତ ଭାବେ ଉପସ୍ଥାପନ କରିଛନ୍ତି । ସାଧବ କନ୍ୟା ତଅପୋଇ ଭାଉଜମାନଙ୍କ ଅତ୍ୟାଚାର ଓ ନିର୍ଯ୍ୟାତନାର ଶିକାର ହୋଇ ଅରଣ୍ୟ ମଧ୍ୟରେ ଛେଳି ଜଗୁଥିଲା । ଦୁର୍ଭାଗ୍ୟବଶତଃ ଦିନେ ବଡ଼ଭାଉଜର ଅତିପ୍ରିୟ ଛେଳି 'ଘରମଣି' ଅରଣ୍ୟ ମଧ୍ୟରେ ହଜିଗଲା । ଘରମଣିକୁ



ଖୋଜୁଥିବା ସମୟରେ ନିକଟସ୍ଥ ଗ୍ରାମରେ ହୁଳହୁଳି ଶବ୍ଦ ଶୁଣି ତଅପୋଇ ସେଠାରେ ଉପସ୍ଥିତ ହେଲା । କୁମାରୀମାନେ ଖୁଦୁରୁକୁଣୀ ଓଷାର ମହିମା ସଂପର୍କରେ ଅତ୍ୟାଚାରିତା ତଅପୋଇକୁ ଅବଗତ କରାଇଥିଲେ । ଏହାକୁ ଗୋପୀନାଥ ଦାସ ଉଲ୍ଲେଖ କରିଛନ୍ତି ।

'ବୋଇଲା ନାନୀମାନେ ଶୁଣ
ଏ ଓଷା କଲେ କେଉଁ ଗୁଣ ।
ଶୁଣି ବୋଲନ୍ତି ବାଳ ଝିଏ
ଏ ଓଷା ପାଞ୍ଚପାଳି ହୁଏ ।
ଖୁଦୁରୁକୁଣୀ ଏ ଅଟଇ
ଯାହା ମାଗିବ ତାହା ପାଇ ।
ଏଥିରେ ଦେବତା ମଙ୍ଗଳା
ରଖନ୍ତି ବୁଡ଼ିବାର ଭେଳା ।'

ତଅପୋଇ ଏହି ଓଷାକୁ ପାଳନ କରିବାକୁ ମାନସିକ କରିବା ଦ୍ୱାରା ଘରମଣିକୁ ଫେରିପାଇଲା । ବିଦେଶରୁ ତା'ର ସାତଭାଇ ଶୁଭରେ

ଫେରିବା ସହିତ ତା'ର ଦୁଃଖର ଦିନ ଘୁଞ୍ଚିଗଲା । ଏହି ଓଷାକୁ ଖୁଦୁରୁକୁଣୀ କହିବାର ତାତ୍ପର୍ଯ୍ୟ ହେଲା ଖୁଦଭଜା ପ୍ରଧାନ ଭୋଗ ରୂପେ ମା' ମଙ୍ଗଳାଙ୍କୁ ଅର୍ପଣ କରାଯାଏ । ଏହି ଓଷାର ଅଧିଷ୍ଠାତ୍ରୀ ଦେବୀ ମା' ମଙ୍ଗଳା । ଭାଦ୍ରବମାସର ପ୍ରତି ରବିବାର ଦିନ ରାତ୍ରରେ ଏହି ଓଷା ପାଳନ କରାଯାଏ । ଗୋପୀନାଥ ଦାସ ତାଙ୍କର ରଚିତ ପୁସ୍ତକରେ ଉଲ୍ଲେଖ କରିଛନ୍ତି ।

'ଭାଦବ ମାସ ରବିବାର ଖୁଦୁରୁକୁଣୀର ବେଭାର ।' ରବିବାର ଦିନ ପ୍ରଭାତରେ କୁମାରୀମାନେ ଫୁଲ, ପତ୍ର, କଦଳୀ ବାହୁଗାଁ ଦ୍ୱାରା ପୋଖରୀ କିମ୍ବା ନଦୀ କୂଳରେ ବାଲୁଙ୍କା ସ୍ଥାପନ କରିଥାନ୍ତି ଓ ବଜ୍ରମୂଳି ଦାନ୍ତକାଠି ଆଦି ପୋତି ଫୁଲରେ ସୁସଜ୍ଜିତ କରନ୍ତି । କୁମାରୀମାନେ ରାତ୍ରିରେ ଗ୍ରାମର କୋଠଘରେ କିମ୍ବା କୌଣସି ଢିଙ୍କିଶାଳରେ ଏକତ୍ରିତ ହୋଇ ମା' ମଙ୍ଗଳାଙ୍କର ମୂର୍ତ୍ତି 'ଭାଲୁକୁଣି' ସ୍ଥାପନ କରି ଫୁଲରେ ସଜ୍ଜିତ କରନ୍ତି । ଘରର କାନ୍ଥରେ ଝୋଟି ଚିତା ଇତ୍ୟାଦି ଦିଆଯାଏ । ବୋଇତର ଚିତ୍ର ମଧ୍ୟ ଅଙ୍କନ କରାଯାଇଥାଏ । ଖୁଦୁରୁକୁଣୀ ଓଷା ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପରମ୍ପରା ସହିତ ସଂପୃକ୍ତ । ରାତ୍ରିରେ ପୂଜା ଆରମ୍ଭ କରାଯାଏ । କୁମାରୀମାନେ ଗୋପୀନାଥ ଦାସଙ୍କର ଖୁଦୁରୁକୁଣୀ ଓଷା ବହିକୁ ମଧୁର କଣ୍ଠରେ ଆବୃତ୍ତି କରି ଗ୍ରାମ୍ୟ ପରିବେଶକୁ ମଧୁମୟ କରି ଗଢ଼ି ତୋଳନ୍ତି । ଏଥିରେ ବର୍ଣ୍ଣିତ ତଅପୋଇର ମର୍ମସ୍ପର୍ଶୀ ଜୀବନ ବୃତ୍ତାନ୍ତ କୁମାରୀମାନଙ୍କ ହୃଦୟକୁ ଶୋକାକୁଳ କରିବା ସହିତ ନୟନରୁ ଅଶ୍ରୁର ବର୍ଷା ଝରିପଡ଼େ । ଶେଷ ରବିବାର ଦିନ ମହାଆଡମ୍ବରରେ ମା' ମଙ୍ଗଳାଙ୍କୁ ଆରାଧନା କରାଯାଏ । ପୂଜାସ୍ଥଳକୁ ଆମ୍ରପତ୍ରର ତୋରଣ ରଙ୍ଗବେରଙ୍ଗର ପତାକା ଓ ଆଲୋକମାଳାରେ ସଜ୍ଜିତ କରି ଆକର୍ଷଣୀୟ କରାଯାଏ । ଶେଷ ରବିବାର ଦିନ ଦିହୁଡ଼ି ଜାଳି ଝୁଣା ମରାଯାଏ । ବିଜ୍ଞାନ ସମ୍ମତ ଦୃଷ୍ଟିକୋଣରୁ ଦିହୁଡ଼ି ଜାଳିବା ଦ୍ୱାରା ପୋକ ପତଙ୍ଗ ଇତ୍ୟାଦି ଆକର୍ଷିତ ହୋଇ ଦିହୁଡ଼ିରେ ପୋଡ଼ି ମରନ୍ତି । ଯାହାଦ୍ୱାରା ପୋକମାନଙ୍କର ଦାଉରୁ ଫସଲର ସୁରକ୍ଷା କରାଯାଇପାରେ । ଗ୍ରାମର ପ୍ରତ୍ୟେକ ସାହିରେ ଖୁଦୁରୁକୁଣୀ ଓଷା ବାଳିକାମାନେ ପାଳନ କରନ୍ତି । ସେମାନଙ୍କ ମଧ୍ୟରେ ଫୁଲତୋଳା, ସାଜସଜ୍ଜା ଓ ଭାଲୁଙ୍କୁଣୀଙ୍କୁ ନେଇ ମୃଦୁ ପ୍ରତିଦ୍ୱନ୍ଦିତା ଆରମ୍ଭ ହୁଏ । ନିଜ ନିଜର ଭାଲୁଙ୍କୁଣୀର ସୁନ୍ଦରତାକୁ ନେଇ ସେମାନେ ପ୍ରକାଶ କରିଥାନ୍ତି

'ଆମ ଭାଲୁଙ୍କୁଣୀ ନାଇଚି ଚୁଡ଼ି
ତମ ଭାଲୁଙ୍କୁଣୀ ଗୋଦର ଗୋଡ଼ି ।'

ଏହି ପ୍ରତିଦ୍ୱିନ୍ଦିତାରେ କିନ୍ତୁ କୌଣସି ପ୍ରକାର ରାଗ, ବିଦ୍ୱେଷ ଅଶୁୟା ମନୋଭାବ ନଥାଏ । ସେମାନଙ୍କ ମଧ୍ୟରେ ଥିବା ଭାବଗତ ସଂପର୍କ ଲୌକିକ ଗୀତର ପାରିଦର୍ଶିତାରେ ପ୍ରକାଶ ପାଇଥାଏ । ତେଣୁ ସେମାନେ ଆବୃତ୍ତି କରନ୍ତି ।

'ଗୁଡ଼ିଆ ଘରର ଚଟୁ,
ଆମ ଭାଲୁଙ୍କୁଣୀ ଚହଟ ଚିକ୍କଣ
ତମ ଭାଲୁଙ୍କୁଣୀ ଫାଟୁ ।'

ଖୁଦୁରୁକୁଣୀ ଉତ୍କଳୀୟ ପରମ୍ପରାର ଶ୍ରେଷ୍ଠ ସ୍ମାରକୀ । ଆଧାତ୍ମିକତା, ନୈତିକତା ଓ ସାମାଜିକ ମୂଲ୍ୟବୋଧର ପରିପ୍ରକାଶ ଘଟେ ଏହି ଓଷାରେ । ସାମାଜିକ ସଂପର୍କ ଓ ପାରିବାରିକ ସୌହାଦ୍ଦ୍ୟର ବିକାଶ ଦିଗରେ ଏହି ଓଷା ଉତ୍କଳୀୟ ଜନଜୀବନକୁ ପ୍ରଭାବିତ କରେ । ଉତ୍କଳୀୟ ପଲ୍ଲୀଜୀବନର ଆତ୍ମା ଖୁଦୁରୁକୁଣୀ ଓଷା ମଧ୍ୟରେ ଅନ୍ତର୍ନିହିତ ।

ଯାଗମରା ପାଟଣା
ମଦନପୁର, ଖୋର୍ଦ୍ଧା-୭୫୨୦୫୪




ହିଞ୍ଜିଳିକାଟୁର ଅଙ୍କୋରଡ଼ାଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଡି.ପି.ଇ.ପି ସ୍କୁଲକୁ ଉଦ୍‌ଘାଟନ କରୁଛନ୍ତି । ନିକଟରେ ଶକ୍ତି, ପର୍ଯ୍ୟଟନ ଓ ସୂଚନା ପ୍ରଯୁକ୍ତି ମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଉପସ୍ଥିତ ଅଛନ୍ତି ।
(୧୭.୯.୦୫)




# ଆଜିର ଉତ୍ସର୍ଗ ପତ୍ର




**ଆ**ଖି ଖୋଲିଲେ ଦିଶି ଯାଉଛି - କାଶତଣ୍ଡିର ଶୁଭ୍ର ପ୍ରକାଶ । ବାୟୁର ପ୍ରବହମାନତାରେ ସଞ୍ଚରଣଶୀଳ ସବୁଜିମା । ଜଳବିନ୍ଦୁରେ ଶୁଦ୍ଧତାର ବ୍ୟାପ୍ତି । ମେଘଧୁଆ ଆକାଶର ସ୍ୱଚ୍ଛ ଆସ୍ତରଣ । ଏସବୁ ଯେମିତି ଉଦ୍‌ଘୋଷଣା କରୁଛନ୍ତି - ଆନନ୍ଦମୟୀ ମା'ର ଆବିର୍ଭାବର ସନ୍ଦେଶ । ଶାରଦୀୟ ସୌରଭରେ ସୁରଭିତ ପୁରନଗ୍ରର ଏହି ଚପଳ ଚଞ୍ଚଳତା ଆସିଗଲା । ପାର୍ବଣର ଋତୁ ଆସିଗଲା । ଅମୃତବର୍ଷାର ଅବସର ଓ ଅବକାଶ ଆସିଗଲା । ମା'ର ପଣତ ଉହାଡ଼ରେ ଆଶ୍ରିତ ହେବାର ଏକ ଅନନ୍ୟ ମୁହୂର୍ତ୍ତ ଆସିଗଲା । ପ୍ରକୃତିକୁ ନିରାଜନା କରିବାର ଚିନ୍ମୟୀ ଉଦ୍‌ଶ୍ରବଣ ଆସିଗଲା ।

ଏଇ ଆସିବାରେ କିନ୍ତୁ ଏକ ସ୍ୱତନ୍ତ୍ର ସ୍ୱୀକୃତି ରହିଛି । ଅମୃତର ଅଧିକାରିଣୀ ମାତୃଶକ୍ତି । ସାମାନ୍ୟ ଇକ୍ଷଣରେ ଭରିଯାଏ ଅତୃପ୍ତିର ଶୂନ୍ୟଥାଳ । ମାତୃଶକ୍ତିର ନିରାଜନାରେ ପ୍ରକୃତିର ହିଁ ଆରାଧନା । ଏହି ଆରାଧନା ପୁଣି ଗୁଣରେ ଶକ୍ତିରେ ବିଚିତ୍ର । ଏଇଠି ଆନନ୍ଦମୟୀର ପାଦତଳେ ତା'ର ସନ୍ତାନ ନତଜାନୁ ହୋଇ ବଳିଦିଏ - ମୋହ, ମାୟା, କାମ, କ୍ରୋଧ, ଲୋଭ, ମାତ୍ସର୍ଯ୍ୟର ବଳି । ଆତ୍ମସମୀକ୍ଷା ମାଧ୍ୟମରେ ସେ ବଳିଦିଏ ଶାକାମ୍ବରୀର ଚରଣ ତଳେ - ମହାର୍ଘବଳି । ସେ ବଳି ଗ୍ରହଣ କରି ତୃପ୍ତ ହୋଇଯାଏ ମା' । ନିଜ ସନ୍ତାନର ଏ ଅଦ୍ଭୁତ ଉତ୍ସର୍ଗରେ ବିଗଳିତ ହୋଇଯାଏ ତା'ର ଅସ୍ତିତ୍ୱ । ପୂର୍ଣ୍ଣ ପ୍ରାଣରେ ସ୍ୱୀକାର କରିନିଏ ପୁତ୍ରର ଯୋଜନାବଦ୍ଧ ତ୍ୟାଗର ସାମଗ୍ରୀ । ଏଇଠୁ ଆରମ୍ଭ ହୋଇଯାଏ ସମର୍ପଣର ପର୍ବ । ଶାସ୍ତ୍ରୀୟ ମତରେ ଏହା ହିଁ ବୋଧହୁଏ ବଳି ଓ ଉତ୍ସର୍ଗର ରହସ୍ୟ ।

କିନ୍ତୁ ଲୋକାଚାର ଏହି ଶାସ୍ତ୍ରୀୟ ସିଦ୍ଧାନ୍ତକୁ ବିଭ୍ରାନ୍ତ କରିଛି । ଓଡ଼ିଶାର ଶକ୍ତିପୀଠଗୁଡ଼ିକରେ ରକ୍ତରଞ୍ଜିତ ମାତାର କୋମଳ ଚରଣ । ଅମୃତ ଦୃଷ୍ଟିରେ ବିସ୍ମୟ ଓ ଆତଙ୍କ । ଅନନ୍ତ କରୁଣାର ମୁଦ୍ରା ହତଚକିତ ଭାବ ରୂପରେ ରୂପାନ୍ତରିତ । କେତେ ଦେଖିବ ନିର୍ନିମେଷ ନୟନରେ ଗୃହଲକ୍ଷ୍ମୀ ପ୍ରତି ଅବିଚାରିତ ଅତ୍ୟାଚାର, ଯୌତୁକର ଯୂପକାଠିରେ ନୀରିହ ନାରୀର ଅଭାବିତ ତର୍ପଣ, ପୁରୁଷର କାମାଗ୍ନିରେ ଅସହାୟ ପତଙ୍ଗ ଭଳି ନିଃଶେଷ ହେବାର ଦୃଶ୍ୟ - ଅବା ସାମାଜିକ ସ୍ୱୀକୃତି ପାଇଁ କନ୍ୟା ସନ୍ତାନର ଦିଗଭରା ବିଳାପ, ତଥାପି ଆମେ ଏଇ ବିଶ୍ୱାସରେ ବୁଡ଼ିଥିବା କେତେକାଳ ?

ଆଜି ବି ତ ସମୟ ଅଛି - ଆଖି ଆଗ ସ୍ୱପ୍ନାତୁର ପରିବେଶକୁ ଅମୃତମୟ କରି ଦେବାର ଅବକାଶ ବି ଅଛି । ଏ ସୃଷ୍ଟିରେ ମାତୃଶକ୍ତିର ଅମୃତ ଦୃଷ୍ଟିର ଅମୃତ ବିନ୍ଦୁକୁ ସାଦରେ ଗ୍ରହଣ କରିବାର ସମୟ ବି ଅଛି ।

ଆସନ୍ତୁ -

ଆଜିର ସଭ୍ୟତା ସଂକଟାପନ୍ନ କେବଳ ମାତୃଶକ୍ତିର ଅବହେଳା, ଅପରପକ୍ଷେ ଭୋଗ ଶକ୍ତିର ପ୍ରମତ୍ତତାରେ । ଏହିଯୁଗ ସଂକଟରେ ମହାମାୟା ମହାଶକ୍ତିର ଆରାଧନାର ପ୍ରୟୋଜନୀୟତା ସର୍ବାଧିକ । ଯେ ଆସୁରିକ ଶକ୍ତିର ବିନାଶ କରି ଦୈବୀସତ୍ତାରେ ଆମମାନଙ୍କୁ ପ୍ରତିଷ୍ଠିତ କରନ୍ତୁ ।

ସବୁ ଅସୂୟା, ହତାଦର, ଈର୍ଷାତୁରତା ତାରି ପାଦତଳେ ସମର୍ପଣ କରି ପ୍ରବୃତ୍ତିର ଯଥେଚ୍ଛା ପ୍ରଲୋଭନରୁ ମୁକ୍ତି ପାଇବା ପାଇଁ ବଳିଦେବା ଆପଣାର ଅହଂକାର - ତ୍ୟାଗ ଓ ଉତ୍ସର୍ଗର ପୁଷ୍ପାଞ୍ଜଳିରେ ସୁରଭିତ କରିଦେବା ଆମର ଉତ୍ସୁକ ପ୍ରାଣ ସତ୍ତାକୁ । ଦେବତାଗଣଙ୍କ ସହିତ ଅନୁରୂପ ଆମର ପ୍ରାର୍ଥନା ହେଉ ।

ଆଜି ସେହି ଅଭୟଦାତ୍ରୀଙ୍କ ଚରଣ ତଳେ ଏତିକି ମାଗିବା -

ମୋତେ ପୂର୍ଣ୍ଣ କର ମା’

ଅହଙ୍କାରର ଅନ୍ଧତ୍ୱରୁ ମୁକ୍ତି ଦେ

ସଂକୀର୍ଣ୍ଣତାର ବନ୍ଧନରୁ ଉଦ୍ଧାରକର

ଅମୃତର ବର୍ଷାରେ ଭରିଦେ ଏ ଅଖିଳ ବିଶ୍ୱ ବ୍ରହ୍ମାଣ୍ଡ ।

ଶରତ ଚନ୍ଦ୍ର ସାମନ୍ତରାୟ

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

୬୨ ଭାଗ ୨ୟ ଓ ୩ୟ ସଂଖ୍ୟା ଭାଦ୍ର-କାର୍ତ୍ତିକ ସେପ୍ଟେମ୍ବର-ଅକ୍ଟୋବର - ୨୦୦୫

ଦିଗମ୍ବର ମହାନ୍ତି
କମିଶନର ତଥା ଶାସନ ସଚିବ

ବୈଷ୍ଣବ ପ୍ରସାଦ ମହାନ୍ତି
ନିର୍ଦ୍ଦେଶକ

ଶରତଚନ୍ଦ୍ର ସାମନ୍ତରାୟ
କାର୍ଯ୍ୟ ନିର୍ବାହୀ ସମ୍ପାଦକ

ସମ୍ପାଦନା ସହଯୋଗୀ
ଗୋବିନ୍ଦଚନ୍ଦ୍ର ମଲ୍ଲିକ
ସଚ୍ଚିଦାନନ୍ଦ ବାରିକ

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
ମାନସ ନାୟକ
ଫଟୋ :
ରାଜୁ ସିଂ
ମାନସ ରଂଜନ ମହାନ୍ତି

କମ୍ପ୍ୟୁଟର ସେଟିଂ ଓ ଡ଼ିଜାଇନିଂ
ମନୋଜ କୁମାର ପାତ୍ର
ହେମନ୍ତ କୁମାର ସାହୁ

**ବାର୍ଷିକ ଦେୟ : ଟ.୫୦.୦୦**
**ପ୍ରତିଖଣ୍ଡ : ଟ.୫.୦୦**

ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
ଫୋନ : ୨୪୦୪୫୧୩, ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in

# ସୂଚୀ